# କନକଲତା

## ନନ୍ଦକିଶୋର ବଳ

ସମ୍ପାଦନା

ଶ୍ରୀଦତ୍ତା ନିର୍ଝରିଣୀ ଏମ୍.ଏ.,ଏମ୍.ଫିଲ୍.(ଇଂରାଜୀ)
ଗବେଷିକା
ଗଙ୍ଗାଧର ମେହେର ବିଶ୍ୱବିଦ୍ୟାଳୟ
ସମ୍ବଲପୁର

ପ୍ରଫେସର କୃଷ୍ଣଚନ୍ଦ୍ର ପ୍ରଧାନ
କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ, ଓଡ଼ିଶା
କୋରାପୁଟ



ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩ ୦୦୨

ବିଦ୍ୟାପୁରୀ
ସ୍ଥାପିତ : ୧୯୬୧
ପ୍ରତିଷ୍ଠାତା : ପୀତାମ୍ବର ମିଶ୍ର

**କନକଲତା**

ନନ୍ଦକିଶୋର ବଳ

ସମ୍ପାଦନା : ଶ୍ରୀଦତ୍ତା ନିର୍ଝରିଣୀ
ପ୍ରଫେସର କୃଷ୍ଣଚନ୍ଦ୍ର ପ୍ରଧାନ

ପ୍ରଥମ ପ୍ରକାଶ ଅପ୍ରେଲ ୨୦୨୧

ପ୍ରକାଶକ
ଜୀବାନନ୍ଦ ମିଶ୍ର
ବିଦ୍ୟାପୁରୀ, ବାଲୁବଜାର, କଟକ ୭୫୩ ୦୦୨

ଲିପି ସଂଯୋଜନ : ବିଦ୍ୟାଶ୍ରୀ ଡିଟିପି ସେଣ୍ଟର, କଟକ

ପ୍ରଚ୍ଛଦ : ବିଜୟ କୁମାର ପ୍ରଧାନ

ମୁଦ୍ରଣ
ବିଶ୍ୱନାଥ ଏଣ୍ଟରପ୍ରାଇଜେସ୍, ଭୁବନେଶ୍ୱର

ମୂଲ୍ୟ : ଟ. ୧୧୦-୦୦

**KANAKALATĀ**

Nandakishora Bala

Edited by Sridatta Nirjharinee
Prof. Krushna Chandra Pradhan

First Published April 2021

Published by
Jivananda Misra
Vidyapuri, Balubazar, Cuttack 753 002

ISBN 978-93-90816-28-6

Printed at
Biswanath Enterprises
Plot No. 8/E, Chandaka Industrial Area, Bhubaneswar

Price : Rs. 110-00

# ସମ୍ପାଦନା ସମ୍ପର୍କରେ

ନନ୍ଦକିଶୋର ବଳ ଓଡ଼ିଆ ସାହିତ୍ୟରେ ଜଣେ ବିଶିଷ୍ଟ କବି ଭାବରେ ସୁପରିଚିତ । ତେବେ କବିତା ବ୍ୟତିରେକେ ପ୍ରବନ୍ଧ, ଗୋଟିଏ ଉପନ୍ୟାସ, ଗୋଟିଏ ଗଳ୍ପ ଓ କେତୋଟି ସମାଲୋଚନା ମଧ୍ୟ ଲେଖିଛନ୍ତି । 'କନକଲତା' ତାଙ୍କର ଏକମାତ୍ର ଉପନ୍ୟାସ । ଫକୀରମୋହନଙ୍କ ସାହଚର୍ଯ୍ୟରେ ଆସିବାଦ୍ୱାରା ଏବଂ ତାଙ୍କ ଦ୍ୱାରା ପ୍ରେରିତ ହୋଇ ସେ କଥାସାହିତ୍ୟ ରଚନାରେ ମନୋନିବେଶ କରିଥିଲେ । ବିଂଶ ଶତକର ଦ୍ୱିତୀୟ ଦଶକ ବେଳକୁ ଓଡ଼ିଆ ଉପନ୍ୟାସ ସେପରି ସମୃଦ୍ଧ ହୋଇ ନ ଥିଲା । କନକଲତା ଉପନ୍ୟାସର ପରିକଳ୍ପନା ଓ ପରିପ୍ରକାଶ ବିଂଶ ଶତକର ତୃତୀୟ ଦଶକ ମଧ୍ୟରେ । ଫକୀରମୋହନଙ୍କ ବ୍ୟତୀତ ଅନ୍ୟ କେହି କଥାସାହିତ୍ୟ ସୃଷ୍ଟିରେ ସେହି ସମୟକୁ ବିଶେଷ ଚମକ ସୃଷ୍ଟି କରିପାରି ନାହାନ୍ତି । କନକଲତା ଉପନ୍ୟାସର ଆରମ୍ଭର ପରିକଳ୍ପନା ପରିସମାପ୍ତି ବେଳକୁ ବଦଳିଯାଇଛି । ତତ୍କାଳୀନ ସମାଜ ଓ ସାମାଜିକ ମଣିଷର ମାନସିକତାକୁ ଲକ୍ଷ୍ୟକରି ନନ୍ଦକିଶୋର ପରିକଳ୍ପନାରେ କିଛି ପରିବର୍ତ୍ତନ ଆଣିଛନ୍ତି । ଏହା ଥିଲା ସେହି ସମୟର ଆହ୍ୱାନ । ତେବେ ତାଙ୍କ ପ୍ରଗତିବାଦୀ ଦୃଷ୍ଟିଭଙ୍ଗୀର ଅନେକ ପ୍ରମାଣ ସଚେତନ ପାଠକ ଏହି ଉପନ୍ୟାସରେ ଲକ୍ଷ୍ୟ କରିପାରିବେ ।

ଉପନ୍ୟାସଟି 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶ ପାଉଥିଲା; ମାତ୍ର ଶେଷପର୍ଯ୍ୟନ୍ତ ଏହା ସମ୍ପୂର୍ଣ୍ଣ ହୋଇପାରି ନ ଥିଲା । ପରବର୍ତ୍ତୀ ସମୟରେ ଏହାକୁ ସମ୍ପୂର୍ଣ୍ଣ କଲାବେଳେ ସେ ଏଥିରେ କେତେକ ପରିବର୍ତ୍ତନ କରିଛନ୍ତି । ଉପନ୍ୟାସ ଭାବରେ ଏହା ଉଭୟ ପ୍ରଶଂସା ଓ ନକାରାତ୍ମକ ସମାଲୋଚନାର ଶିକାର ହୋଇଛିଁ । କେତେକ କ୍ଷେତ୍ରରେ ଉପନ୍ୟାସର କଳାଧର୍ମର ବ୍ୟାହତ ହୋଇଥିବାର ପରିଲକ୍ଷିତ ହୋଇଥାଏ । ଏହା ସତ୍ତ୍ୱେ ଉପନ୍ୟାସର ଐତିହାସିକ ମୂଲ୍ୟକୁ କଦାପି ଅସ୍ୱୀକାର କରାଯାଇ ନ ପାରେ ।

ପାଠକ ଏହି ଉପନ୍ୟାସକୁ ଅତୀତରେ ଆଗ୍ରହର ସହିତ ପାଠ କରିଛନ୍ତି । ମହାବିଦ୍ୟାଳୟ ସ୍ତରରେ ପାଠ୍ୟପୁସ୍ତକରୂପେ ଏହା ମଧ୍ୟ ନିର୍ବାଚିତ ହୋଇଛି ।

ଓଡ଼ିଆ ଉପନ୍ୟାସର ଧାରା ସମ୍ପର୍କରେ ଜାଣିବାକୁ ହେଲେ ଏହାର ଅଧ୍ୟୟନ ଅତ୍ୟନ୍ତ ଜରୁରୀ । ପାଠ୍ୟାଲୋଚନାରେ ଉପନ୍ୟାସ ସମ୍ପର୍କରେ ବିସ୍ତାରିତ ଆଲୋଚନା କରାଯାଇଛି; ଯାହା ପାଠକମାନଙ୍କୁ ସ୍ରଷ୍ଟା ଓ ସୃଷ୍ଟି ସମ୍ବନ୍ଧରେ ବିଶଦ ବିବରଣୀ ପ୍ରଦାନ କରିପାରିବ । ଏହି ସମ୍ପାଦିତ ପୁସ୍ତକଟି ଆଗ୍ରହର ସହିତ ପ୍ରକାଶ କରିଥିବାରୁ ବିଦ୍ୟାପୁରୀର ଯୁବପ୍ରକାଶକ ଜୀବନବାବୁ ଏବଂ ବିଦ୍ୟାପୁରୀର କର୍ମକର୍ତ୍ତାଙ୍କୁ ଧନ୍ୟବାଦ ଅର୍ପଣ କରୁଛି । ଓଡ଼ିଆ ପ୍ରକାଶନ ସଂସ୍ଥାର ଗୌରବ-ପୁରୁଷ ପୀତାମ୍ବର ମିଶ୍ର ଆମ ପାଖରେ ନାହାନ୍ତି; ମାତ୍ର ବିଦ୍ୟାପୁରୀ ପ୍ରକାଶନ ସଂସ୍ଥାକୁ ଗୌରବର ଯେଉଁ ସୁଉଚ୍ଚ ସୋପାନରେ ପହଞ୍ଚାଇ ପାରିଛନ୍ତି, ସେଥିପାଇଁ ସେ ସବୁଦିନ ସ୍ମରଣୀୟ ହୋଇ ରହିବେ । ତାଙ୍କ ଅମର ଆତ୍ମା ପ୍ରତି ଆମର ବିନମ୍ର ପ୍ରଣତି ଜଣାଉଛୁ । ପୁସ୍ତକଟି ପାଠକୀୟ ଆଦୃତି ପାଇବ ବୋଲି ଆଶା ଓ ବିଶ୍ୱାସ ।

**ସମ୍ପାଦକ**

# ସୂଚୀପତ୍ର

## ପ୍ରଥମ ପରିଚ୍ଛେଦ

ଶୀତକାଳ । ପ୍ରଭାତ ହୋଇଅଛି । ଶିଶୁମାନେ ପ୍ରଭାତରୁ ଉଠି ଫୁଲ ତୋଳୁଛନ୍ତି । କେହି କେହି ଦୌଡ଼ୁଛନ୍ତି । ଦୌଡ଼ିଲେ ଶୀତ ଊଣା ହୁଏ- ଏ ବୈଜ୍ଞାନିକ ତତ୍ତ୍ୱ ଶିଶୁମାନଙ୍କୁ ଜଣା ନାହିଁ । ସେମାନେ ପ୍ରବୃତ୍ତି ପରିଚାଳିତ ହୋଇ ଦଉଡ଼ୁଛନ୍ତି । ଦେଖୁଁ ଦେଖୁଁ ଖରା ବରଗଛ, ତାଳଗଛ ଅଗରୁ ଖସି ପିଢ଼ା, ବାଡ଼ ଶେଷକୁ ହୀରାପୁରର ବଜ୍ରଧର ହରିଚନ୍ଦନଙ୍କ ଦାଣ୍ଡ ପା' ଭାଗ ଓ ବାଡ଼ିଆଡ଼ ଓଳିତଳେ ପଡ଼ିଲା । ଦୁଇଆଡ଼େ ଦୁଇ ଲୀଳା ଲାଗିଗଲା । ଦାଣ୍ଡରେ ପୁରୁଷମେଳା ଓ ବିଲବାଡ଼ି କଥା, ବାଡ଼ିଆଡ଼େ ସ୍ତ୍ରୀ ସଭା ଓ ଘରକଥା । ଏକ ଗଦ୍ୟ, ଅନ୍ୟଟି ରସମୟୀ କବିତା । ଏକ କର୍ମ, ଅନ୍ୟଟି ପ୍ରୀତି । ଏକ ଉତ୍ତୁଙ୍ଗ ପର୍ବତ, ଅନ୍ୟଟି କଳନାଦିନୀ ତରଙ୍ଗିଣୀ । ପାଠକ ଅବଧାନଙ୍କ ଦୃଷ୍ଟି କେଉଁ ଆଡ଼କୁ ପ୍ରଥମେ ଆକୃଷ୍ଟ ହେଉଅଛି ? ଆମ୍ଭେମାନେ ବାଡ଼ିଆଡ଼ କଥା ଆଗେ କହିବୁଁ ।

ଚାକରାଣୀ ପାଟ ବାସନ ମାଜୁଛି । ମାଜୁ ମାଜୁ ତାହାର ପୂର୍ବପୁରୁଷ (?) ମନ୍ଥରାର ଅନୁକରଣ କରି ଛିଦ୍ରକଥା କହୁଛି । ଯାହା ଘରେ କଳିକଜିଆ ନାହିଁ ସେ ସିନା ଚାକରାଣୀ ରଖେ ! ଆଗେ ବୋହୂମାନେ କଂସାବାସନ ମାଜୁଥିଲେ । ଏବେ ମଧ୍ୟ ନ ଥିଲା-ଘରର ବୋହୂ-ଝିଅମାନେ ବାସିପାଇଟି ଛାଡ଼ି ନାହାନ୍ତି; କିନ୍ତୁ ହରିଚନ୍ଦନଙ୍କ ଘର ପରି ବଡ଼ଘରେ ଚାକରାଣୀ ନୋହିଲେ ନୁହେଁ । ଅବସ୍ଥାନୁସାରେ ବ୍ୟବସ୍ଥା ସିନା ! ସମ୍ଭ୍ରାନ୍ତ ପରିବାରର ନବବଧୂମାନେ ଗୃହକର୍ମ କଲେ ଛାନ୍ଦ, ପୋଥି ବା ଉପନ୍ୟାସ ପଢ଼ିବ କିଏ ? ଥାଉ ସେ କଥା । ହରିଚନ୍ଦନଙ୍କର ତିନି ବୋହୂ । ସାନପୁଅର ବିବାହ ହୋଇ ନାହିଁ । ଗୋଟି ଗୋଟି କରି ସମସ୍ତେ ଆସି ମିଳିଲେ । କେହି ଗଇଁଠା ପାଉଁଶ, କେହି କଅଁଳ ପିଜୁଳିପତ୍ର, କେହି ଅବା ସାହାଡ଼ା ଦାନ୍ତକାଠି ଘେନି ଦାନ୍ତ ଘଷି ବସିଲେ । ଗୁଡ଼ାଖୁଯାଏ ଯାଇ ନାହିଁ – ଯିବାକୁ କେତେ ବାଟ ! ହରିଚନ୍ଦନଙ୍କ ଘରଣୀ ଆସି କହିଲେ, ''ଆଜି ସମସ୍ତେ ଚଞ୍ଚଳ ଗାଧୋଇପଡ଼, ପିଠାପଣା ହେବ । କନକର ଆଜି ଜନ୍ମଦିନ ।''

ପାଟ କହିଲା, "ଚାରି ଭାଇରେ କୋଳପୋଛା ଝିଅ, କଳାମାଣିକ, ଚମ୍ପାଚାଙ୍ଗୁଡ଼ା, ବଉଳମାଳା, ତାରେଣୀସୂତା, ଗଜମୁକୁତା, କନକଲତା ।"

ଏହି ଅନର୍ଗଳ ବନିତା-କବିତା-ଲତା-ଧାରା ଅବିରାମ ଗତିରେ ଚାଲିଥାଆନ୍ତା; କିନ୍ତୁ ଇତିମଧ୍ୟରେ କଳାମେଘରେ ବିଜୁଳି ପରି କଳାଝିଞ୍ଜିରୀ ଶାଢ଼ି ଖଣ୍ଡିଏ ପିନ୍ଧି କନକ-ପ୍ରତିମା ସଦୃଶା କନକଲତା ସେଠାରେ ପହଞ୍ଚି ବୀଣା-ବିନିନ୍ଦୀ ସ୍ୱରରେ କହିଲେ, "ନୂଆବୋହୂ, ଦେଖିଲ କିମିତି ପାଟ ମୋତେ ଇଙ୍ଗିତି କରୁଛି ।"

ନୂଆବୋହୂମାନେ ଯଥେଷ୍ଟ ମୃଦୁ ଆନନ୍ଦ ଅନୁଭବ କରି ମନ ସୁଖରେ ହସିଲେ । ଅଦୂରସ୍ଥ ପାଟ କହିଲା, "ତୁ ତ ଗୁହାରି କରୁଛୁ ଯାହାକୁ, ମୁଁ ତ ଜୁଆଇଁ କରିଛି ତାହାକୁ ।" ପାଟ କହିଲା, "କାହିଁକି, ଇଙ୍ଗିତି କରିବି କାହିଁକି ? ତମକୁ ମୁଁ ଇଙ୍ଗିତି କରିବି ? ଯେ ଇଙ୍ଗିତି କଲା ସେ ତମଠୁଁ ଝାଡ଼ିଝୁଡ଼ି ନେଉ ।"

– ଏହା ଶୁଣି ସମସ୍ତେ ହସିଉଠିଲେ । ଅପ୍ରଗଲ୍‌ଭା ବାଳିକା କନକଲତା ସେ ହାସ୍ୟ ଲହରୀରେ ଭାସିଗଲା । ହାରିଯାଇ ତୁନି ହୋଇ ରହିଲା । ତେଣେ ମା' ଅନ୍ତରାଳରେ ରହି ଏ କଥା ଶୁଣିଲେ । ସେ ସବୁଆଡ଼େ ଥା'ନ୍ତି, ସବୁ ଦେଖନ୍ତି । ଚରକି ପରି ଉପର ଖଞ୍ଜା, ମଝି ଖଞ୍ଜା, ତଳ ଖଞ୍ଜା ନିମିଷକେ ବୁଲିଦେଇ ଆସନ୍ତି । କେଉଁଠାରେ କିଛି କହିବାର ବା କରିବାର ହୁଏ, ତାହା ଦେଖିଲେ ବୋଲି ଦେଖାନ୍ତି । ପିଲାପିଲିଙ୍କର ଛୋଟ ଛୋଟ କଥା ଦେଖି ନ ଦେଖିଲା ପରି ଚାଲିଯାଆନ୍ତି । ସେ ଜାଣନ୍ତି କନକ ବଡ଼ କୋମଳପ୍ରାଣା । ଟିକିଏ କିଛି ହେଲେ ଝରଝର ତା' ଆଖିରୁ ଲୁହ ଗଡ଼ିପଡ଼େ । ସପ୍ତରଥୀ ଅଭିମନ୍ୟୁଙ୍କୁ ଘେରିଲା ପରି ତିନି ବୋହୂ ଓ ବୃଥା ବାବଦୂକା ପାଟ କୋମଳପ୍ରାଣା କନକଲତାକୁ ବେଢ଼ିଥିବାର ଜାଣିପାରି ସେଠାରେ ଆସି ଠିଆହୋଇଗଲେ । କହିଲେ, "କିଲୋ ପାଟ, ବାସନ ମାଜୁଥିବୁ କି ? ଆଜି ଘର, କୋଠା, ଦୁଆର ସବୁ ଲିପାପୋଛା ହେବ, ବିଛଣା-ବିଛଣି ଧୁଆହେବ, ଆଣ ବଟାହେବ, କେତେ କାମ ପଡ଼ିଛି; ତୁ ବାସନ ପାଖରେ ଦିନଯାକ ବସିଥିବୁକି ?"

ପାଟ ହାତ ଚଞ୍ଚଳ କରି କହିଲା, "ନାହିଁ ମା', ସରିଲାଣି, ଯାଉଛି ଚାଲ । ମା' ଆଜି କନକ ଠାକୁର ପାଖକୁ ଯିବେ... ।" କଥା ଶେଷ ନୋହୁଣୁ ସଂମାର୍ଜନୀ-ହସ୍ତା ପାଟର ଆଖି ଅଦୂରସ୍ଥ ଗଙ୍ଗଶିଉଳି ଗଛମୂଳରେ

ପଡ଼ିଲା । ସେ ପାଟିକରି ଦଉଡ଼ିଯାଇ ବଡ଼ମଝିଆଣୀଙ୍କ ତିନି ବର୍ଷର ଶିଶୁ ଅଭିରାମ ଓରଫ୍ ଡାକନାମ ଟୁଆଁ ମାଟି ଖାଉଥିବାର ଦେଖି ସଙ୍ଗେ ସଙ୍ଗେ ଗିରଫ କରି ଆଣିଲା । ମୁକ୍ତା, ରମା, ଉମା ପ୍ରଭୃତି ପିଲାମାନେ ଲିମ୍ବପତ୍ର ଆଣି ଟୁଆଁ ପାଟିରେ ଗୁଞ୍ଜିଦେଲେ । ଟୁଆଁ ଆଖି ଅଧେ ବୁଜି ଥୁ-ଥୁ କରି, ମୁହଁ ବିଗୁଲେଇ ସେମାନଙ୍କୁ ଚିମୁଟିବାକୁ ଚେଷ୍ଟାକଲା । ନ ପାରି ଶେଷରେ ବାଳକର ଅମୋଘ-ଅସ୍ତ୍ର 'ରୋଦନ' ଆରମ୍ଭକଲା । ଇତିମଧ୍ୟରେ ତା' ମା ଆସି ତାକୁ କାଖକଲେ । ଏତିକିବେଳେ ଧାନକୁଟୁଣୀ ଚମ୍ପୀ ଆସି ପହଞ୍ଚିଲାରୁ ପାଟ କହିଲା, ''ହେଇ ଚମ୍ପୀଅପା ତ ଆସିଲାଣି । କିଲୋ, ଏତେ ବେଳ କାହିଁକି ହେଲା ?''

ଚମ୍ପା – ଶୁଣିନା କି ? କାଲି ରାତିରେ ପରା ବାଘ ଆସିଥିଲା । ସକାଳେ ଗୁଡ଼ିଆ ସାଇରେ ସେଇ କଥା ପଡ଼ିଥିଲା । ମୁଁ ଆସୁ ଆସୁ ଟିକିଏ କାନ ଡେରିଦେଲି । ଫକୀର ମା' ଛେଳିଛୁଆକୁ ନେଇଯାଇଛି ।

ପାଟ–ଯାଆ ମ, ବାଘ ଆସୁଥିଲା ! ବିଲୁଆ କି ଶିଆଳ ନେଇଯାଇଥିବ ମ !

ଚମ୍ପୀ–ନାହିଁ ଲୋ, ମହାବଳ ବାଘ ଆସିଥିଲା ପରା ! ଘାଟକୂଳେ ବାଲିରେ ତା' ପାହୁଲର ଚିହ୍ନ ପଡ଼ିଛି ।

ପାଟ–ପାହୁଲରେ କ'ଣ ମହାବଳ ବାଘ ନାଁ ଲେଖାଅଛି ? କଲରାପତରିଆ ବାଘ ନୋହିଥିବ କାହିଁକି ? ହୁଣ୍ଡାବାଘ ହୋଇଥିବ । ଭେରେଣ୍ଡା, କଟାଶ କି ଭୁଆଁ ବିରାଡ଼ିର ପାହୁଲ ପଡ଼ିଥିବ । କଥାରେ କହନ୍ତି, ''ବାଘ ନ ଦେଖିଲେ ବିରାଡ଼ି ଦେଖ, ଖଣ୍ଡ ନ ଦେଖିଲେ ବଣିଆ ଦେଖ ।''

ଚମ୍ପୀ–କିଲୋ, ମତେ ବଣିଆଣୀ ଦେଖିଲୁ ପରା ! ''ବ୍ରାହ୍ମଣ ରଙ୍ଗା ଖଣ୍ଡ ପରଙ୍ଗା, ଡହ ଡହ ଆମ୍ବିଳ ଶୀତଳ ଭଙ୍ଗା–ସଖୀ, ଏ ବଡ଼ ମନ୍ଦ ।'' କି ମତେ କ'ଣ ଆସେନା କି ? ବିଧାତା ମତେ ନିରିମାଖି କଲା ବୋଲି ପୋଇଲୀ ପରିବାରୀ ବି ଖୁଣ୍ଟିବେ ? ଆମ ବଣିଆ ଜାତିରେ ସେ କଥା ନାହିଁ ବୋଲି ମୁଁ ବାଲୁତ ବିଧବା ହୋଇ ବି ଦୁଃଖଧନ୍ଦା କରି ଖାଇ କୁଡ଼ିଆଖଣ୍ଡିକରେ ପଡ଼ିଥାଏଁ । ହଲିଲା ପାଣିକି ଗୋଡ଼ ବଢ଼ାଏ ନାହିଁ । ତେବେବି ପଦେ ଶୁଣିବି ? କି ? କାହିଁକି ? ନୋହିଲା – ଏ ଘରଟା ନୋହିଲା । କୋଳି ଖାଇ କୋଳିମଞ୍ଜି ପୋତିଛି କି କିଏ ?

– ଇତ୍ୟାଦି ଏହି ସବୁ କଥା ଚମ୍ପୀ ଅନର୍ଗଳ ଅବିରାମଭାବରେ କିନ୍ତୁ ଟିକିଏ ଅନୁନାସିକ ସ୍ୱରରେ କହିଲା । ଆଖିରୁ ଦୁଇଟୋପା ଲୁହ ମଧ୍ୟ ତାହାର ସୁନ୍ଦର ମସୃଣ ଗଣ୍ଡଦେଶ ଉପରେ ପ୍ରବାହିତ ହୋଇଗଲା । ଏପରି ସ୍ତ୍ରୀମାନେ ଅଜେୟା, କାରଣ ସେମାନେ ପଦକୁ ଦଶ ପଦ କହିବେ, ତହିଁ ଉପରେ କାନ୍ଦିବେ – ଏଥିକି ବଳ କାହାର ?

ଇତିମଧ୍ୟରେ ପଦ୍ମାବତୀ ଆସି ଚମ୍ପାକୁ ଡାକିନେଇ ଗୋଟିଏ କାର୍ଯ୍ୟରେ ଲଗାଇଦେଲେ । ପାଟକୁ କପଟ-ଭର୍ତ୍ସନା କରି କହିଲେ, ‘‘ତୁ ଭାରି କଳିହୁଡ଼ୀ । କଣ୍ଟାବାଡ଼ରେ ଲୁଗା ପକାଇବୁ, ଚାଲିଲା ଶଗଡ଼ରେ ହାତ ଦେବୁ ।’’ ପାଟ ମା’ଙ୍କୁ କିଛି କହେ ନାହିଁ । ଯୁବତୀମାନେ ଲଢ଼େଇପାଲା ଶୁଣିବା ସୁଖରୁ ବଞ୍ଚିତହୋଇ ପରସ୍ପର ମୁହଁ ଚାହାଁଚାହିଁ ହୋଇ ହସିଦେଲେ ଓ ମୁହଁ ଶୁଖେଇ ଚାଲିଗଲେ । କଳିକଜିଆ ଶୁଣିବାକୁ ବା ମଧ୍ୟସ୍ଥ ହୋଇ ଭାଙ୍ଗିବାକୁ ମନୁଷ୍ୟର ସ୍ୱତଃ କୌତୂହଳ ହୁଏ କାହିଁକି ? ଲୋକେ କଳହ କରି ଆପେ ଅନ୍ୟ ଚକ୍ଷୁରେ କୃପାପାତ୍ର ହୋଇ ମଧ୍ୟସ୍ଥର ଆଶ୍ରୟ ନିଅନ୍ତି କାହିଁକି ?

ଏହି କଥାବାର୍ତ୍ତା ଅଭିରାମ ଓରଫ୍ ଟୁଆଁବାବୁ ମନଦେଇ ଶୁଣୁଥିଲା । କଥାବାର୍ତ୍ତାର ପ୍ରଥମ ଅଂଶରେ ନାନାପ୍ରକାର ବାଘ ନାମ ଶୁଣି ସେ ମା’ଙ୍କ ଲୁଗାକୁ ସପ୍‌ଟେଇ ଧରି ମାତୃକୋଡ଼ରେ ଅଭୟ ଆଶ୍ରୟ ନେଇଥିଲା । ପରେ ଶେଷାଂଶରେ ତା’ର ପ୍ରିୟ ଖାଦ୍ୟ ‘ଆମ୍ବିଳ’ କଥା ଶୁଣି ତା’ ପାଟିରୁ ତରଳ ପଦାର୍ଥବିଶେଷ ନିର୍ଗତ ହେଲା ଏବଂ ସେ ‘ଆମ୍ବୁଲ ଦେ, ଆମ୍ବୁଲ ଦେ’ ବୋଲି କଟାଳିଲା । ବଧୂ ଦମୟନ୍ତୀ ପାଟ ଓ ଚମ୍ପୀକୁ କହିଲେ, ‘‘ନିଅ, ସମ୍ଭାଳ । ସବାଖାଈଏ ଢିଙ୍କିଶାଳେ ଢେଙ୍କାନାଳ କଥା ଆଣି ପକାଇବେ । ବାଘ କଥାକୁ ଆଣି ଆମ୍ବିଳରେ ରଖିଲେ । ମୁଁ ଏବେ ଆଚ୍ଛା ଅସନଷ୍ଟାରେ ପଡ଼ିଲି । କରିବି କଅଣ ? ସେ କ’ଣ ଆଉ ପିଲା ହେଇଛି – ବାପ ଯେପରି, ପୁଅ ସେହିପରି । ଯୋଉ ନଟ ଧରିଛି ସେହି ନଟ ଧରିଥିବ ।’’

ଏହି ସମୟରେ ଗୋଟିଏ ନେଉଳ ବାଡ଼ମୂଳେ ଦେଖାଗଲା । ଅଦୂରରେ କନକଲତା ଟାଙ୍ଗୁଡ଼ାରେ ଗଙ୍ଗଶିଉଳି ଫୁଲଗୁଡ଼ିକ ସାଉଣ୍ଟୁଥିଲେ । ଭାଉଜଙ୍କ ବିପଦ ଦେଖି – ପୂର୍ବ ଶତ୍ରୁତା ଭୁଲି କହିଲେ, ‘‘ହଇରେ ଟୁଆଁ, ନେଉଳ ଦେଖ୍ ।’’ ନେଉଳ ଦେଖି ଟୁଆଁ ଆମ୍ବିଳ ଭୁଲିଲା । ମା’ କୋଳରୁ ଓହ୍ଲାଇ ନେଉଳକୁ ବାଡ଼େଇବ ବୋଲି ବାଡ଼ି ଧରି ଦୌଡ଼ିଲା ।

ବିବର୍ତ୍ତନବାଦୀମାନେ କହନ୍ତି, ''ପଶୁପକ୍ଷୀମାନେ ମାନବର ପୂର୍ବପୁରୁଷ । ପଶୁପକ୍ଷୀ ଦେଖିଲେ ମାନବଶିଶୁ ସୁଦ୍ଧା ତତ୍‌ପ୍ରତି ଆକୃଷ୍ଟ ହୁଅନ୍ତି ।'' ଏହି ଆକର୍ଷଣ ବା ବିକର୍ଷଣ କି ସେହି ଆଦିମ ସମ୍ପର୍କର ନିଦର୍ଶନ ? ପିଲାମାନଙ୍କ ସଙ୍ଗେ ମାଙ୍କଡ଼ମାନଙ୍କର ଏତେ ବିବାଦ ବା ସାମଞ୍ଜସ୍ୟ କାହିଁକି ? ସେ ଯାହାହେଉ, ଏହି ପ୍ରସଙ୍ଗରୁ ନାରୀମହଲରେ ପଡ଼ିଗଲା ନେଉଳ ପ୍ରସଙ୍ଗ । ପାଟ କହିଲା, ''ନେଉଳ ମୁହଁ ଚାହିଁଲେ ଯଶ ହୁଏ । ଯେଉଁ କାମକୁ ଯାଉଥିବ ସେ କାମ ହାସଲ ହୁଏ । ଗାଧୋଇସାରି ନେଉଳ ମୁହଁ ଚାହିଁ ମଝିଆ ନୂଆବୋହୂ ଅଭିକୁ ପାଇଥିଲେ । ନେଉଳ ନିର୍ମୂଳୀ ମୂଳ ଦେଇ ସାପକାମୁଡ଼ା ମଲା ମଣିଷକୁ ବଞ୍ଚାଏ । ସେଥିପାଇଁ ସାପ ନେଉଳକୁ ଭାରି ଡରେ ।''

ନେଉଳକୁ ଦେଖି ରତ୍ନମଞ୍ଜରୀ ନାମ୍ନୀ ଅଭିରାମର ଦୁଇ ବର୍ଷ ବୟସ୍କା ଭଉଣୀଟି ତାକୁ ଧରିବାକୁ ହାତ ବଢ଼ାଇ 'ଆ, ଆ' କହୁଥିଲା । ତାହାର ଅନ୍ତର୍ଦ୍ଧାନ ଦେଖି କାନ୍ଦିଉଠିଲା । କନକଲତା ତାକୁ କୋଳରେ ଧରି ତାହାର ଚନ୍ଦ୍ରବଦନ ଚୁମ୍ବନ କଲେ । କହିଲେ, ''ତୋ ନାଁ ଆଜିଠାରୁ ହେଲା 'ନେଉଳୀ; ତୁ ନେଉଳ ଦେଖି କାନ୍ଦୁଛୁ ।'' ନେଉଳୀ କହିଲା, ''ଦେଈ, ମୋତେ ହଦା ।'' ଦେଈ ତାକୁ ହଲାଇ ହଲାଇ ଗାଇଲେ, ''ମୋ ଦେଈ ବାହାହେବ କନ୍ଦରାପାଡ଼ୀ, ବାଜା ବସିଥିବ ଧାଡ଼ିକି ଧାଡ଼ି ।'' ନେଉଳୀ କହିଲା, ''ବାଜା କାଇଁ – ମୁଁ ଦେକିବି ।'' ଯୋଗକୁ ଏହି ସମୟରେ ଗୋଟିଏ ଯୋଗୀ ଦାଣ୍ଡରେ କେନ୍ଦରା ବଜାଇ ଗୋବିନ୍ଦଚନ୍ଦ୍ର ଗୀତ ଆରମ୍ଭକଲା । ପିଲାମାନେ ଦଉଡ଼ିଗଲେ । ନେଉଳୀକୁ ନେଇ କନକଲତା ମଧ୍ୟ ଯାଇ ଦାଣ୍ଡ କୋଠାଘର ଯାଉଁଳି କବାଟକୁ ଆଉଜି ଠିଆହୋଇ ଗୀତ ଶୁଣିଲେ ।

ଏହି ଯୋଗୀ ଗୀତର ଭିନ୍ନ ଭିନ୍ନ ଗ୍ରାହକଙ୍କର ଗ୍ରାହକତାର କାରଣ ବିଭିନ୍ନ । ପିଲାମାନଙ୍କର ପ୍ରଧାନ ଆକର୍ଷଣ କେନ୍ଦରା । ସେ ବଡ଼ ମଜାରେ କୁଁ-କୁଁ ବାଜୁଛି । କନକଲତା ବଡ଼ କୋମଳପ୍ରାଣା । ଏହି ଗୀତ ଶୁଣି ଅଜ୍ଞାତ 'ଗୋବିନ୍ଦଚନ୍ଦ୍ର'ଙ୍କ ଦୁଃଖରେ ତାଙ୍କ ପ୍ରାଣ ବିକଳ ହୋଇଉଠିଲା । ଆହା ! କିଏ କାହାକୁ ନିରାଶକରି ଯୋଗୀ ହୋଇଗଲା ? କଥା ଅଛି, ''ତୁଳସୀ ଦୁଇପତ୍ରରୁ ବାସେ, ବିଛୁଆତି ଦୁଇପତ୍ରରୁ କୁଣ୍ଡେଇ ହୁଏ ।'' ପୁଣି ଏହି

ଗୀତର ବିଶିଷ୍ଟତମ ଶ୍ରୋତା ହରିଚନ୍ଦନଙ୍କ କନିଷ୍ଠପୁତ୍ର ରାଜେନ୍ଦ୍ର । ଆଜି ଏ କି ବିପରୀତ ? ଏହି ରାଜେନ୍ଦ୍ର କଟକ କଲେଜରେ ବି. ଏ. ପଢ଼ନ୍ତି । ଏ'ଜଣେ ସମାଜ-ସଂସ୍କାରକ, ସ୍ୱଦେଶହିତୈଷୀ, କବିତାରଚକ, ପ୍ରବନ୍ଧଲେଖକ । ଏ ଯୋଗୀମାନଙ୍କୁ ଭିକ୍ଷାଦେବା କଥାର ସମ୍ପୂର୍ଣ୍ଣ ବିରୋଧୀ । ତାଙ୍କର ମତ– ଯୋଗୀଗୁଡ଼ାକ ଅଳସୁଆ, ଲାଗି ନ ଖାଇ ମାଗି ଖାଇବାର ପ୍ରୟାସୀ । ନିଜ ମତର ସମର୍ଥନ କରି କହନ୍ତି, "ଭାରତର ଦରିଦ୍ରତା ଏହି ମାଗିଖିଆ ଯୋଗୀ, କେଳା, ବୈଷ୍ଣବ, ଭିକ୍ଷୁକ, ବ୍ରାହ୍ମଣ, ନାଗା ସନ୍ୟାସୀମାନଙ୍କ ଯୋଗୁଁ । ଏମାନଙ୍କୁ ଦେବା ଅଧର୍ମ । କାରଣ ଏହାଦ୍ୱାରା ଆଳସ୍ୟ, ପ୍ରବଞ୍ଚନା, ଚୌର୍ଯ୍ୟକୁ ପ୍ରଶ୍ରୟ ଦିଆଯାଏ । ଅନେକ ଯୋଗୀ ଦିନରେ ଭିକ ମାଗି ରାତିରେ ଚୋରି କରନ୍ତି ।" କେତେକ ବୈଷ୍ଣବ 'ରାଧେଶ୍ୟାମ' କରୁ କରୁ ଭଦ୍ର ପରିବାରରୁ ଯୁବତୀଙ୍କୁ ଭୁଲାଇ ନେଇଥିବାର ରାଜେନ୍ଦ୍ର ଦିଓଟି ଗୋଟିଏ ଦୃଷ୍ଟାନ୍ତମାନ ଦିଅନ୍ତି । ପୁଣି 'ଦରିଦ୍ରାନ୍ ଭର କୌନ୍ତେୟ ମା ପ୍ରଯଚ୍ଛେଶ୍ୱରେ ଧନଂ' ଶ୍ଳୋକ ମଧ୍ୟ ଆଓଡ଼ାନ୍ତି । ତାଙ୍କର ମତ ଏହି ଭିକ୍ଷୁକଙ୍କୁ ଭିକ୍ଷା ନ ଦେଇ କାର୍ଯ୍ୟ ଦେବା ଭଲ । ପାଶ୍ଚାତ୍ୟ ଦେଶପରି ବଡ଼ ବଡ଼ କାରଖାନା ହେବା ଉଚିତ । ଆଜି କିନ୍ତୁ ରାଜେନ୍ଦ୍ର ଉତ୍କର୍ଣ୍ଣ ହୋଇ ଗୋବିନ୍ଦଚନ୍ଦ୍ର ଗୀତ ଶୁଣୁଛନ୍ତି । ଏହାର ବିଶେଷ ହେତୁ ଅଛି । ସମସ୍ତ ଗୀତଟି ଶୁଣି ତାଙ୍କର ଏହି ମତ ହୋଇଅଛି ଯେ, ଗୋବିନ୍ଦଚନ୍ଦ୍ର ଗୀତରେ କୌଣସି ବୌଦ୍ଧଶ୍ରମଣର ପ୍ରାଚୀନ ଇତିହାସ ପ୍ରଚ୍ଛନ୍ନ ଭାବରେ ନିହିତ ଅଛି । ସେ ଏହି ବିଷୟରେ ଗୋଟିଏ ପ୍ରବନ୍ଧ ଲେଖି କଲେଜ ସଭାରେ ପଢ଼ି ପରେ କୌଣସି ମାସିକ ପତ୍ରିକାରେ ପ୍ରକାଶ କରିବାର ମନସ୍ଥ କରିଅଛନ୍ତି । ଆମ୍ଭମାନଙ୍କର ତା' ସହିତ ସମ୍ପର୍କ କ'ଣ ? ଅଦା ବେପାରିର ଜାହାଜ ମୂଲ କରିବାର କି ପ୍ରୟୋଜନ ? ରାଜେନ୍ଦ୍ରଙ୍କ ପ୍ରବନ୍ଧ ଚିନ୍ତାରେ ଗୋଟିଏ ବାଧା ପହଞ୍ଚିଲା ।

ମୁଷ୍ଟି ଭିକ୍ଷା ଛଡ଼ା ରାଜେନ୍ଦ୍ର ଯୋଗୀକୁ ପ୍ରତ୍ନତତ୍ତ୍ୱର ପୁରସ୍କାରସ୍ୱରୂପ କିଛି ତାମ୍ରମୁଦ୍ରା ଦେଇପଠାଇଥିଲେ । ଏହି ଅପୂର୍ବ ପରିବର୍ତ୍ତନ ଦେଖି କନକଲତାଙ୍କର ଭାରି ଆନନ୍ଦ । ଏହି ବିଷୟ ଘେନି ଭାଇଭଉଣୀ ଭାଉଜମାନଙ୍କ ମଧ୍ୟରେ କେତେଥର ବାଦାନୁବାଦ ହୋଇଥିଲା । କନକ ବିଚାରୀ ଏକେ ଲାଜକୁଳୀ, ବେଶି କଥା କହେ ନାହିଁ । ତହିଁରେ ପୁଣି ନବ୍ୟଶିକ୍ଷିତ କଲେଜପଢୁଆ ଭାଇର ଅନର୍ଗଳ ବକ୍ତୃତା ଶୁଣି ତା'ର ବୁଦ୍ଧି ହଜିଯାଏ । ସେ ତୁନି ହୋଇଯାଏ ।

ଆଜି ତା'ର ଜୟ । ସେ ମନେମନେ ଭାରି ଖୁସିହୋଇ ଭାଇ ପାଖକୁ ଯାଇ କହିଲା, ''ଭାଇ, ନେଉଳୀକି ନିଅ, ଛବି ଦେଖା ।'' ଇତିମଧ୍ୟରେ ପାଟ ଯୋଗୀକୁ ମୁଠି ଦେଇ ଯିବାବେଳେ ସାନବାବୁ ଚାକର ହାତରେ ଯୋଗୀକୁ ପଇସା ଦେଇଥିବା କଥା କହି ସ୍ତ୍ରୀମହଲରେ ଜୟଢକ୍‌କା ବଜାଇଦେଲା । ନୂଆବୋହୂମାନେ ଆସି କହିଲେ, ''କି, ଯୋଗୀ କ'ଣ ପ୍ରେମଚିଟାଉ ଆଣିଥିଲା କି ? ଏତେ ଟାଣ କୁଆଡ଼େ ଗଲା ?''

ରାଜେନ୍ଦ୍ର ଟୁଆଁ ଆଉ ନେଉଳୀକୁ ଛବି ଦେଖାଉ ଦେଖାଉ ହସି ହସି କହିଲେ, ''ଆଜି ବିଶେଷ କାରଣ ଅଛି । ଯେଉଁମାନେ କିଛି ଭଲ ଗୀତ ବୋଲି ବା ବାଦ୍ୟ ବଜାଇ ସମାଜର ଉପକାର କରିବେ, ସେମାନଙ୍କ କଥା ଭିନ୍ନ । ରାଜସ୍ଥାନର ଚାରଣମାନେ ସତୀ ଓ ବୀରମାନଙ୍କର ପୁଣ୍ୟ ଚରିତ ଓ ଜୟବନ୍ଦନା ଗାଇ ଗାଇ ଦେଶର ଅନେକ କଲ୍ୟାଣ କରିଥିଲେ ।''

ସ୍ତ୍ରୀମାନେ କେତେକ ବୁଝିଲେ କେତେକ ନ ବୁଝିଲେ । ପରସ୍ପର ମୁହଁ ଚାହାଁଚାହିଁ ହୋଇ ତଳ ଖଞ୍ଜାକୁ ଚାଲିଯାଇ ମନଇଚ୍ଛା ତାନେ ହସିଲେ । ବାଲେଶ୍ୱରର ଝିଅ ସାନମଝିଆଣୀ କହିଲା, ''ଆଲୋ ସେ କିଏ ? ଜ୍ଞାନପାଗଳ ନା କିସ ?'' 'କିସ' ଉପରେ ତାନେ ହେଲା ହସ । ଚୋର ମନ ଗଣ୍ଠିରେ । ରାଜେନ୍ଦ୍ର ଜାଣନ୍ତି, ଏ ସମାଜତତ୍ତ୍ୱ ଅଳ୍ପଶିକ୍ଷିତା ସ୍ତ୍ରୀମାନଙ୍କର ବୋଧଗମ୍ୟ ନୁହେଁ । ପରେ ସମ୍ମିଳିତ ହାସ୍ୟର ଢେଉ କର୍ଣ୍ଣପଟରେ ଆଘାତ କରନ୍ତେ ମନେମନେ ଖେଦୋକ୍ତି କଲେ – ଏମାନଙ୍କୁ ମନୁଷ୍ୟ କରି ଶିକ୍ଷିତ ଯୁବକମାନଙ୍କ ସହଧର୍ମିଣୀ କରିବା କାଠିକର ପାଠ, ଗୋଟିଏ ଗଭୀର ସମସ୍ୟା ! ଏହା ଭାବୁ ଭାବୁ ନିଜର ଭବିଷ୍ୟତ ଚିନ୍ତା ମନରେ ଜାଗ୍ରତହେଲା । ନିଜର ବିବାହ ସମସ୍ୟା ତ ସମ୍ମୁଖରେ । କଠୋର ପରୀକ୍ଷା ! ନିରକ୍ଷରା ବା ଅଳ୍ପଶିକ୍ଷିତା ଯୁବତୀଟିଏ ଆଣି କେବଳ ଶରୀର-ସମ୍ପର୍କ ରକ୍ଷା କରି ପାଶବ ଜୀବନ ଯାପନ କରିବା ତାଙ୍କୁ ଅସହ୍ୟ ବୋଧହେଲା । ପୁଣି ହଳଦି ଲଗାଇ, ସୋଲର ଦୋଳମୁକୁଟ ମୁଣ୍ଡରେ ପିନ୍ଧି, ନଇଁନଇଁ ଚାଲି, ଦୂବଘାସ ବାହାରେ ବାନ୍ଧି, ବିରି ଚାଉଳ ବିଞ୍ଚିବା, କଉଡ଼ି ଖେଳିବା, ବେଦୀ ପାଖରେ ବସି ଅର୍ଦ୍ଧମୂର୍ଖ ପୁରୋହିତଙ୍କ ଅଶୁଦ୍ଧ ସଂସ୍କୃତ ଶ୍ଳୋକ ଶୁଣିବା ମରଣାଧିକ କଷ୍ଟକର ବୋଲି ପ୍ରତୀୟମାନ ହେଲା । ଏଣେ ପିତାମାତା ଓ ସମାଜ ତ୍ୟାଗକରି ବ୍ରାହ୍ମବିବାହ କରିବା ଦୁଃସାହସିକ

କାର୍ଯ୍ୟ । ତାଙ୍କ ସମଧର୍ମା କିଏ ଅଛି ବା ସେପରି ଦଳ କେଉଁଠି ସଙ୍ଗଠିତ ହୋଇଅଛି ଯେ, ସେ ଉଭୟଆଡ଼ ରକ୍ଷାକରି ଜୀବନତରଣୀ ଚଳାଇନେବେ ? ଅନେକ ଚିନ୍ତା ପରେ ଏହି ଶେଷ ମୀମାଂସାରେ ଉପନୀତ ହେଲେ ଯେ, ଚିରକୌମାର୍ଯ୍ୟ ଅବଲମ୍ବନ କରିବେ । ତାଙ୍କ ମନର ଭାବ ଏହି – ''ସମସ୍ତେ ଯେ ବିବାହିତ ହେବେ, ଏହାର ଅର୍ଥ କ'ଣ ? ଜଗତରେ କି ଉଚ୍ଚତର, ମହତ୍ତର ବ୍ରତ କିଛି ନାହିଁ ? ସମାଜରେ ଅଜ୍ଞାନ, ଅଶିକ୍ଷା, ରୋଗ, ଦୁର୍ଭିକ୍ଷ–କେତେ ଶତ୍ରୁ କରାଳ ମୁଖବ୍ୟାଦାନ କରି ଭାରତର ଶୋଣିତ ଶୋଷଣ କରୁଅଛନ୍ତି । ବିଧବା ବାଳିକା ଓ ଯୁବତୀମାନଙ୍କ ଆର୍ତ୍ତନାଦରେ ହିମାଳୟ, ବିନ୍ଧ୍ୟାଚଳ, ପଶ୍ଚିମଘାଟ, ପୂର୍ବଘାଟ, ମାଲ୍ୟଗିରି, ମେଘାସନର ଉଚ୍ଚତମ ଶୃଙ୍ଗମାନ ପ୍ରତିଧ୍ୱନିତ ହେଉଅଛି । ସମାଜରେ ଜାତିଭେଦ, ପୌରୋହିତ୍ୟ, ବିବାହ-ପଣ, ବୃଦ୍ଧ-ବିବାହ, ଶିଶୁବିବାହ, ବାଳିକାର ଚିରବୈଧବ୍ୟ ପ୍ରଭୃତି ଦୁରନ୍ତ, ହେୟ, ନରଶୋଣିତ ଶୋଷଣକାରୀ କୁସଂସ୍କାରମାନର ଘୋର ପ୍ରାଦୁର୍ଭାବ । ମୁଁ କୌଣସି ଗୋଟିଏ କାର୍ଯ୍ୟରେ ଜୀବନ ଅର୍ପଣ କରି ଚିରକୁମାରବ୍ରତ ଅବଲମ୍ବନ କରିବି । ଅନ୍ତତଃ ଯେପର୍ଯ୍ୟନ୍ତ ଗୋଟିଏ ଦଳ ସଂଗଠିତ ନ ହୋଇଛି, ସେ ପର୍ଯ୍ୟନ୍ତ ଅବିବାହିତ ରହିବି । ତାହାହେଲେ ପିତା ତର୍ଜନ-ଗର୍ଜନ କରିବେ କିମ୍ବା ଗୃହରୁ ବହିଷ୍କାର କରି ସମ୍ପତ୍ତିରୁ ବଞ୍ଚିତ କରିବେ । ମୋର ତ ସେଇଆ ଲୋଡ଼ା ! କିନ୍ତୁ ମାତାଙ୍କର ଲୋତକପାତ କିପରି ସହିବି ?''

ଏହା ନିବିଷ୍ଟ ମନରେ ଭାବୁ ଭାବୁ ଦେଖିଲେ ମା' ପଦ୍ମାବତୀ ତାଙ୍କରି ନିକଟରେ ଠିଆହୋଇ ମୁଣ୍ଡରେ ହାତ ବୁଲାଇ କହୁଛନ୍ତି, ''ରାଜୁ ! ତୁ କ'ଣ ବାୟା ହୋଇଯିବୁ ? ଏତେବେଳ ହେଲା ବସି କ'ଣ ଗୁଡ଼ାଏ ଭାବୁଛୁ ? ମୁଁ ଡାକୁଛି, ଶୁଣୁ ନାହୁଁ ! ନେ ବାପା, ତେଲ ନେ ଲଗା, ଗାଧୋଇଯା ।''

''ହଁ ଯାଉଛି''– କହି ରାଜେନ୍ଦ୍ର ସ୍ୱପ୍ନରୁ ଜାଗ୍ରତ ହେଲେ ।



## ଦ୍ୱିତୀୟ ପରିଚ୍ଛେଦ

# ଆଖଣ୍ଡଳମଣି ଦର୍ଶନ

ବେଳ ପ୍ରହରେ ! ହରିଚନ୍ଦନଙ୍କ ଉଆସ ଭିତରେ ଆଜି ମହାକୋଳାହଳ, ହୁରି-ଡକା ପଡ଼ିଛି । କନକଲତାର ଜନ୍ମଦିନ ଉପଲକ୍ଷ୍ୟରେ ସ୍ତ୍ରୀମାନେ ଗ୍ରାମର କିୟତ୍‌ଦୂରସ୍ଥ ଆଖଣ୍ଡଳମଣି ମହାଦେବଙ୍କ ଦର୍ଶନକୁ ସଜ ହେଉଛନ୍ତି । ସମସ୍ତେ କୃତସ୍ନାନ ହୋଇ ପେଡ଼ିଲୁଗା ପିନ୍ଧି ବୃଷ୍ଟି ଜଳଧୌତ ଗୋଲାପ, ମଲ୍ଲିକା, ପଦ୍ମ, ମନ୍ଦାର ପରି ଶୋଭା ପାଉଛନ୍ତି । ବ୍ରହ୍ମପୁରୀ, ବିଷ୍ଣୁପୁରୀ ପାଟ, କ୍ଷୀରୋଦ୍ରୀ ଶାଢ଼ି, ବଡ଼ମ୍ବା, ଖଣ୍ଡପଡ଼ା, ସମ୍ବଲପୁରର ମଠାଶାଢ଼ି, ମାଣିଆବନ୍ଧୀ, ଗୁଲନଗର ବା ପେଣ୍ଟଶାଢ଼ି ଏହିପରି ପାଟପୀତାମ୍ବରୀ ମଠାଶାଢ଼ି, ଆଣ୍ଠୁଆ, ଉତ୍ତୁଣୀ ପରିଚ୍ଛଦରେ ଦାଣ୍ଡ ଝଲମଲ ଦିଶିଲା । ମୁଦି, ଝୁଣ୍ଟିଆ, ପାହୁଡ଼, ବଳା, ଘୁଙ୍ଗୁର, ପାଇଯୁଡ଼ୀ, ପା-ପଦ୍ମ, ପଞ୍ଝମ, ଚନ୍ଦ୍ରହାର, ସାପୁଆ, ଜଞ୍ଜିରିଆ, ଅଣ୍ଟାସୂତା, ପଇଞ୍ଛ, ଅତୁଲ, ତାଡ଼, ବାଜୁ, ଡେଉଁରିଆ, ଚଉକି, ମଲ୍ଲିକଢ଼ୀ, ବାଉଳୀ, ବୀରବଲୀ, କାପ, ନଥ, ଦଣ୍ଡୀ, ବସଣୀ, ଫୁଲି, ସୁନାମାଛି, ବେଶର, ଅଳକା, ମଥାମଣି, ଟିକା, ଚଉଁରୀମୁଣ୍ଡୀ, ସୁନାଚାନ୍ଦ ପ୍ରଭୃତି ମଧ୍ୟବିତ୍ତ ଗୃହ ସ୍ତ୍ରୀମାନଙ୍କ ବ୍ୟବହୃତ ଅଳଙ୍କାରର ରୁଣୁଝୁଣୁ ଶବ୍ଦରେ ଦାଣ୍ଡ କମ୍ପିଲା । ସମସ୍ତେ ମିଳି ଠାକୁର ପାଖକୁ ଗଲେ । ମା' କହିଲେ, ''ରାଜୁ, କନକର ଆଜି ଜନ୍ମଦିନ, ମହାଦେବ ଦର୍ଶନ କରି ଆସିବୁ– ଚାଲ । ତୋର ପାସ୍ ଆଉ ଚାକିରି ହେବାପାଇଁ ମୁଁ ମିଶ୍ରଙ୍କୁ ବରଣ କରି ପାଠ ଗୁଣାଗୁଣି କରାଉଛି । ସେ ମହିମ୍ନ ପଢ଼ି ଲକ୍ଷେ ଚମ୍ପା ଚଢ଼ାଇବେ ।''

ରାଜେନ୍ଦ୍ର ମନେମନେ ଭାବିଲେ– ଆଉ ମହାଦେବ ! ଆଜିକାଲି ସ୍ୱୟଂ ମାଲିକଙ୍କୁ ନେଇ ଟଣାଟଣି– କାଠପଥରକୁ ପଚାରେ କିଏ ? ସ୍ତ୍ରୀମାନେ କହନ୍ତି, 'ଶିଳଶିଳୁପା ତ ଗଗନେ ଉଡୁଛି, ଶିମିଳୀ ତୂଳା କହୁଛି ମତେ ରଖେ' । ମିଲ୍, ସ୍ପେନ୍‌ସର ଆଉ ବାକି ରଖିଛନ୍ତି । ଠାକୁରଙ୍କୁ ଗୟାଶ୍ରାଦ୍ଧ ଦେଇ ତାଙ୍କର ଦଫା-ରଫା କରିସାରିଛନ୍ତି । ପ୍ରକାଶ୍ୟରେ କହିଲେ, ''ନାହିଁ ମା', ମୁଁ ଠାକୁର

ପାଖକୁ ଯିବି ନାହିଁ । ଗାଧୋଇ ଆସି ଗୀତା ଅଧ୍ୟାୟେ ପଢ଼ିବି । ମା' କହିଲେ, ''ହଉ, ମନ ତତ୍ତ୍ୱ କଲେ ଗଡ଼ିଆ ଗଙ୍ଗା । ତତେ ଆଖଣ୍ଡଳମଣି ଏହିପରି ସୁବୁଦ୍ଧି ଦେଇଥାନ୍ତୁ ।''– ଏହା କହି ପଣତ ବେକରେ ଗୁଡ଼ାଇ ଆଖଣ୍ଡଳମଣିଙ୍କ ଉଦ୍ଦେଶ୍ୟରେ ସାଷ୍ଟାଙ୍ଗ ପ୍ରଣାମ କଲେ । ମା' ଚାଲିଗଲାରୁ ରାଜେନ୍ଦ୍ର ଭାବିଲେ– ''କି ଜୀବନ୍ତ ଏକନିଷ୍ଠ ବିଶ୍ୱାସ ଏମାନଙ୍କର ! ହାୟ, ଆମ୍ଭେମାନେ ତ ମୂଳଜମା ହରାଇ ବସିଲୁଁ । ଯାହା ଥିଲା ତାହା ତ ଗଲା – ତାହା ସ୍ଥାନରେ ନୂତନ ଭକ୍ତି ନିଷ୍ଠା ତ କିଛି ଆସିଲା ନାହିଁ । ମହାବୌଦ୍ଧଶୂନ୍ୟତା ଓ ଶୁଷ୍କଜ୍ଞାନ ଘେନି କିପରି ଧର୍ମଜୀବନ ଲାଭ ହେବ ?'' ଏହିପରି ଭାବି ସ୍ନାନକୁ ଗଲେ ।

ହରିଚନ୍ଦନଙ୍କ ପିଲାମାନେ ସୁଆରିରେ ଯିବେ ବୋଲି କଥା ପଡ଼ିଥିଲା । କିନ୍ତୁ ପଡ଼ୋଶୀ କୁଟୁମ୍ବୀ ପିଲାକବିଲାମାନେ କନକର ଜନ୍ମଦିନରେ ଦେବଦର୍ଶନକୁ ଯିବାକୁ ଆଗ୍ରହ ପ୍ରକାଶ କରିବାରୁ ସେ ପ୍ରସ୍ତାବ ଭାଙ୍ଗିଲା । କାରଣ ୩୦-୪୦ ଖଣ୍ଡ ସୁଆରିକୁ ପଇସା ଦେଲେ ମଧ୍ୟ ୪୦ ଖୁଣ୍ଟ ଗଉଡ଼ ମିଳିବେ ନାହିଁ । ନିଜର ଝିଅ ବୋହୂଙ୍କୁ ସୁଆରିରେ ଚଢ଼ାଇ କୁଟୁମ୍ବୀ ପିଲାଙ୍କୁ ଚଲାଇ ନେବାଟା ହରିଚନ୍ଦନ ଓ ପଦ୍ମାବତୀ କାହାରି ମନକୁ ଘେନିଲା ନାହିଁ । ଗାଁ-ଝିଅମାନଙ୍କପାଇଁ ବଳଦଗାଡ଼ି କରିଦେବାର କଥା ମଧ୍ୟ ପଡ଼ିଥିଲା; କିନ୍ତୁ ଏତେ ଅଳ୍ପ ବାଟ ଚାଲି ନ ଯାଇ ବଳଦଗାଡ଼ିରେ ଧଡ଼ଧଡ଼ ପଡ଼ିଉଠ, ଧୂଳିରେ ଲୁଗାପଟା ମଇଳାକରି ବୁଲାଣି ବାଟରେ ଯିବାକୁ ସ୍ତ୍ରୀମାନଙ୍କ କଥାରେ ନିହାତି କରମକୋଢ଼ି ଛଡ଼ା ଆଉ କେହି ରାଜି ହେବେ ନାହିଁ । ବିଶେଷତଃ ସେପରି ଗଲେ କଥାବାର୍ତ୍ତା, ସାଙ୍ଗସୁଖ କିଛି ହୋଇପାରିବ ନାହିଁ । ଯେଉଁମାନେ ଗାଡ଼ି ଭିତରେ ରହିଯିବେ, ସେମାନେ ନିର୍ମଳ ପବନ ଓ ବାହାରର ଶୋଭା ଦର୍ଶନରୁ ବଞ୍ଚିତ ହେବେ । ସର୍ବୋପରି ମିଶ୍ରେ କହିଲେ, ''ମହାଦେବଙ୍କ ଦର୍ଶନକୁ ଯାନବାହନ ଚଢ଼ି ଗଲେ ସେ ନିଜେ ଅସନ୍ତୁଷ୍ଟ ହୋଇ ଅନିଷ୍ଟ କରିପାରନ୍ତି । ଏହି ହେତୁରୁ ପୂର୍ବେ ସଙ୍ଗତିସମ୍ପନ୍ନ ଲୋକେ ମଧ୍ୟ ଜଗନ୍ନାଥ ଦର୍ଶନକୁ ଚାଲି ଚାଲି ଯାଉଥିଲେ । ଅତି ଭକ୍ତମାନେ 'ଦଣ୍ଡବତୀ' ଊର୍ଦ୍ଧ୍ୱବାହୁ ହୋଇ ଯାଉଥିଲେ । ଏବେ ରେଳ ହୋଇ ସବୁ ମାରାଗଲା । ସାଧନା ଯେପରି ସିଦ୍ଧି ବି ସେହିପରି । କିଏ କହିଲା ପରି–'ଗୋସେଇଁ ଦଣ୍ଡବତ, ନା ତୋହରି ମନ ତୋତେ ଫଳୁ' । 'ଗଙ୍ଗା ଯିବୁ ଯେତିକି, ଫଳ ପାଇବୁ ସେତିକି' । ଚକୁଳିଆପଣ୍ଡା କହେ, 'ଦେଇଥିଲେ ପାଇ,

ପଢ଼ିଥିଲେ ଗାଇ, ପଢ଼ିଆ ବାରିରେ ଗୋଧନ ଚରାଇ ।' ଏହିପରି ନାନା ଚର୍ଚ୍ଚା ପରେ ସ୍ଥିରହେଲା ପିଲାମାନେ ଚାଲିକରିଯିବେ । ମିଶ୍ରେ ଆଗେ ଆଗେ ଚାଲିଲେ, ପଛେ ଭଗୀରଥ ପଛରେ ଗଙ୍ଗାପରି ପୁରନାରୀମାନେ ଚାଲିଲେ । ପ୍ରଭେଦ, ଭଗୀରଥଙ୍କ ପଛରେ ଗୋଟାଏ ଗଙ୍ଗା-ମିଶ୍ରଙ୍କ ପଛରେ ତିରିଶ-ଚାଳିଶ ଗଙ୍ଗା । ସହରରେ ଯାହାହେଉ, ମଫସଲରେ ଯାନିଯାତ୍ରା, ଦେବଦର୍ଶନ ପ୍ରଭୃତିରେ ନାରୀମାନେ ବାହାରର ମୁକ୍ତବାୟୁ ଟିକିଏ ପାଇପାରନ୍ତି । ରାଜେନ୍ଦ୍ର ବାସ୍ତବିକ ଏକପ୍ରକାର ପିଲା । ପ୍ରତି କଥାରେ ପ୍ରତ୍ନତତ୍ତ୍ୱ, ସମାଜତତ୍ତ୍ୱ, ସଂସ୍କାର ଆଡ଼କୁ ତାଙ୍କ ମତଲବର ଦଉଡ଼ । ଏହି ବାତୁଳତା ତାଙ୍କର ଅଛି । ପାଠକମାନଙ୍କ ମଧ୍ୟରୁ କାହାରି କି କୌଣସି ବିଷୟରେ ଟିକିଏ ଏକାନ୍ତର ଊଣା-ଅଧିକ ନାହିଁ ? ଏହା ଯେବେ ବାତୁଳତା ହୁଏ, ଆମ୍ଭେମାନେ କହୁଁ- ଏ ବାତୁଳତା ଅଳ୍ପାଧିକ ଅନେକଙ୍କର ଅଛି ।

ସୁଆରି, ଗାଡ଼ି ବିଷୟରେ ତର୍କ ଦେଖି ରାଜେନ୍ଦ୍ର ମନେକଲେ- ଦେଖ, ଇଉରୋପୀୟ ମହିଳାମାନେ କିପରି ସ୍ୱାଧୀନ ସ୍ୱଚ୍ଛନ୍ଦ ଭାବରେ ଗିର୍ଜାକୁ ଯାଇ ଗୀତ ଗାଇ ଈଶ୍ୱରାଧନାରେ ଯୋଗଦିଅନ୍ତି । ମାଡ୍ରୁଆଳୀ ସ୍ତ୍ରୀମାନେ ମଧ୍ୟ ଗୀତ ଗାଇ କଟକ ରାସ୍ତା କମ୍ପାଇ ଦିଅନ୍ତି । ରେଳରେ ମଧ୍ୟ 'ଠାକୁର ଭଲେ ବିରାଜେ। ହୋ, ଓଡ଼ିଶାମେ ଜଗନ୍ନାଥ' ଗାଇ ଗଗନ ପ୍ରତିଧ୍ୱନିତ କରନ୍ତି । ଓଡ଼ିଆଣୀମାନେ ଏପରି କାହିଁକି ? ଆହୁରି ଗୋଟିଏ କଥା- ଏମାନେ ଦେବତା ପୂଜା କରିବାକୁ ଯିବେ-ଇଷ୍ଟଦେବତାଙ୍କୁ ଛୁଇଁବାର ଅଧିକାର ନାହିଁ, କାରଣ ଏମାନେ ଅପବିତ୍ର ଆଉ ସେହି ଲୋଭୀ ପଣ୍ଡା ପବିତ୍ରାତ୍ମା ! ସେ ଠାକୁରଙ୍କୁ ଛୁଇଁପାରେ । ପୁଣି ଏମାନଙ୍କର ନିଜର ହୃଦୟବେଦନା, ପ୍ରାର୍ଥନା ଠାକୁରଙ୍କୁ ଜଣାଇବାର ଅଧିକାର ନାହିଁ-ସେହି ପଣ୍ଡା ଜଣାଇବେ । ପାଦୁକ ନାମରେ ପଚାଜଳ ଆଣି ଦେବେ । ତାହା ତ ନାନା ଜୀବାଣୁର ଘର । ଯାହାର ଯେ ପାପ ଥାଉ ତାକୁ ପିଇଦେଲେ ସ୍ୱର୍ଗପ୍ରାପ୍ତି ! ସର୍ବୋପରି ଦେବତା କି ବୀଭତ୍ସ ! ଶକ୍ତିରେ ଲିଙ୍ଗର ଅବସ୍ଥାନ ! ଛି ଛି ! କି ବୀଭତ୍ସ ! କି ବୀଭତ୍ସ ! ସୁଖର କଥା, ସରଳ ଅଶିକ୍ଷିତ ଲୋକମାନେ ଏହା ଜାଣନ୍ତି ନାହିଁ-ରକ୍ଷା-ହୋଇଛି ! ରକ୍ଷା ବା କାହିଁ ! ଜଗନ୍ନାଥ ମନ୍ଦିର ଓ ଗୁଣ୍ଡିଚା ଘରକୁ ଗଲେ ତ ସବୁ ବୁଝନ୍ତି, କିଛି ଅବୁଝା ରହେ ନାହିଁ । ହାୟ୍ ! କିଏ କାହିଁକି କଲା ?

ବାସ୍ତବିକ ରାଜେନ୍ଦ୍ର ହିନ୍ଦୁଘର ପିଲା ହୋଇ, ଏପରି ଦେବତା ବ୍ରାହ୍ମଣ-ବୈଷ୍ଣବ-ଭକ୍ତ ପିତାମାତାଙ୍କଠାରୁ ଜାତହୋଇ ଏପରି କାହିଁକି ହେଲା କିଏ କହିବ ? ରାଜେନ୍ଦ୍ର କହନ୍ତି, ''ମୁଁ ମୋର ପିତାମାତାଙ୍କ ନିଷ୍ଠା ପାଇଅଛି ବୋଲି ତ ମୋର ନିଜ ବିଶ୍ୱାସରେ ଏଡ଼େ ନିଷ୍ଠା ।'' ମିଶ୍ରେ ପାଦୁକ ଆଣି ରାଜେନ୍ଦ୍ରଙ୍କୁ ଯାଚିଲେ ସେ କହେ, ''ଆପଣ ବାପାଙ୍କୁ ବା ଘରେ ମା'ଙ୍କୁ ଦିଅନ୍ତୁ ।'' ମିଶ୍ରେ କହନ୍ତି, ''ସାନବାବୁ ବଡ଼ ଭଲ, କିନ୍ତୁ ଅନେକ ବିଦ୍ୟା ପଢ଼ି ଟିକିଏ ଜ୍ଞାନପାଗଳ ହୋଇଯାଇଅଛନ୍ତି ।'' ବାସ୍ତବିକ, ଯେ ଅଧିକାଂଶ ଲୋକଙ୍କ ମତାନୁଯାୟୀ ନ ଚଳେ, ସେ ଭଲ ହେଲେ ମଧ୍ୟ ପାଗଳ । ସକ୍ରେଟିସ୍, ଗାଲିଲିଓ, ଲୁଥର, ପାର୍କର- ଏପରିକି ଖ୍ରୀଷ୍ଟ ଓ ଚୈତନ୍ୟ ସାମୟିକ ସମାଜରେ ପାଗଳ ବିବେଚିତ ହୋଇଥିଲେ-ଅନ୍ୟେ ପର କା କଥା !

## ତୃତୀୟ ପରିଚ୍ଛେଦ

ଅବିମିଶ୍ର ସୁଖ ଏ ସଂସାରରେ ଦୁର୍ଲଭ । ପ୍ରାଚୁର୍ଯ୍ୟ ସଙ୍ଗେ ସଙ୍ଗେ ଅଭାବ ଜଡ଼ିତ ହୋଇ ରହିଅଛି । ଯେଉଁ ଗ୍ରାମରେ ଏତେଗୁଡ଼ିଏ ଧନାଢ଼୍ୟ ପରିବାର ଅଛନ୍ତି ଏବଂ ଏତେ ଅଳଙ୍କାର ବସ୍ତ୍ର ସୀମନ୍ତିନୀମାନଙ୍କ କମନୀୟ କାନ୍ତିକୁ ଅଧିକତର କମନୀୟ କରୁଅଛି, ସେହି ଗ୍ରାମରେ ଦୀନଦୁଃଖିନୀ ଆମ୍ଭମାନଙ୍କର ପୂର୍ବପରିଚିତା ଚମ୍ପାର ଘର । ସେଦିନ ହରିଚନ୍ଦନଙ୍କ ଘରେ ଧାନକୁଟା ସାରି ଖୁଦଚାଉଳ ଦିଓଟି କାନିରେ ବାନ୍ଧି ତା'ର କୁଡ଼ିଆ ଘରକୁ ଫେରିଲା । କନକର ଜନ୍ମଦିନ, ତାକୁ ଆଜି ଦିଓଟି ବେଶି ଚାଉଳ ମିଳିଛି, କିଛି ପନିପରିବା ମଧ୍ୟ ମିଳିଛି । ଫେରିବାବେଳେ ମା' କହିଲେ, "ଚମ୍ପା, ପଛେ ଆସିବୁ–ପିଠା, ସତ୍ୟନାରାୟଣ ପୂଜା ଭୋଗ ନେଇଯିବୁ ।" ଚମ୍ପା କହିଲା, "ମୁଁ ତ ଲୋ ମା, ହାଡ଼ିଆଘର ଝିଅ, ପାଟକ ଜାତି, କଥାକଥାରେ ବାଛନ୍ଦ । କିଏ କାଲେ କହିବ– ଦେଖ ତାଙ୍କ ଘରେ ଖାଇଲା । ପୂଜା ହେଉ ହେଉ ରାତି ହେବ । ମୁଁ ଆଉ ମା' ଆସିପାରିବି ନାହିଁ ।"

ପଦ୍ମାବତୀ କହିଲେ, "ହେଉ ଯା, ମୁଁ ପାଟ ହାତରେ ପଠେଇଦେବି ।" ଯିବାବେଳେ ଏକାନ୍ତରେ କନକ ଞ୍ଜୁନି ଞ୍ଜୁନି କରି କହିଲା, "ଚମ୍ପା, ଚାଲ ଠାକୁର ପାଖକୁ ଯିବୁ । ଗାଧୋଇପଡ଼ିଆ, ମୁଁ ଲୁଗା ଦେବି । ମୋର ବଳକା ଲୁଗା ଅଛି ।"

ଚମ୍ପା କହିଲା, "ବୁଢ଼ୀଟିଏ ହେଇଥା ମା' ! ମୋର ଆଉ ପୋଡ଼ିଗଲା ତିଅଣର ସୁଆଦ ଅଛି ? ମୁଁ ଆଉ ଶାଢ଼ି ପିନ୍ଧିବି ? ତମର ଆଜି ଶୁଭଦିନଟିଏ, ତମେ ସବୁ ଯାଅ । ମୁଁ ସୋମବାର ଦିନ ଯାଇଥିଲି, ଆଜି ଯିବି ନାହିଁ ।" ଚମ୍ପା ଫେରୁ ଫେରୁ ବାଟରେ ଢଗ ପକାଇ କହିଲା –

ଜଗନ୍ନାଥଙ୍କର ବଡ଼େଇ
କାହାକୁ ଦିଅନ୍ତି ପାଟପୀତାମ୍ବରୀ,
କାହାକୁ ଦିଅନ୍ତି ଗଡ଼େଇ ।"

କହିଲାବେଳେ ତା' ଆଖିରୁ ଟୋପାଏ ଲୁହ ଗଡ଼ିପଡ଼ିଲା । ରାଜେନ୍ଦ୍ର ନଦୀସ୍ନାନରୁ ଫେରିଲାବେଳେ ଚମ୍ପାକୁ ଦେଖିଲେ । ଏହି ସୁନ୍ଦରୀ ଯୁବତୀର

ଦୁର୍ଦ୍ଦଶାରେ ସେ ଏକାନ୍ତ ଆନ୍ତରିକ ବେଦନା ଅନୁଭବ କଲେ । ମନେକଲେ, ଏପରି ଯୁବତୀ-ବିଧବାଙ୍କର ପୁନର୍ବିବାହ ପ୍ରଚଳନ କଲେ କ'ଣ କ୍ଷତି ହୁଅନ୍ତା ? ଉତ୍କଳରେ କି ବିଦ୍ୟାସାଗର ଜନ୍ମିବେ ନାହିଁ ? କଥା ତ ଢେର୍ ହୋଇଅଛି, କାର୍ଯ୍ୟରେ କିଛି କରାଯାଇପାରେ କି ? କିନ୍ତୁ ବିଘ୍ନ ତ ଅନେକ । ପ୍ରଥମ କଥା, ବରପାତ୍ର ମିଳିବ କାହୁଁ ? ଦ୍ୱିତୀୟ କଥା, ଏହାର ସ୍ୱଜାତୀୟ ଛଡ଼ା ଅନ୍ୟ ବର ସହିତ ଏହାର ବିବାହ କେଉଁ ଆଇନ ଅନୁସାରେ ଚଳିବ ? ତୃତୀୟ କଥା, ଏ ସ୍ତ୍ରୀ ସମ୍ମତ ହେବ କି ନାହିଁ ? ଚତୁର୍ଥ କଥା, ଏ ଗ୍ରାମରେ ଏ ଦମ୍ପତି କିପରି ରହି ସମାଜରେ ଚଳିବେ ? ଏହିପରି ସୁନ୍ଦରୀ ଯୁବତୀ ଅରକ୍ଷିତା ହୋଇ ଶେଷପର୍ଯ୍ୟନ୍ତ ପବିତ୍ର ନିଷ୍କଳଙ୍କ ଭାବରେ ରହିବା ବଡ଼ ଦୁରୂହ । ଦୁଷ୍ଟଲୋକ ଏହାକୁ ବିପଥଗାମିନୀ କରାଇପାରନ୍ତି । ସମାଜରେ ଦୁରନ୍ତ ପୁରୁଷଙ୍କୁ ସାତଖୁଣ ମାଫ୍- କୌଣସି ଦଣ୍ଡ ବା ସାମାଜିକ ପ୍ରତ୍ୟବାୟ କିଛି ନାହିଁ । ସ୍ତ୍ରୀମାନଙ୍କ ଉପରେ କିନ୍ତୁ ସମସ୍ତେ ଖଡ଼୍ଗହସ୍ତ । ଟିକିଏ ହଳଚଳ ହେଲେ ସପ୍ତପାତାଳରେ ପଡ଼ିଲେ-ଆଉ ରକ୍ଷା ନାହିଁ । ଚିରଜୀବନ ସେମାନେ ଜଘନ୍ୟ, ହେୟ, ଘୃଣିତ, ଲାଞ୍ଛିତ ହୋଇ ରହିଲେ । ପୁଣି ଘୃଣିତ ଲୋକଦ୍ୱାରା ଘୃଣ୍ୟକାର୍ଯ୍ୟ ସମ୍ପାଦିତ ହେବା ସହଜ ହୋଇପଡ଼େ । ଜଣକୁ ଯେବେ କହ 'ତୁମେ ଭଲ, ତୁମେ ସତୀ', ସେ ନିଜକୁ ତଦନୁଯାୟୀ ଉଚ୍ଚ ମଣେ, ତାହାର ଆତ୍ମସମ୍ମାନ ବଢ଼େ । କିନ୍ତୁ ଜଣକୁ ଯେବେ ତୁମେ ସର୍ବଦା କହ, 'ତୁ ବଡ଼ ମନ୍ଦ, ଦୁଷ୍ଟ, ପିଶାଚୀ'-ସେ ଶେଷକୁ ପିଶାଚୀ ହୁଏ । କାରଣ ପାପର ପଥ ବଡ଼ ପିଚ୍ଛିଳ । ପ୍ରଲୋଭନର ରାସ୍ତା ଏଡ଼ିବା ଅସାଧାରଣ ନୈତିକ ବଳସାପେକ୍ଷ । ଘୃଣିତ ଲୋକ ମନେକରେ- ଯାଅମ, ମତେ ତ ମନ୍ଦ ବୋଲି ସମସ୍ତେ କହନ୍ତି, ଭଲହେଲେ ବି ତ ପୁରସ୍କାର ନାହିଁ, ତେବେ ବୃଥାରେ କଷ୍ଟ ସହିବି କିଆଁ ? ଫଳତଃ ଆଧୁନିକ ସମାଜର ନିୟମ ଏତାଦୃଶ ଲୋକମାନଙ୍କର ଚରିତ୍ର ଗଠନ ବା ଆଚରଣ ଶୁଦ୍ଧିର ଅନୁକୂଳ ନୁହେଁ । ଯାହାହେଉ, ବନ୍ଧୁମାନଙ୍କ ସହିତ ପରାମର୍ଶ କରି କିମ୍ବା ଗ୍ରାମର ଶାଖାସଭା ବା କଟକର କେନ୍ଦ୍ରସଭାରେ ବିଷୟଟି ଆଲୋଚନା କରି ଏହାକୁ ସତ୍‌ପାତ୍ରନ୍ୟସ୍ତା କିମ୍ବା ଦୁଷ୍ଟମାନଙ୍କ ହାତରୁ ରକ୍ଷା କରିବାକୁ ହେବ । ଏହିପରି ଭାବୁ ଭାବୁ ଘରେ ପହଞ୍ଚିଲେ ଏବଂ ଯଥାବିଧି ଏକ ଅଧ୍ୟାୟ ଗୀତାପାଠ ସମାପନ କଲାପରେ

ବଡ଼ ନୂଆବୋହୂ ଥାଳିରେ ସରୁଚକୁଳି, ଛୁଞ୍ଚିପତର, କାକରା ପ୍ରଭୃତି ପିଠା ଘେନି ପହଞ୍ଚିଲେ । ରାଜେନ୍ଦ୍ର କହିଲେ, "ନାହିଁ, ତମେ ତ ଜାଣ ମୁଁ ପିଠାପଣା ଭଲପାଏ ନାହିଁ; ଭାତ ଆଣିଲେ ଭଲ ହୁଅନ୍ତା ।"

ନୂଆବୋହୂ କହିଲେ– "ଆଜି ସାନ ଗେହ୍ଲା ଭଉଣୀର ଜନ୍ମଦିନ । ସରୁଚକୁଳି ଖଣ୍ଡେ ଖାଇଥାଅ । ଏ ତ ଠାକୁରଭୋଗ କି ମହାପ୍ରସାଦ ନୁହେଁ ଯେ କାୟା ଅପବିତ୍ର ହେବ । ତମେ ବସ, ଖଣ୍ଡେ ଦି' ଖଣ୍ଡ ଖାଅ । ମୁଁ ଭାତ ଆଣୁଛି । ଭାଉଜମାନେ ତମକୁ ସବା ଆଗେ ପିଠା ଖୋଇବେ ବୋଲି ଏତେ ତରତରରେ ଷଠିବୁଢ଼ିଙ୍କି ଲାଗି କରିଛନ୍ତି । ନ ଖାଇଲେ ସେମାନଙ୍କୁ ବାଧିବ ।"

ରାଜେନ୍ଦ୍ର– ସେମାନଙ୍କୁ ବାଧିବ, ଯେପରିକି ସ୍ୱୟଂ ବକ୍ତା କେହି ନୁହନ୍ତି । ଆଚ୍ଛା, ତମେ ଯେ ଏହିକ୍ଷଣି କହିଲ, ଠାକୁରଭୋଗ ନୁହେଁ, ପୁଣି କହୁଛ ଷଠିବୁଢ଼ିଙ୍କ ପାଖରେ 'ଲାଗି' ହୋଇଛି–କେଉଁଟି ସତ ?

ସାବିତ୍ରୀ– ତମ ସାଙ୍ଗରେ କଥାରେ ଆମେ ପାରିବୁଁ ? ଭଲା ଫି-କଥାରେ ଏତେ ଧଇଲେ ଆମେ ଚଳିବୁଁ କିପରି ? ଆଚ୍ଛା ଦେଖିବା, ନୂଆବୋହୂଟି କେତେ ଜଗି ଚଳିବ ? ଯେ ବାରନ୍ତି, ସେ ବେଶି ହଇରାଣରେ ପଡ଼ନ୍ତି । ତମେ ଯେ ସେଦିନ କହୁଥିଲ ଠାକୁର ସମସ୍ତଙ୍କର, ବ୍ରାହ୍ମଣ-ବୈଷ୍ଣବମାନେ ଆଉ ଜାତିମାନଙ୍କୁ ତଡ଼ି, ନିଜେ ଠାକୁରଙ୍କୁ ଛୁଇଁ ଭୋଗ ଦିଅନ୍ତି । ଆଜି ପିଠା ତ ବ୍ରାହ୍ମଣ 'ଭୋଗ' କରି ନାହାନ୍ତି– ଆମେମାନେ ନିଜେ ଆଜି 'ଲାଗି' କରିଛୁଁ । ଅତଏବ ତମକୁ ଖାଇବାକୁ ହେବ । ଆଉ କାହା ରାଣ ନ ମାନ, ସାନ ନୂଆବୋହୂଟି ରାଣ ।

ରାଜେନ୍ଦ୍ର – 'ଶିରୋନାସ୍ତି ଶିରଃ ପୀଡ଼ା'– ଆସାମୀ କାହିଁ ?

ସାବିତ୍ରୀ– କେଉଁଠି ତ ହେଲେ ଅଛି । ମୁଁ ମନେକରିଛି, ମୋର ଗୋଟିଏ ସାନଭଉଣୀ ଅଛି, ତାକୁ ସାନ ଜାଆ କରିବି । କିନ୍ତୁ ତାକୁ କୁର୍ତ୍ତା ପିନ୍ଧାଇ ଖ୍ରୀଷ୍ଟାନୀ ସଜାଇବ ନାହିଁ ତ ? ଆଚ୍ଛା, ବୋହୂଠାରେ ଲୋଭ ନାହିଁ ତ ତମ 'ଗୀତା ପୋଥି ରାଣ' ।

ରାଜେନ୍ଦ୍ରଙ୍କର ଭଗବଦ୍‌ଗୀତା ପ୍ରତି ପକ୍ଷପାତିତା ଲକ୍ଷ୍ୟ କରି ସାବିତ୍ରୀ ଏ କଥା କହିଥିଲେ । ରାଜେନ୍ଦ୍ର ଇତିମଧ୍ୟରେ ଅନୁରୋଧ ରକ୍ଷା କରିବାକୁ

ବସିଲେ । ପ୍ରିୟ ଗ୍ରନ୍ଥ 'ଗୀତା ବା 'ଭାବୀ-ବଧୂ' କାହା ରାଣ ରକ୍ଷା ହେଲା ? ଗାଜେନ୍ଦ୍ର ଭୋଜନରେ ବସି ଭାବିଲେ, ବାସ୍ତବିକ, ଦେବର-ଭ୍ରାତୃଜାୟା ମଧ୍ୟରେ ସମ୍ବନ୍ଧଟା ଆମ ଦେଶରେ ଅନୁମୋଦନୀୟ ନୁହେଁ । ଜ୍ୟେଷ୍ଠଭ୍ରାତା ପିତାସମ । ଜ୍ୟେଷ୍ଠ ଭ୍ରାତୃଜାୟା ମାତୃବତ୍ । ତେବେ ଅଚ୍ଛା ଶିଥିଳତା ଦେଖାଯାଏ କାହିଁକି ? ପୁଣି ସମାଜ ଏହା ଅନୁମୋଦନ କରେ କିପରି ? କନିଷ୍ଠ ଭ୍ରାତୃଜାୟା ସମ୍ପର୍କ ଉତ୍ତମ-କିଞ୍ଚିତ୍ ଅସ୍ୱାଭାବିକ ହେଲେହେଁ ପବିତ୍ର । କିନ୍ତୁ ଦେବର-ଭ୍ରାତୃଜାୟା ସମ୍ପର୍କ ବିଷୟରେ ସଂସ୍କାର ଆବଶ୍ୟକ ।

ଏ ତ ଆଚ୍ଛା ସଂସ୍କାରକ । ଖାଇଲାବେଳେ ସଂସ୍କାର-ଚର୍ଚ୍ଚା ! ଏହାର ପରିଣାମ କିପରି ଦେଖାଯାଉ ।



## ଚତୁର୍ଥ ପରିଚ୍ଛେଦ

# 'ଚାରିଚକ୍ଷୁ ପ୍ରାନ୍ତେ ପୀରତିମେଳ'

ଋଷି ଇମର୍ସନ୍ କହିଛନ୍ତି, ''କାବ୍ୟ ଲେଖ, ନାଟକ ଲେଖ, ଉପନ୍ୟାସ ଲେଖ, କବିତା ଲେଖ, ଯେପର୍ଯ୍ୟନ୍ତ ଚାରିଟି ଚକ୍ଷୁରେ ପ୍ରୀତିର ଆଦାନପ୍ରଦାନ ନ ହୋଇଛି, ସେପର୍ଯ୍ୟନ୍ତ ପାଠକର ମନ କଦାପି ତନ୍ମୟ ବିହ୍ୱଳ ହୋଇପାରେ ନାହିଁ ।'' ଆମ୍ଭେମାନେ ତିନୋଟି ପରିଚ୍ଛେଦ ଲେଖିଗଲୁଣି, ଏପରି ଶୁଭଦୃଷ୍ଟିର କଥା ଲେଖି ନାହୁଁ । ନ ଜାଣୁ ଗଳ୍ପର ଦଶା ଇତିମଧ୍ୟରେ କ'ଣ ହେଲାଣି । ତେବେ ଯେଉଁ ପାଠକମାନେ ରାଜେନ୍ଦ୍ରଙ୍କ ଶୁଷ୍କ ସମାଜତତ୍ତ୍ୱର ବ୍ୟୂହ ଭେଦକରି ଏପର୍ଯ୍ୟନ୍ତ ପଢ଼ି ଆସିଛନ୍ତି, ସେମାନେ ସ୍ୱ-ସ୍ୱ ଧୈର୍ଯ୍ୟର ପୁରସ୍କାରସ୍ୱରୂପ ଏହିପରି ଗୋଟିଏ ମିଳନ ସଂପ୍ରତି ଦେଖିବେ ।

ଯୋଗକୁ ବ୍ରହ୍ମା ଖଟନ୍ତି ନାହିଁ । ଯେଉଁଦିନ ହରିଚନ୍ଦନଙ୍କ ପିଲାମାନେ ଆଖଣ୍ଡଳମଣି ଦର୍ଶନକୁ ଯାଇଥିଲେ, ସେଦିନ ମୋତିଝରର ଇନ୍ଦ୍ରଜିତ୍ ପାଇକରାଙ୍କର ସ୍ତ୍ରୀଲୋକମାନେ ଆଖଣ୍ଡଳମଣିଙ୍କ ଆସ୍ଥାନକୁ ଆସିଥିଲେ । ଗଙ୍ଗା-ଯମୁନା, ସିନ୍ଧୁ-ମହୋଦଧିର ସଙ୍ଗମ ପରି ଦୁଇ କୁଳର ପୁରସ୍ତ୍ରୀମାନଙ୍କର ମିଳାମିଶା, କଥାବାର୍ତ୍ତା ହେଲା । ସଦ୍‌ବଂଶୀୟମାନଙ୍କର ସଦାଚରଣ ହେବାର କଥା । ଆଖଣ୍ଡଳମଣିଙ୍କ ବିଜେଆସ୍ଥାନ ହରିଚନ୍ଦନଙ୍କ ଜମିଦାରୀରେ, ତେଣୁ ତାଙ୍କ ବଂଶର ଆଗେ ବେଲପତ୍ରି ପାଦୁକ ପାଇବାର ଦାବି । ରାଜାଧିରାଜ କ୍ରୋଡ଼ପତି ଆସିଲେ ମଧ୍ୟ ଆଗ ପାଉଣା ହରିଚନ୍ଦନଙ୍କର । ଆଜି ହରିଚନ୍ଦନ-ବଂଶୀୟମାନଙ୍କୁ ବେଲପତ୍ରି ଆଣି ବଡ଼ପଣ୍ଡା ଦେବାବେଳକୁ ପଦ୍ମାବତୀ କହିଲେ – ପାଇକରାୟଙ୍କ ପୁଅକୁ ଆଗେ ଦେଇଆସ । ସ୍ୱଜାତୀୟ ସନାତନ ରାୟ ଗୁମାସ୍ତା ଏଥିରେ ଟିକିଏ ବିରକ୍ତି ପ୍ରଦର୍ଶନ କଲେ । ହେଲେ, ହରିଚନ୍ଦନ ହୋଇଥିଲେ ମନ୍ତ୍ରୀପଣିଆ କରିପାରିଥାନ୍ତେ; କିନ୍ତୁ ପଦ୍ମାବତୀଙ୍କୁ କିଛି କହିପାରିଲେ ନାହିଁ । ନିଜେ ହରିଚନ୍ଦନ ପଦ୍ମାବତୀଙ୍କ ସଙ୍ଗରେ ବଡ଼ ବଡ଼ ସଙ୍କଟରେ ପରାମର୍ଶ କରି ଚଳନ୍ତି– ଏହା ଗୁମାସ୍ତାଙ୍କୁ ଅଜ୍ଞାତ ନୁହେଁ । ବଡ଼ପଣ୍ଡା ଗୁମାସ୍ତାଙ୍କ ମୁହଁକୁ

ଚାହିଁଦେଇ ସେଠାରୁ କିଛି ଇଙ୍ଗିତ ନ ପାଇ କ୍ଷଣକାଳ ଇତସ୍ତତଃ କରି ଅଦୂରସ୍ଥ ପ୍ରସ୍ତର ବେଦୀ ଉପରେ ପୂର୍ବାସ୍ୟ ହୋଇ ବସିଥିବା ଧନଞ୍ଜୟଙ୍କୁ ପାଦୁକ ଦେଇଆସିଲେ । ଇତିମଧ୍ୟରେ ପ୍ରଖରବୁଦ୍ଧିସମ୍ପନ୍ନା ପଦ୍ମାବତୀ ବୁଝିପାରିଲେ ଯେ ବଡ଼ପଣ୍ଡା ଓ ଗୁମାସ୍ତାଙ୍କ ମନକୁ ଏ କଥା ଘେନିଲା ନାହିଁ । ଦୟାପରବଶ ହୋଇ କୌଳିକ ପ୍ରଥାର ବା ବଂଶଗୌରବର ହାନିକର କାର୍ଯ୍ୟ କରିବାରୁ ସେମାନେ କ୍ଷୁଣ୍ଣ ହେଲେ ପରା ! କିନ୍ତୁ ପଦ୍ମାବତୀଙ୍କ ସଙ୍ଗେ ବାଦାନୁବାଦ ଚଳିବ କି ? ପଦ୍ମାବତୀଙ୍କ ମନର ଭାବ ଏହିପରି । ଏହିପରି କୌଳିକ ପ୍ରଥା ପୁରୁଷମାନଙ୍କର ରକ୍ଷଣୀୟ । ଏଠାକୁ ମୋର ସ୍ୱାମୀ ବା ପୁତ୍ର କେହି ଆସି ନାହାନ୍ତି । କେହି ଆସିଥିଲେ ନିଶ୍ଚୟ ଆଗ ପାଇଥାନ୍ତେ । ଆମ୍ଭେମାନେ ସ୍ତ୍ରୀ, ଆମ୍ଭମାନଙ୍କର ଅସାର ଜୀବନ । ମୋ ପୁଅଟି ମୋର ଯେପରି, ଏହି ପୁଅଟି ତା'ର ମା' ବାପର ସେହିପରି । ପାଇକରାଙ୍କ ବଂଶ ସଙ୍ଗରେ ତାଙ୍କର ଦୂରସମ୍ପର୍କ ଥିଲା । ପିଲାଟିର ସଦ୍‌ଗୁଣ ଓ ଯୋଗ୍ୟତା ବିଷୟରେ ସେ ପୂର୍ବରୁ ଅନେକ କଥା ଶୁଣିଥିଲେ । ଆଜି ତାଙ୍କୁ ଦେଖି ସେ ପୁତ୍ରବତ୍ ସ୍ନେହ ନ କରି ରହିପାରିଲେ ନାହିଁ । ଏହା ଉପରେ ଆଉ କିଛି ଅଛି–ତାହା କ୍ରମଶଃ ପ୍ରକାଶ୍ୟ । ପୁରୁଷମାନେ ଯୁକ୍ତି-ତର୍କ-ବିଚାର-ସିଦ୍ଧାନ୍ତରେ କାର୍ଯ୍ୟ କରନ୍ତି । ସ୍ତ୍ରୀମାନେ ଗୋଟିଏ ନୈସର୍ଗିକ ଶକ୍ତି ବା ସହଜ ବୁଦ୍ଧିରେ ହଠାତ୍ ବିଷୟଟି ବୁଝି ସିଦ୍ଧାନ୍ତରେ ଉପନୀତ ହୁଅନ୍ତି । ହୋଇପାରେ, କେତେକ ସ୍ଥଳରେ ଭ୍ରାନ୍ତ ହୁଅନ୍ତି, କିନ୍ତୁ ଅଧିକାଂଶ ସ୍ଥଳରେ ସେମାନେ କୃତକାର୍ଯ୍ୟ ହୁଅନ୍ତି । ପୁରୁଷ ଏତେ ଯୁକ୍ତିତର୍କ କରି କ'ଣ ଭ୍ରାନ୍ତିରେ ପଡ଼େ ନାହିଁ ? ପୁରୁଷ ଅନେକ ପର୍ଯ୍ୟବେକ୍ଷଣ ଓ ପ୍ରମାଣ ସଂଗ୍ରହ କରି ନାରୀଚରିତ୍ର କିମ୍ବା ଆଗନ୍ତୁକର ଚରିତ୍ର ଯାହା ନ ବୁଝେ, ନାରୀ ତାହାର ସହଜ ବୁଦ୍ଧିଦ୍ୱାରା ତାହା ଝଟ୍ ବୁଝିନେଇପାରେ । ଏହାର କାରଣ ଯାହାହେଉ, କଥାଟି ସାଧାରଣତଃ ସତ୍ୟ । ଯାହାର ଘଣ୍ଟା ଅଛି, ତାକୁ ସମୟ ପଚାରିଲେ, ସେ ଘଣ୍ଟା ଦେଖି କହେ । ଦୈବାତ୍ ଘଣ୍ଟା ପାଖରେ ନ ଥିଲେ ସେ ସମୟ କହିପାରେ ନାହିଁ । ଯାହାର ଘଣ୍ଟା ଦେଖିବା ଅଭ୍ୟାସ ନୁହେଁ, ସେ ଅନୁମାନ କରି ସମୟ ଠିକ୍ କରି କହିଦିଏ । ଅନେକ ସମୟରେ ତାହା ଠିକ୍ ହୁଏ– କେତେକ ସମୟରେ ଭୁଲ ହୁଏ । ଘଣ୍ଟା କି ସବୁବେଳେ ଠିକ୍ ରହେ ? ପୁରୁଷମାନେ ପ୍ରମାଣ ଭୂୟୋଦର୍ଶନ ଉପରେ ନିର୍ଭର କରନ୍ତି । ଗୃହନିବଦ୍ଧା ନାରୀମାନଙ୍କର ସେ ସୁବିଧା ବା ଅଭ୍ୟାସ ନ ଥାଏ । ସ୍ୱାମୀ, ପୁତ୍ର, ପୁତ୍ରବଧୂ, କନ୍ୟାର କଥା

ନାରୀ ଯେପରି ଜାଣେ, ପୁରୁଷ ବୋଧହୁଏ ନିଜର ସ୍ତ୍ରୀ-ପୁତ୍ରାଦିଙ୍କ କଥା ସେତେ ସହଜରେ ଜାଣିପାରେ ନାହିଁ । ଏହାର ଆଉ ଗୋଟିଏ କାରଣ ଅଛି । ଯେ ଯାହାକୁ ଆନ୍ତରିକ ସ୍ନେହ ବା ପ୍ରେମ କରେ, ତାହାର ହୃଦୟଜ ଭାବ ସେ ନିଜ ହୃଦୟରେ ସ୍ୱଚ୍ଛଭାବରେ ପ୍ରତିଫଳିତ ଦେଖେ । ନାରୀର ହୃଦୟର ସ୍ନେହ-ବୃତ୍ତି ପୁରୁଷ ଅପେକ୍ଷା ଅଧିକ ନୁହେଁ କି ? ଆମ୍ଭେମାନେ ପ୍ରସଙ୍ଗକ୍ରମେ ଏହି ସାମାନ୍ୟ ବିଷୟରେ ଅଧିକ କହିଲୁଁ ।

ଯେଉଁ ଯୁବକଙ୍କ ପ୍ରତି ହରିଚନ୍ଦନଙ୍କ ଗୃହିଣୀ ପଦ୍ମାବତୀ ଏତେ ଆକୃଷ୍ଟ ହେଲେ ତାହାଙ୍କ ନାମ ଧନଞ୍ଜୟ । ପାଇକରାୟଙ୍କ ପୁଅ ମାନଧାତା, ମାନଧାତାଙ୍କ ପୁଅ ପାଇକରାୟ, ଏହିପରି ଏହାଙ୍କର କୁଳବିଧି । ଧନଞ୍ଜୟ କିନ୍ତୁ ନିଜକୁ ମାନଧାତା ନ କହି ପାଇକରାୟ କହନ୍ତି । କାରଣ ସେ ଜଣେ କୃତବିଦ୍ୟ ବ୍ୟକ୍ତି । ପ୍ରେସିଡେନ୍‌ସି କଲେଜରୁ ପ୍ରଶଂସାସହକାରେ ଏମ.ଏ. ପାସ୍ କରିବା ପରେ ବି.ଏଲ୍. ପାସ୍ କରି ଓକିଲାତି ଆରମ୍ଭ କରିଛନ୍ତି । ନାନା କାରଣରୁ ଉକ୍ତ ବ୍ୟବସାୟ ଏହାଙ୍କ ମନୋନୀତ ନୁହେଁ । ଇଚ୍ଛା ମୁନସଫ୍ ବା ପ୍ରଫେସର୍ ହେଲେ ଯିବେ । ଯତ୍ନ ମଧ୍ୟ କରିଅଛନ୍ତି । ଫଳ ପ୍ରତୀକ୍ଷାରେ ରହି, କିଛି ଦିନ ଅବସର ଗ୍ରହଣ କରି ଗ୍ରାମରେ ଅଛନ୍ତି । ଏ ବିଷୟରେ ମଧ୍ୟ ସେ ପିତାଙ୍କର ଆଜ୍ଞାନୁବର୍ତ୍ତୀ । ପିତା ତାଙ୍କର ବିବାହ ବୟସ ଜାଣି ଡକାଇଛନ୍ତି । ଧନଞ୍ଜୟ ବିଦେଶରେ ରହି ପଢ଼ିବାର କାରଣ ଏହି ଯେ, ତାଙ୍କର ପିତୃବ୍ୟ ପୁରଞ୍ଜୟ ପାଇକରାୟ ବିଦେଶରେ ରହି ରେଲ୍‌ବାଇ ଇଲାକା କଣ୍ଟ୍ରାକ୍ଟରୀ କାର୍ଯ୍ୟରେ ଯଥେଷ୍ଟ ଅର୍ଥ ଉପାର୍ଜନ କରିଥିଲେ । ସେ ତାଙ୍କରି ସଙ୍ଗରେ ଶୈଶବରୁ ଯାଇ ସେହିଆଡ଼େ ଶିକ୍ଷାଲାଭ କରିଅଛନ୍ତି । ଏହିପରି କେତେକ ଉତ୍କଳୀୟ ବିଦେଶରେ ଅଛନ୍ତି । ଲାହୋରରେ ତାଙ୍କର ଜଣେ ଉତ୍କଳୀୟ ବନ୍ଧୁ ଅଧ୍ୟାପକ । ସେ ତାଙ୍କୁ ସାହାଯ୍ୟ କରିବାକୁ ପ୍ରତିଶ୍ରୁତ ହୋଇଅଛନ୍ତି । ଉତ୍କଳ ପତିତ ବୋଲି କିଏ କେଉଁଆଡ଼େ ଅଛି ଜଣାପଡୁ ନାହିଁ । ଥରେ ଉତ୍କଳ ଜାଗ୍ରତ ହେଲେ ତାହାର ପବିତ୍ର ଧ୍ୱଜା ତଳେ କେତେ କିଏ ଆଶ୍ରୟ ନେବେ । ଏପରି ଅନେକ ବ୍ୟକ୍ତି ଅଛନ୍ତି, ସେମାନେ ଉତ୍କଳୀୟ ନାମରେ ପରିଚୟ ଦେବାକୁ କୁଣ୍ଠିତ । ଅନ୍ୟ ଭାଷା କହି, ଅନ୍ୟ ଜାତିର ବାହୁଚ୍ଛାୟା ତଳେ ଆଶ୍ରୟ ନେଇଅଛନ୍ତି । ସେମାନଙ୍କର ଦୋଷଅଛି– ଅବସ୍ଥା ମଧ୍ୟ ସେହିପରି । ବର୍ତ୍ତମାନ ଏ ବିଷୟରେ କିଛି ପରିବର୍ତ୍ତନ ଦେଖାଗଲାଣି ।

ଓଡ଼ିଆ ନାମରେ ଗୌରବ ଅନୁଭବ କରିବା ଶିକ୍ଷିତ ବ୍ୟକ୍ତିଙ୍କ ସଂଖ୍ୟା ବୃଦ୍ଧି ପାଉଅଛି। କିନ୍ତୁ ଅକାଳକୁଷ୍ମାଣ୍ଡର ମଧ୍ୟ ଏକାନ୍ତ ଅଭାବ ନାହିଁ । ଯାହାହେଉ, ଆମ୍ଭମାନଙ୍କର ଏହି ଧନଞ୍ଜୟ ପାଇକରାୟ ସେପରି ନୁହନ୍ତି । କେବଳ, ଏତିକି ଯେ, ସ୍କୁଲରେ ନାମ ଲେଖାଇବାବେଳେ ଶିକ୍ଷକ ପାଇକରାୟର ପାଇକ ପଦ କାଟି 'ରାୟ' ଲେଖିଥିଲେ– ତାହା ରହିଯାଇଛି । ଏହି ଧନଞ୍ଜୟ ରାୟଙ୍କୁ ପଦ୍ମାବତୀ (ନିଜ ବିଶ୍ୱାସ ଅନୁଯାୟୀ) ଆୟୁର୍ଯଶ ବୃଦ୍ଧିକର ଦେବପ୍ରସାଦ ଦେବାକୁ ବଡ଼ପଣ୍ଡାଙ୍କୁ କହିଥିଲେ । ହରିଚନ୍ଦନ ପଦ୍ମାବତୀଙ୍କ ମନକଥା ସବୁ ବୁଝିପାରିଥିଲେ ସେଇଆ କରି ନ ଥାନ୍ତେ କି ? ତେବେ ଏତେ ଚଞ୍ଚଳ ହୋଇ ନ ଥାନ୍ତା ପରା– ପଦ୍ମାବତୀଙ୍କ ସଙ୍ଗରେ ପରାମର୍ଶ ଲୋଡ଼ାହୁଅନ୍ତା । ଧନଞ୍ଜୟଙ୍କ ଜନନୀ ଅନ୍ନପୂର୍ଣ୍ଣାଙ୍କ ସହିତ ପଦ୍ମାବତୀଙ୍କର ସାକ୍ଷାତ୍, ପରିଚୟ, ଆଳାପ ହେଲା ପରେ, ଦୂରରୁ ଧନଞ୍ଜୟଙ୍କୁ ଲକ୍ଷ୍ୟକରି 'ସେ ପୁଅଟି କିଏ' ପଚାରନ୍ତେ, 'ମୋ ପୁଅ, କଲ୍ୟାଣ କର' କହି ଅନ୍ନପୂର୍ଣ୍ଣା ଧନଞ୍ଜୟଙ୍କ ନିକଟକୁ ତାଙ୍କ ଝିଅ ଉମାକୁ ପଠାଇଲେ । ଉମା ଯାଇ ଭାଇଙ୍କୁ ଡାକିଆଣିଲା ।

ଧନଞ୍ଜୟ ମାତାଙ୍କ ମୁଖ ଆଡ଼କୁ ଟିକିଏ ଚାହିଁ ପଦ୍ମାବତୀଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି ତାଙ୍କ ଆଶୀର୍ବାଦ ଗ୍ରହଣପୂର୍ବକ ଇତସ୍ତତଃ ଚକ୍ଷୁସଞ୍ଚାଳନ କରିଦେଇ ଚାଲିଗଲେ । ପଦ୍ମାବତୀ ଧନଞ୍ଜୟଙ୍କ ମୁଖରୁ ଆଖି ଉଠାଇନେଇ କନକଲତା ଆଡ଼କୁ ଅନାଇଦେଇ ଚକ୍ଷୁ ଅପସାରିତ କଲେ । ବିଦ୍ୟୁତ୍‌ଗତିରେ ବଜ୍ରଶକ୍ତି ସହକାରେ ଗୋଟିଏ ଭାବ ତାଙ୍କ ହୃଦୟ ଆଲୋଡ଼ିତ କଲା । ମାନବର କୌଣସି କାର୍ଯ୍ୟ ବୃଥା ହୁଏ ନାହିଁ । ପଦ୍ମାବତୀଙ୍କର ଇଷ୍ଟଦେବ-ନିଷ୍ଠା ଆସନ୍ନଫଳପ୍ରସବା ହେଲା କି ? ଠାକୁର ବଡ଼ ହଟିଆ, କେଉଁ ସୂତ୍ରରେ କ'ଣ ଘଟାନ୍ତି କିଏ ବୁଝିବ !

ପଦ୍ମାବତୀ ସ୍ୱଭାବତଃ ସ୍ନେହଶୀଳା । ଭଗବାନ୍ ତାଙ୍କୁ ଦେବବାଞ୍ଛିତ ସ୍ୱାମୀ, ପୁତ୍ର, କନ୍ୟା, ପୁତ୍ରବଧୂ, ପୌତ୍ର, ପୌତ୍ରୀ ଦେଇ ତାଙ୍କର ସ୍ନେହକୁ ସଫଳ, ସଜୀବ, ବର୍ଦ୍ଧିତ, ଉନ୍ନତ କରିଅଛନ୍ତି । କଥା ଅଛି, 'ଖାଇଲା ପୁଅଝିଅ ରଙ୍କ ।' ଯେ ସ୍ନେହ ଦିଏ ତାକୁ ସ୍ନେହ ମିଳେ । ଚାରି ପୁଅ, ତହିଁ ମଧ୍ୟରେ ରାଜେନ୍ଦ୍ର ପରି ପୁଅ ଅଛି । ତଥାପି ଧନଞ୍ଜୟଙ୍କୁ ଦେଖି 'ଏଇଟି ମୋ ପୁଅ ହୋଇଥାନ୍ତା କି' ବୋଲି ପ୍ରାଣ ଡାକିଲା । ମନେମନେ କହିଲେ, 'ଆଖଣ୍ଡଳମଣି ! ତମ ମନରେ କ'ଣ ଅଛି ? ସତେ କି ଏପରି ପୁଅ ମୋର ହେବ ? ବିଧାତା କନକ କପାଳରେ କ'ଣ ଲେଖିଛି ?'

ଆହା, କାର୍ତ୍ତିକେୟ ପରି ପୁଅ, କି ସୁନ୍ଦର ଗମ୍ଭୀର ମୂର୍ତ୍ତି, ସ୍ଥିରଦୃଷ୍ଟି, ଧୀର ବିନମ୍ର ଗମନ । ଏହାଙ୍କୁ ଦେଖି ପୁତ୍ରସ୍ନେହରେ ପଦ୍ମାବତୀଙ୍କ ହୃଦୟରୁ ସ୍ନେହଧାରା ପ୍ରବାହିତ ହେଲା । ଅମଳମୁଖ ଚୁମ୍ବନ କରିବାକୁ ଇଚ୍ଛା ହେଲା । ଯେତେବେଳେ ସେ ଆସି ଗୋଡ଼ତଳେ ପଡ଼ିଲେ, ଇଚ୍ଛାହେଲା ଗାଢ଼ ଆଲିଙ୍ଗନ କରି କୋଳରେ ଲୁଚାନ୍ତେ । କେବଳ ମୁହଁଟି ହାତରେ ପୋଛିଦେଇ; ସାଷ୍ଟାଙ୍ଗ ପ୍ରଣାମର ଚିହ୍ନ ଧୂଳି ପଣତକାନିରେ ପୋଛିଦେଇ କହିଲେ, ''ବାପା ! ବୁଢ଼ାଟିଏ ହୋଇଥା, ପାଲିଙ୍କି ପାଟଛତା ହେଉ; ପୁଅ ଝିଅ, ନାତି ନାତୁଣୀ, ଧନ ଜନ ଗୋପଲକ୍ଷ୍ମୀ ମାଡ଼ିଯାଆନ୍ତୁ'' ଶୁଣି ଯୁବକର ମୁଖମଣ୍ଡଳ ଲଜ୍ଜା, ଆନନ୍ଦ ଓ ଆତ୍ମପ୍ରସାଦରେ ଆରକ୍ତ ଓ ଅପୂର୍ବ ଭାବଦ୍ୟୋତକ ହୋଇଉଠିଲା । ସେ ପ୍ରାୟ ସର୍ବଦା ମୁଖ ତଳକୁ କରିଥାନ୍ତି; ତାଙ୍କର ଦୃଷ୍ଟି ପ୍ରାୟଶଃ ଧରଣୀତଳାବଲଗ୍ନ ଥିଲା; କାରଣ ଅଦୂରରେ ଅନେକ ଗୁଡ଼ିଏ ଯୁବତୀ ଥିଲେ । ଥରେ ସେମାନଙ୍କୁ ଚାହିଁଦେଲେ କେତେ ପରିବର୍ତ୍ତନ ହୋଇଯାଉଥିଲା । ଯୁବତୀମାନେ ଯୁବକଟିକୁ ଦେଖୁଥିଲେ । କିନ୍ତୁ ଯୁବକ ଥରେ ସେମାନଙ୍କ ଆଡ଼କୁ ଚାହୁଁଥିଲେ, ସେମାନେ ଲଜ୍ଜାରେ ମୁଖ ଅନ୍ୟଆଡ଼େ ଫେରାଇନେଇ, ଓଢ଼ଣା ଟାଣି, ଚୁଡ଼ି କାଚ ହାତମୁଦି ଝମ୍‌ଝାମ୍ କରି ଗୋଟିଏ ତୁମୁଳ କୋଳାହଳ କରି ଯେପରିକି ଯୁବକଙ୍କୁ ତାଙ୍କର ଅନ୍ୟାୟ ଆଚରଣ ନିମିତ୍ତ ତିରସ୍କାର କରୁଥିଲେ । ପୁରୁଷମାନଙ୍କୁ ଦେଖିବାରେ ତ ସେମାନଙ୍କର ବିଧିପ୍ରତିପାଦିତ ଅଧିକାର ଅଛି; କବାଟ କୋଣରୁ, ଝିଡ଼ିକି ବାଟେ, ପରଦା ଉହାଡ଼ରେ ସବୁବେଳେ ତ ସେମାନେ ତାହା କରିଆସିଛନ୍ତି, କରନ୍ତି, କରିବେ । ନ୍ୟାୟ ହେଉ ବା ଅନ୍ୟାୟ ହେଉ, ବାର ବର୍ଷ କାହିଁକି ବାରଶ' ବର୍ଷ ହେଲା ଏ ଦଖଲସ୍ୱତ୍ୱ ସେମାନଙ୍କର ସ୍ଥିତିବାନ୍ ସ୍ୱତ୍ୱରେ ପରିଣତ ହେଲାଣି । ପୁରୁଷଙ୍କୁ ଦେଖିବାରେ ମଧ୍ୟ ସେମାନଙ୍କର ଦେହସୁହା ହୋଇଗଲାଣି । କିଛି ଅନିଷ୍ଟର ଆଶଙ୍କା ନାହିଁ । କି ଅକ୍ଷୟ କବଚ ସେମାନଙ୍କଠାରେ ଅଛି, ସେମାନେ ଜାଣନ୍ତି । କିନ୍ତୁ ତୁମ୍ଭେ ତ ଯୁବକ, ତୁମ୍ଭର ତ ଏ ବଡ଼ ଧୃଷ୍ଟତା ! ତୁମ୍ଭେ ସେମାନଙ୍କୁ ଅନାଇ ଏତେ ହଇରାଣ କରିବ ! ଅତଏବ ଆମ୍ଭେମାନେ ଉପଦେଶ ଦେଉଁ, ପୁରୁଷ ବିଶେଷତଃ ଯୁବକ, ଏକୁଟିଆ ହୋଇ କେବେହେଁ ଯୁବତୀ ମହଲକୁ ଯିବ ନାହିଁ କି ଯୁବତୀ ବ୍ୟୂହର ସମ୍ମୁଖୀନ ହେବ ନାହିଁ । ହେଲେ ସେମାନେ ନିଜ ସଂଖ୍ୟାର ଦ୍ୱିଗୁଣ ଚକ୍ଷୁଦ୍ୱାରା ତୁମ୍ଭଙ୍କୁ ଆକ୍ରମଣ କରିବେ । ତୁମ୍ଭର ଦିଓଟି

ଚକ୍ଷୁରୁ ତ ବେଶି ନୁହେଁ । ଆକ୍ରମଣ କଲାମାତ୍ରେ ଗୁଣୁଝୁଣୁ କିଣିକିଣି ଆଦି ଶବ୍ଦଦ୍ୱାରା ତୁମ୍ଭଙ୍କୁ ଅପଦସ୍ଥ କରିଦେବେ । ଅନେକ ପୁରୁଷ ଏକସଙ୍ଗରେ ଗଲେ ଅନ୍ୟବିଧ ଫଳ; ଅର୍ଥାତ୍ ବିନା ଯୁଦ୍ଧେ ଛତ୍ରଭଙ୍ଗ, ଓଢ଼ଣାତଳେ ଆଶ୍ରୟଗ୍ରହଣ । ଯାହାହେଉ, ଆମ୍ଭମାନଙ୍କୁ ଏସବୁ ବିଷୟ ଲେଖିବାକୁ ଏତେ ସମୟ ଲାଗିଲା; କିନ୍ତୁ କଟାକ୍ଷରେ ସବୁ ସମ୍ପାଦିତ ହେଲା ।

ଧନଞ୍ଜୟ ନିଜ ମାତାଙ୍କ ସଙ୍କେତାନୁଯାୟୀ ପଦ୍ମାବତୀଙ୍କୁ ପ୍ରଣାମ କରି ଇତସ୍ତତଃ ଚକ୍ଷୁ ବୁଲାଇ ଶୀଘ୍ର କିଞ୍ଚିତ୍ ଦୂରକୁ ଯାଇ ନାରିକେଳ-ଗୁବାକ-ବିଲ୍ୱବୃକ୍ଷ-ବହୁଳ ଐଶାନ୍ୟକୋଣସ୍ଥ ଚଉତରା ଉପରେ ବସି ନାନା ବିଷୟ ଚିନ୍ତା କଲେ । ନାରୀମାନଙ୍କ ସ୍ୱଚ୍ଛନ୍ଦଗତି ଓ ଅବାଧ ଦେବଦର୍ଶନ ନିମିତ୍ତ ସେ ପୂର୍ବାସ୍ୟ ହୋଇ ବସିଲେ । ଏହିଁଠାରେ ମିଶ୍ରେ ତାଙ୍କୁ ବିଲ୍ୱପତ୍ର ପାଦୋଦକ ଦେଇଆସିଥିଲେ । ଧନଞ୍ଜୟ ମଧ୍ୟେ ମଧ୍ୟେ ଉଠି ନାରୀମାନଙ୍କଠାରୁ ଦୂରରେ ରହି ଦେଉଳ ପ୍ରାଚୀରର ଭଗ୍ନାବସ୍ଥା, ମନ୍ଦିରର ଭାସ୍କର୍ଯ୍ୟ ଆଦି ଦେଖି ତାହାର ସମୟାଦି ନିରୂପଣ କରିବାକୁ ଚେଷ୍ଟା କରୁଥିଲେ । ବେଳେବେଳେ ଚକ୍ଷୁ ଯେ ଅନାୟତ୍ତ ହେଉ ନ ଥିଲା, ତାହା ନୁହେଁ । ରାଜେନ୍ଦ୍ର ଆସିଥିଲେ କିପରି ହୋଇଥାନ୍ତା ? ପ୍ରତ୍ନତତ୍ତ୍ୱ, ପ୍ରଣୟତତ୍ତ୍ୱ, ପରିଣୟତତ୍ତ୍ୱ ସବୁଥିରେ ସୁବିଧା ହୋଇ ନ ଥାନ୍ତା କି ? ବାସ୍ତବିକ ରାଜେନ୍ଦ୍ରଙ୍କର ଆସିବା ଉଚିତ ଥିଲା । କିନ୍ତୁ ଏ ଜଗତରେ କି ସବୁବେଳେ ସବୁ ଉଚିତ କାର୍ଯ୍ୟ ହୋଇଥାଏ ?

ହରିଚନ୍ଦନ ଓ ପାଇକରାୟ ଦୁଇ ବଂଶର ପୁରମହିଳାମାନେ ମିଳିମିଶି ହସଖୁସି ହୋଇ ଏକତ୍ର ବସି ଭୋଗପାଇ ମହାନନ୍ଦରେ ଖରାବେଳଟା କଟାଇଲେ । ଏହାରି ମଧ୍ୟରେ ଦିଓଟି ପ୍ରାଣରେ ଘୋର ବିପ୍ଳବ ଘଟିଗଲା । ଏହାରି ଧକ୍କା ସ୍ନେହମୟୀ ପଦ୍ମାବତୀଙ୍କ ହୃଦୟରେ ଲାଗିଥିଲା । ତାହାର ସଙ୍କେତ ବୁଦ୍ଧିମାନ୍ ପାଠକ ପାଇଅଛନ୍ତି । ଯେତେବେଳେ ଧନଞ୍ଜୟ ପଦ୍ମାବତୀଙ୍କ ପଦତଳୁ ଉଠିଲେ ଓ ପଦ୍ମାବତୀ ଯେତେବେଳେ ତାଙ୍କ ମୁଣ୍ଡ ଆଉଁସି କପାଳରୁ ଧୂଳି ଝାଡ଼ିଦେଇ ଆଶୀର୍ବାଦ କଲେ 'ଧନ ଜନ ଗୋପଲକ୍ଷ୍ମୀ ମାଡ଼ିଯାଉନ୍ତୁ,' ସେତିକିବେଳେ ତାଙ୍କର ଚତୁର୍ଥ ଆଶୀର୍ବାଦଟି ମୂର୍ତ୍ତିମନ୍ତ ହୋଇ ଧନଞ୍ଜୟଙ୍କୁ ପ୍ରାପ୍ତ ହେଲା କି ? ଧନଞ୍ଜୟ ଚକ୍ଷୁ ଫେରାଇନେଲାବେଳେ ତାଙ୍କର ଚକ୍ଷୁ ଜନନୀଙ୍କ ପଶ୍ଚାତ୍‌ରେ ଦଣ୍ଡାୟମାନ ଜନନୀଙ୍କ ଅପରୂପା କନକଲତାଙ୍କ ଚକ୍ଷୁ ସହିତ ମିଳିତ

ହୋଇ କଟାକ୍ଷରେ ଅପସାରିତ ହେଲା । ସେହି ନିମେଷମାତ୍ର ଅପାଙ୍ଗମିଳନ ସଙ୍ଗେ ସଙ୍ଗେ ବିଦ୍ୟୁତ୍-ପ୍ରବାହ ଉଭୟଙ୍କ ସମଗ୍ର ଶରୀର ଆଲୋଡ଼ନ କଲା । ସେ ବିଦ୍ୟୁତ୍-ବେଗ ପଲକପାତ ସମୟରୁ ଅଧିକ ସହିବା ଶକ୍ତି କାହାର ? ତେଣୁ ସବଳେ ସ୍ୱତଃ ଦୁଇ ଚକ୍ଷୁଯୁଗ୍ମ ପରସ୍ପର ଠାରୁ ସଂହୃତ ହେଲା । କିନ୍ତୁ ଏ ବିଦ୍ୟୁତ୍‌ର ନୈସର୍ଗିକ ଶକ୍ତି ଏହି ଯେ, ଏହା ଦୃଷ୍ଟିକୁ ଅଲଗା କରାଇଦେଇ ପୁଣି ଓଟାରେ । ତେଣୁ ପ୍ରଣୟୀ-ପ୍ରଣୟିନୀ ଧରାପଡ଼ିଯାନ୍ତି ।

ଅପାଙ୍ଗର ପୁନର୍ମିଳନ ହେଉ ନ ହେଉଣୁ ଧନଞ୍ଜୟ ସ୍ଥାନାନ୍ତରକୁ ଗଲେ । ସେହି ଅପାଙ୍ଗ ସଙ୍ଗେ ସଙ୍ଗେ ଦୁହେଁ ଦୁହିଁଙ୍କୁ ପ୍ରାଣ ବିକିଲେ । ଦୁହିଁଙ୍କର ଏପରି ଚମକିତ ଭାବ ଦେଖି ପୁରମହିଳାମାନଙ୍କ ମଧ୍ୟରେ ଆଖି ଠରାଠରି ଫୁସୁରୁଫାସର ହେଲା । ଏହି ଅପାଙ୍ଗସଞ୍ଚାଳନ ଗୋଟିଏ ଝଡ଼ ପରି ସମସ୍ତଙ୍କ ମନଃପ୍ରାଣକୁ ଆଲୋଡ଼ିତ କରିଦେଇଗଲା । ସମସ୍ତେ ଯେପରି ସେ ଆନ୍ଦୋଳନ ହୃଦୟର ଅନ୍ତଃସ୍ଥଳରେ ଅନୁଭବ କଲେ ଏବଂ ଅଜ୍ଞାତସାରରେ ବଳାତ୍କାରରେ ଅନୁମୋଦନ କଲେ । ଏହା ଏପରି ପବିତ୍ର, ସୁନ୍ଦର, ସ୍ୱାଭାବିକ, ସର୍ବଜନପ୍ରିୟ ଯେ, ଯେପରି ପ୍ରକୃତିର ବା ସ୍ୱୟଂ ଆଖଣ୍ଡଳମଣିଙ୍କ କରଣିପରି ବୋଧହେଲା । କେବଳ ପାର୍ବତୀପ୍ରଣୟକଣ୍ଠ ନୀଳକଣ୍ଠଙ୍କ ବୈରାଗ୍ନି-ପ୍ରଜ୍ୱଳିତ ତୃତୀୟନୟନର ପ୍ରତିମୂର୍ତ୍ତିସଦୃଶ ପାଇକରାୟଙ୍କ ବିଧବା ଭଉଣୀ ତୁଳସୀଦେଈ ବିରକ୍ତ ହୋଇ କହିଲେ, ''ହାଇରେ ! ଏ କଳିକାଳ ଟୋକୀଗୁଡ଼ାକ କି ଅଣଲାଜେଇ ! ବଲବଲ କରି ମିଣିପ ପୁଅଙ୍କ ମୁହଁକୁ ଅନାଉଛନ୍ତି, ଘୋଡ଼ୀପରି ହସୁଛନ୍ତି । ଆମ ପିଲାବେଳେ କାନ କାଟିଲେ ବଚନ ବାହାରୁ ନ ଥିଲା ।'' ଏଥିରେ ଧନଞ୍ଜୟ-କନକଙ୍କ କାର୍ଯ୍ୟଠାରୁ ସ୍ତ୍ରୀମାନଙ୍କ ହୃଦୟ ଅଧିକ ଦାୟୀ, କାରଣ ଇଚ୍ଛା ଚିନ୍ତାର ଜନନୀ । ସମସ୍ତଙ୍କ ମନରେ ଯୁଗପତ୍ ଏହି ଚିନ୍ତା ହେଲା, 'କେମନ୍ତ ଯୋଡ଼ା, ଯେପରି ଷଠିକୁଛି ଏକକୁ ଆନପାଇଁ ଗଢ଼ିଛି ।' ଏହାପାଇଁ କି ଧନଞ୍ଜୟ କନକଲତା ଦୋଷୀ ? ସେମାନେ ପରସ୍ପରକୁ ଅନାୟତ୍ତ ଭାବରେ ଚାହିଁଦେଲେ ବୋଲି ଅନ୍ୟାୟ କଲେ ? ଯାହାହେଉ ସମସ୍ତଙ୍କ ମନକଥା ମନରେ ରହିଲା । କେବଳ ପଦ୍ମାବତୀ ଠାକୁରଙ୍କ ଶ୍ରୀଅଙ୍ଗଚନ୍ଦନ ଟିକିଏ ନେଇ ଅନ୍ନପୂର୍ଣ୍ଣାଙ୍କ ପାଟିରେ ଗୁଞ୍ଜିଦେଇ କହିଲେ, ''ଭଉଣୀ, ତୁମେ ଆଜିଠାରୁ ମୋ ମହାପ୍ରସାଦ ହେଲ । ମୋର ସୁଖ-ଦୁଃଖ ତୁମର ସୁଖ-ଦୁଃଖ ସଙ୍ଗେ ସମାନ ।''

ପରେ ତୁନି ତୁନି କାନରେ କ'ଣ କହି, କହିଲେ – ''ତୁମକୁ ତ ଆଜି ସତ୍ୟ କରିବାକୁ ହେବ, ନ ହେଲେ ମୁଁ ଛାଡ଼ିବି ନାହିଁ ।''

ପୁତ୍ରଗର୍ବିଣୀ ଅନ୍ନପୂର୍ଣ୍ଣା ହସି ହସି ନିଜର ଉଦ୍ଦାମ ଆନନ୍ଦାବେଗ ଦମନ କରି କହିଲେ, ''ହଉ, ମୁଁ ତାଙ୍କୁ କହିବି । ଆମେ ଯେତେହେଲେ ମାଇପିଲୋକ । ମୁଁ ନିଶ୍ଚେ ଉଝଟ କରିବି ।'' ପରେ ପଦ୍ମାବତୀ ପୁଣି କହିବାରୁ କନକଲତା ଆଡ଼କୁ ଥରେ ଅନାଇଦେଇ କହିଲେ, ''ହଁ ସତ୍ୟ କଲି । ଆଖଣ୍ଡଳମଣି ଜାଣନ୍ତି । ଭଉଣୀ, ମୁଁ ବି ତ ଝିଅ ଜନ୍ମ କରିଛି– ବିଧାତା ସିନା କପାଳ ପୋଡ଼ିଦେଲା !'' ସାଶ୍ରୁପୂର୍ଣ୍ଣ ଲୋଚନରେ ଏହି ଶେଷକଥା କେତୋଟି ସେ ଉମାକୁ ଲକ୍ଷ୍ୟ କରି କହିଲେ । ଏହାର ରହସ୍ୟ ପାଠକ ପରେ ଜାଣିବେ । ଗଲାବେଳେ ସେ କନକକୁ କୋଳକୁ ଆଣି ତା' ପିଠି ଆଉଁଶିଦେଇ ତାହାର ନବନୀତକୋମଳ-ଅଙ୍ଗ, ପଦ୍ମଗନ୍ଧ ମୃଦୁ ନିଃଶ୍ୱାସ, ମିଳିନ୍ଦନିନ୍ଦୀ କୁଞ୍ଚିତ ଚିକୁର ଶୋଭା ସ୍ପର୍ଶନ, ଆଘ୍ରାଣ ଓ ଦର୍ଶନକରି ପ୍ରାଣକୁ ଶୀତଳ କଲେ । ସ୍ନେହ ସମ୍ଭାଷଣ ପରେ ଦୁଇ ଦଳ ପରସ୍ପରଠାରୁ ବିଦାୟ ନେଲେ ।

ଏ ଜଗତରେ କେତେ ଅଭାବନୀୟ ପରିବର୍ତ୍ତନ ଘଟିଯାଉଅଛି । ଯେ ଯେପରି ଆସିଥିଲେ, କିଞ୍ଚିତ୍ ଅଭିଜ୍ଞତା ଓ ଦର୍ଶନ-ସୁଖ ଘେନି ସେହିପରି ବାହୁଡ଼ିଗଲେ । ଯୋଡ଼ିଏ ପ୍ରାଣରେ କି ଅପ୍ରତ୍ୟାଶିତ ଘୋର ପରିବର୍ତ୍ତନ ଘଟିଗଲା ! ଏ ପରିବର୍ତ୍ତନ ସୁଖର ନା ଦୁଃଖର ? ଆମ୍ଭେମାନେ କହୁଁ, ଉଭୟର । କିନ୍ତୁ ଏ ସୁଖ ହଳାହଳମୟ, ଏ ଦୁଃଖ ଅମୃତମୟ । ହା କନକଲତା ଧନଞ୍ଜୟ! ତୁମ୍ଭେମାନେ ଯେବେ ଜାଣିଥାନ୍ତ ପ୍ରଣୟର ପଥ କିପରି କଣ୍ଟକାକୀର୍ଣ୍ଣ, ତୁମ୍ଭେମାନେ କି ଏ ପଥରେ ପାଦ ଦେଇଥାନ୍ତ ? ଅଥବା ତୁମ୍ଭମାନଙ୍କର ବା ଏଥିରେ କି ଆୟତ୍ତ ଥିଲା ?



## ପଞ୍ଚମ ପରିଚ୍ଛେଦ

# ଗଙ୍ଗା ଯମୁନା

ଦୁଇ ଦଳ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ସ୍ୱ-ସ୍ୱ ଗ୍ରାମକୁ ପ୍ରତ୍ୟାବର୍ତ୍ତନ କରୁ କରୁ ପରସ୍ପର ଦଳସ୍ଥ ବ୍ୟକ୍ତିମାନଙ୍କର ରୂପଗୁଣାଲୋଚନାରେ ପ୍ରବୃତ୍ତ ହେଲେ । ହରିଚନ୍ଦନଙ୍କ ଦଳରେ ଧନଞ୍ଜୟଙ୍କ ରୂପ, ଗୁଣ ଓ ଧୀର ବିନମ୍ର ବ୍ୟବହାର, ବିଧବା ଉମାର ସଧବା ପରି ହସି ଖେଳି ବୁଲିବା ଓ କେତେକ ଅଳଙ୍କାର ପିନ୍ଧିବାର ଅନୌଚିତ୍ୟ, ତୁଳସୀଦେଈର ଅଯଥା ଅସ୍ୱାଭାବିକ କଠୋରତା ଓ ରୁକ୍ଷ ସ୍ୱଭାବ ଘେନି ନାନା ଆଲୋଚନା ହେଲା । ପାଇକରାୟ ଦଳରେ ଅନ୍ୟ ସମସ୍ତ ବିଷୟ ଅପେକ୍ଷା କନକଲତା ବିଷୟରେ ଆଲୋଚନା ଅଧିକ । ଉମା କହିଲା, ''କନକ ପରୀଟିଏ ପରି ଗୋଟିଏ ଚାଉଳରେ ଗଢ଼ା । ଭାଇଙ୍କି ଆଚ୍ଛା ହୁଅନ୍ତା ।''

ଅନ୍ନପୂର୍ଣ୍ଣା – ଆଚ୍ଛା ଝିଅଟିଏ । କଳିହୁଡ଼ୀ ନୁହେଁ । ଆଖି ଦିଓଟିରେ ଢୁଲୁଢୁଲୁ ଅନାଉଅଛି । ତାକୁ କଳିକଜିଆ ଆସେ ନାହିଁ । ତୁଳସୀ ଦୁଇ ପତ୍ରରୁ ବାସେ ।

ତୁଳସୀଦେଈ – ଲହୁଣିପିତୁଳା ଆଣି କ'ଣ କରିବ ? କୁଟାଖଣ୍ଡକ ତ ଦି' ଖଣ୍ଡ କରିବ ନାହିଁ । ଢଙ୍ଗରୁ ଦେଖାଗଲା, ତା' ଦେଇ ଶାଗ ସିଝିବ ନାହିଁ । ବାଘପରି ରୁଣ୍ଡେଇ ଗୋଟେଇ କାମ କଲେ ସିନା ଘରଣୀ । ଘରେ ଆସି ଖଟ ଉପରେ ଗୋଡ଼ ଲମ୍ବେଇ ବସିଲେ ନାଁ ବାହାରିବ ? ତୁଚ୍ଛାକୁ ଆଖି ଛଳଛଳ – ସତେଯେମିତି ସବୁବେଳେ ଲୁହ ବୋହି ଆସୁଛି ! ମା'ଲୋ ! ତୋ ଦେହରେ କି ପଦେ କଥା ଚଳିବ ? ଘରଦ୍ୱାର ଲୁହରେ ଭସେଇଦେବ ।

ଉମା – ତୁଳସୀଦେଈ କଥାରେ କ'ଣ ଅଛି ? ସେ ତ ସବୁବେଳେ ରଗରଗ । ତା' କଥା ସେଇପରି । ଘରକାମ ସିନା ଯତନ-ଯାତନ କରି କରିବ, ବାଘପରି କ'ଣ କରିବ ? ଲଢ଼େଇ କରିବ ନା କୋଡ଼ି ହାଣିବ ? ମୋଟକାମ କରିବାକୁ କ'ଣ ପୋଇଲୀ ପରିବାରୀ ନାହାନ୍ତି ? ମା ! କନକକୁ ଆମର ନୂଆବୋଉ କରି ଆଣନ୍ତେ । ସେ ବହୁତ ପାଠ ପଢ଼ିଛି । ତାଙ୍କ ଗାଁ ଇସ୍କୁଲରେ

ପାସ୍ କରିଛି । ପଛେ ବି ତା' ଭାଇଠାରୁ ଅନେକ ବହି ଆଣି ପଢ଼ିଛି । ମୁଁ ତ ତା' ପାଖରେ ହାରିଗଲି ।

ଅନ୍ନପୂର୍ଣ୍ଣା– ତୁମେ ସବୁ ବସି ଏଇଆ କରୁଥିଲ ପରା ? କେତେବେଳେ ଏତେ କଥା ହେଲା ?

କୁନ୍ତୀ-ମା'— ମଲା, ତମେ ତ କନକ-ମା' ସାଙ୍ଗରେ ବସି କଥା କହିଲ । ଉମା ଆଉ କନକ ଜଡ଼ାତେଲ ମେଣ୍ଢାବାଳ, କ୍ଷୀର ନୀର ପରି ମିଶିଯାଇ ପାଠ, ବହି, ଲେଖାପଢ଼ା କଥା କଥାବାର୍ତ୍ତା ହେଉଥିଲେ ପରା !

ଉମା – କନକ କେଶବ-କୋଇଲି, କାନ୍ତ-କୋଇଲି, ବାରମାସୀ-କୋଇଲି, ଦେଉଳ-ତୋଳା, ଲକ୍ଷ୍ମୀପୁରାଣ, କପଟପାଶା, ମଥୁରାମଙ୍ଗଳ, ଲାବଣ୍ୟବତୀ, ପ୍ରେମତରଙ୍ଗିଣୀ, ବିଚିତ୍ରରାମାୟଣ–କେତେ କେତେ ବହି ପଢ଼ିଛି । ଆଉ ଛାନ୍ଦମାଳା, ଚିଲିକା, ପୁଷ୍ପମାଳା, ରାମବନବାସ, ଛ'ମାଣ ଆଠଗୁଣ୍ଠ, ସୀତାବନବାସ ଆଉ କେତେ ନୂଆ ନୂଆ ବହି ବି ପଢ଼ିଛି ।

ତୁଳସୀଦେଈ– ଉଁ, ତୁ ଯେମିତି ପଢ଼ିଛୁ ? ତମେ ସବୁ ଦିପୋଟି କିଲଟର ହେବ ! କୁଳ ଉଦ୍ଧାର କରିବ ! କାଳ ଭାଣ୍ଡ ହେଲା । ଘୋର କଳିକାଳ ପରା– ତମେ କ'ଣ କରିବ ? ଆଗେ ଗୀତା ଭାଗବତ ବୋଲୁଥିଲେ– ଏବେ ତା'ତ ନାହିଁ, ଏଣୁ ତେଣୁ କ'ଣ ବହିଗୁଡ଼ାଏ ପଢୁଛ । କୁନ୍ତୀ-ମା ' ଓ ମରୁଆ-ମା' ଲେଖାରେ ଧନଞ୍ଜୟଙ୍କ ଭାଉଜ ହେବେ । ସେମାନେ କଥାବାର୍ତ୍ତା ହେଲେ–

ମରୁଆ-ମା'– ଏକା ଧନୁଙ୍କର ମନ ଅଛି । କନକକୁ ଚୋରେଇ ଚୋରେଇ ଅନାଉଥାନ୍ତି । ସେ ତ ସବୁବେଳେ ତଳକୁ ମୁଣ୍ଡପୋତି ବାଟ ଚାଲନ୍ତି, କାହାକୁ ଦେଖିଲେ ଦୂରରୁ ବାଟ ଆଡ଼େଇ ହୋଇଯାନ୍ତି । କନକ ମନକୁ ଯାଇ ନ ଥିଲେ ଏତେ ଚୋରାଚାହାଣିରେ ଅନାନ୍ତେ କାହିଁକି ? ପହିଲୁ ତ ଦେଖି ଚମକିପଡ଼ିଲେ ।

କୁନ୍ତୀ-ମା'– 'ଯା ମନ ଯାହାକୁ ରସେ, ତା'ପରି ତାକୁ ଆନ ନ ଦିଶେ ।'

ଉମା– କନକର ବି ଭାରି ମନ ଅଛି ।

ତୁଳସୀ–ହାଇରେ ଦଇବ – ସେ କଥା ବି କଥାବାର୍ତ୍ତା ! କି କାଳ ହେଲା ଆସି । ମା' ବସୁଧା ! ତୁ ଫାଟି ଯା, ମୁଁ ତହିଁରେ ପଶିଯାଏଁ ।

ଉମା– କି, ତୁଂ ଏମିତି କାହିଁକି ହଉଚୁ ? ସହିପାରୁ ନାହୁଁ ନା କ'ଣ ? ସେ ମୋତେ କହିଲା ବୋଲି ମୁଁ କେତେବେଳେ କହିଲି ?

ମଗୁଆ-ମା'– ଆଉ ତମେ ତା' ମନକଥା କେମିତି ଜାଣିଲ ?

ଉମା – କି, ତମେ ଯିମିତି ଜାଣିଲ ଭାଇଙ୍କର ମନ ଅଛି, ମୁଁ ସିମିତି ଜାଣିଲି କନକର ମନ ଅଛି ।

ମଗୁଆ-ମା'–ମୋ ରାଣ, ଉମା, ସତେ ସତେ ! କେମିତି ଜାଣିଲ କହ । ସେ କ'ଣ କହୁଥିଲେ ? ସେ ତ ତେବେ ଭାରି ଅଣଲାଜେଇ । ଆମେ କହୁଥିଲୁ ଭଲ ପିଲାଟିଏ । ପୋତାମୁହାଁ ମଣିଷ ବଡ଼ ଖରାପ– ଧୂଳିଆ ଜନ୍ଦା ପରି, ଥିର ଚାଲ, ପିମ୍ପୁଡ଼ି ମରିବ ନାହିଁ । ଆଖି ଦିଓଟି ଢଳଢଳ, ଚାଲିଚଳନ ସୁଢଳ । ଉପରେ ଦେବକନ୍ୟା; ଭିତରେ ଏତେ କଥା ! ପୁରୁଷ ପୁଅକୁ ଦେଖିଲାକ୍ଷଣି ପାଟିରୁ ଲାଳ ବହିପଡ଼ିଲା, ସମ୍ଭଳା ନାହିଁ, ସବୁରାତ୍ ନାହିଁ, ସବୁ କଥା ଖୋଲି କହିଦେଲା !

କୁନ୍ତୀ-ମା' – ଆଲୋ, ସେ ମୁହଁ ଫିଟାଇ କେମିତି କହିଲା ? ତା' ଛାତି ଫାଟିଗଲା ନାହିଁ ?

ଉମା – କାହିଁକି ପର ଝିଅକୁ ଏତେ ନିନ୍ଦା କରୁଛ ? ଅଦୋଷୀକି ଦୋଷ ଦେଉଛ ? ମୁଁ ସବାଖାଇ କାହିଁକି କନକ କଥା କହିଲି !

ମଗୁଆ-ମା'– ସତେ ଉମା, ତମ ଭାଇ ରାଣ – ସତକଥା କହ ।

ଉମା– ଭାଇ ରାଣ କାହିଁକି ପକେଇଲ ? ତାଙ୍କଠୁଁ ସମସ୍ତେ ଆମେ ଝାଡ଼ିଝୁଡ଼ି ନେଉଁ । କନକ ଖାଲି ଛନଛନ ହେଉଥାଏ, ଭାଇଙ୍କ ଆଡ଼କୁ ଅନାଇ ଦେଉଥାଏ । ଭାଇ ଯେତେବେଳେ ମା'କୁ ଓଳିକିହୋଇ ଗଲେ, ସେତେବେଳେ କନକର ଗୋଟା ଝାଳ ବୋହିଗଲା । ଦେହ ହାତ ଥରୁଥାଏ । ତମେ ସବୁ ଏଣେ ଥାଅ, ଆମେ ଦି' ଜଣ ହାତ ଧରାଧରି ହୋଇ କଥାବାର୍ତ୍ତା ହେଉଥିଲୁ ।

ତୁଳସୀ– ସତେ ! ଏତେ କଥା ଜାଣୁ ତ ? ଆଜହୁଁ ଏଡ଼େ, ପାଣି ପଡ଼ିଲେ ହବୁ କେଡ଼େ ! ଛି ଲୋ ଛତୁ, ମେଘ ବରଷିଲେ କେତେ ତୁ ଫୁଟୁ ! ଏଡ଼େ ଅଣଲାଜେଇ ! କିମ୍ପାର ନେଇ ନଇ ମଝିରେ କଲାଣି, ମନ ଘର ଧରି ନାହିଁ ?

ଉମା ଆଉ ସହି ପାରିଲା ନାହିଁ । ଆଖିରୁ ଝରଝର ଲୁହ ଗଡ଼ିଲା । ବିରାମ ନାହିଁ । କଇଁ କଇଁ କାନ୍ଦି କାନ୍ଦି ଆଉ କଥା କହିପାରିଲା ନାହିଁ । ଯେ ଯେତେ ତୁନିକଲେ, ଆଉ ତୁନି ହୋଇପାରିଲା ନାହିଁ । ଘରେ ଯାଇ କବାଟ କିଳି

ଶୋଇରହିଲା । ଉମାର ସ୍ୱଭାବ, ହସୁଛି ଯଦି ହସୁଛି, କେହି ତାକୁ ସହଜରେ କନ୍ଦାଇ ପାରିବେ ନାହିଁ । ଯେବେ ଥରେ କାନ୍ଦିଲା ଆଉ ସହଜରେ ତୁନି ହେବ ନାହିଁ–ଯେପରି ବସୁଧା ସହଜରେ ତାତିଯାଏ, ସହଜରେ ଶୀତଳ ହୋଇଯାଏ; କିନ୍ତୁ ସିନ୍ଧୁ ସହଜରେ ତାତେ ନାହିଁ; କିନ୍ତୁ ଥରେ ତାତିଲେ ସହଜରେ ଶୀତଳ ହୁଏ ନାହିଁ । ମନୁଷ୍ୟ ମଧ୍ୟରେ ସେହିପରି ସିନ୍ଧୁ-ବସୁନ୍ଧରା-ଧର୍ମାକ୍ରାନ୍ତ ଦୁଇ ଶ୍ରେଣୀର ବ୍ୟକ୍ତି ଅଛନ୍ତି । କେହି କେହି ସହଜରେ ରାଗନ୍ତି ନାହିଁ; କିନ୍ତୁ ଥରେ ରାଗିଲେ ଆଉ ରକ୍ଷା ନାହିଁ । ପୁଣି କେହି କେହି କ୍ଷଣକୋପୀ ବ୍ୟକ୍ତି କ୍ଷଣକେ ତାତିଯାଇ କ୍ଷଣକେ ଥଣ୍ଡା ହୋଇଯା'ନ୍ତି । ସେମାନଙ୍କର ମନର ସେ ଭାବ, ବରଡ଼ାପତ୍ର ନିଆଁପରି ବା ଜହ୍ନି ଫୁଲର ଦୀପ୍ତି ପରି । ଯେଉଁ ପୁଷ୍ପ ଶୀଘ୍ର ଫୁଟିଉଠେ, ସେ ଶୀଘ୍ର ମଉଳିଯାଏ – ଏହା ପ୍ରକୃତିର ଧର୍ମ । ତେଣୁ ସଦା ଉତ୍‌ଫୁଲ୍ଲପ୍ରାଣା ଉମାର ଆଜି କି ଅସହ୍ୟ ଯାତନା ହେଉଅଛି । ମା' ଦେଖି କିଛି କହିଲେ ନାହିଁ; ନୀରବରେ ନିର୍ଜନରେ ଅଶ୍ରୁ ବିସର୍ଜନ କଲେ ।

ତୁଳସୀଦେଈ ମୁରବୀ । ବିଧବା ଝିଅକୁ ଆକଟ ନ କଲେ କେତେବେଳେ କେଉଁ କଥା । ପାଇକରା ତୁଳସୀଦେଈଙ୍କୁ ବଡ଼ ମାନନ୍ତି । ସେ ବାଳବିଧବା । ପିଲାଦିନୁ ପାଇକରାଙ୍କ ଘରେ ଅଛନ୍ତି । ସେ ସମସ୍ତଙ୍କର 'ତୁଳସୀଦେଈ', ସମସ୍ତଙ୍କର ମୁରବୀ । ଅନ୍ୟାୟ ଦେଖିଲେ ପଦେ କହିବେ; ହରି, ବ୍ରହ୍ମା ଶଙ୍କର ହେଲେ ବି ଛାଡ଼ିଯିବେ ନାହିଁ । ଶାଣଦିଆ ମୁହଁ । ଏହି ତୁଳସୀଦେଈଙ୍କ ସଙ୍ଗରେ ଅଭାଗିନୀ ଉମାର ଭାଗ୍ୟ ଅଜ୍ଞାତ ସୂତ୍ରରେ ସମ୍ପୃକ୍ତ ହୋଇଅଛି । ଉମାର-ଜୀବନ-ନାଟିକା ତୁଳସୀ ହସ୍ତରେ । ନିୟତିର ସେହି ପରିଣତି ଆଡ଼କୁ ଶନୈଃ ଶନୈଃ ଉମା, ତୁଳସୀ ଅଗ୍ରସର ହେଉଅଛନ୍ତି । ଚିରହାସ୍ୟମୟୀ ଉମା କେତେବେଳେ ବିଲୋଳହାସ୍ୟମୟୀ କ୍ଷଣପ୍ରଭା, କେତେବେଳେ ବିଷାଦ ଗମ୍ଭୀର ଘୋର କୃଷ୍ଣ-ଘନ । ନିର୍ମମ ତୁଳସୀଦେଈର ସ୍ଥୈର୍ଯ୍ୟ ଅଟଳ ଅଚଳ ।

ନିୟତି, କି ଉଦ୍ଦେଶ୍ୟରେ ଉଭୟଙ୍କୁ ଏପରି ଏକ ସୂତ୍ରରେ ବାନ୍ଧିଲୁ ? ଉଭୟଙ୍କ ଜୀବନରେ କି ସାମ୍ୟ, ପୁଣି କି ବୈଷମ୍ୟ !! କାହିଁକି ଏପରି ସେମାନେ ପରସ୍ପରର ଛାୟା-ସଂସ୍ପର୍ଶରେ ବିକାରଗ୍ରସ୍ତ ହୁଅନ୍ତି? ଉମା ! ତୁ କ'ଣ ଜାଣୁ ନାହିଁ ତୁଳସୀ ତୋହରି ପରି ଅଭାଗିନୀ ହୋଇ କି କଠୋର ଦାରୁଣ ନିର୍ମମ ବୈରାଗ୍ୟରେ ନିଜର ସୁଖକୁ ଜଳାଞ୍ଜଳି ଦେଇ ଚିରବ୍ରହ୍ମଚାରିଣୀ

ହୋଇ ରହିଅଛି ? ସମାଜରେ ତାହାର କି ସମ୍ମାନ ! ନିବୃତ୍ତିର ପନ୍ଥା ପରିଣାମରେ କି ପରିମାଣରେ ଶାନ୍ତିପ୍ରଦ ! ତୁଳସୀ ! ତୁ କ'ଣ ଉମାର ନିର୍ଦ୍ଦୋଷ କୁମାରୀହୃଦୟ ଦେଖି ଦେଖି ନାହୁଁ ? ତୁ ତ ନାରୀ, ତୋର କ'ଣ ନାରୀହୃଦୟ ନାହିଁ ? ଉମାର କି ବୟସ, କି ରୂପ ? ତୁ କ'ଣ ସେହି ଉଦ୍ଦାମ ଯୌବନର କଥା ସମ୍ପୂର୍ଣ୍ଣ ବିସ୍ମୃତ ହୋଇଅଛୁ ? ମାନବ ଚତୁର୍ଦ୍ଦିଗର ପରିବେଷ୍ଟନୀ ଏବଂ ପ୍ରାକୃତିକ ଓ ସାମାଜିକ ଅବସ୍ଥାର ଦାସ । ସେ କାଳର ଯେଉଁ ପାରିବାରିକ ଶାସନ, ସାମାଜିକ କଠୋର ଶୃଙ୍ଖଳ, ତୋର ଲୌହମୟ ଚରିତ୍ରକୁ ଗଠନ କରିଥିଲା, ଆଜି ତାହା କାହିଁ ? ଅଥବା ତୋର ସେ ବିଚାରଶକ୍ତି ନାହିଁ । ତୁ ସମସ୍ତ ଦୋଷ ଅଭାଗୀ ଉମା ଉପରେ ଢାଳିଦେଇ ତାକୁ ବିଷବତ୍ ଦେଖୁଛୁ । ତାହାର ଅକପଟ କୁମାରୀହୃଦୟର ଉଦ୍ଦାମ ଉତ୍ସାହ ଆନନ୍ଦକୁ ତୁ ଚପଳା ଯୁବତୀର ବିଳାସ-ଚେଷ୍ଟା ବା ଭାବୀ-ସଙ୍କଟର ହେତୁ ମଣି ପ୍ରାଚୀନ ସମାଜର ସ୍ୱୀୟ ବ୍ରହ୍ମଚର୍ଯ୍ୟର ତୁଳାଦଣ୍ଡରେ ଓଜନ କରି ପୂର୍ଣ୍ଣ ଦଣ୍ଡବିଧାନର ପ୍ରୟାସିନୀ ହୋଇଅଛୁ । ମାନବ ହୃଦୟର ଦୁର୍ବଳତା, ବୟସର ସ୍ୱାଭାବିକତା, ସାମାଜିକ ଅବସ୍ଥାନ୍ତରର ଫଳ ପ୍ରତି ଭ୍ରୂକ୍ଷେପ କରୁ ନାହୁଁ, ଅଥବା କରିପାରୁ ନାହୁଁ । ହାୟ ! ଏପରି ଅବସ୍ଥାରେ ସେହି ଲୋମହର୍ଷଣକାରୀ ବିଷାଦମୟ ସୁଦୂର ପରିଣାମ ଅନିବାର୍ଯ୍ୟ । ତୁମ୍ଭମାନଙ୍କ ମଧ୍ୟରେ ରାକ୍ଷସୀ କିଏ–ବ୍ୟଭିଚାରିଣୀ ନା ବ୍ରହ୍ମଚାରିଣୀ ? ଦେଖାଯାଉ, ତୁମ୍ଭମାନଙ୍କ ଜୀବନରେ ସେହି ପଟ ଉତ୍ତୋଳିତ ହେଉ ।

ନିୟତିର କି କୁଟିଳାଗତି ! କେଡ଼େ ସୁନ୍ଦର ଦିବସ ପରେ କି କରାଳ ରାତ୍ରି ! କେତେ ସୁଖରେ ହରିଚନ୍ଦନ ଓ ପାଇକରାଙ୍କ ପିଲାମାନେ ଦିନ କଟାଇଲେ । କିପରି କଥଉଁ କଥା, ତାହାର ପରିଣାମ ଏପରି ଶୋଚନୀୟ ହେଲା । ଯାହାହେଉ ଯେ ଯାହାର ସୁଖ ଦୁଃଖ ଘେନି ନିଜ ନିଜ ଘରେ ଯାଇ ରହିଲେ । ଅତି କଷ୍ଟରେ ଜନନୀ ଅନ୍ନପୂର୍ଣ୍ଣା ଅଭାଗୀ କନ୍ୟା ଉମାକୁ ନାନା ପ୍ରବୋଧ ଦେଇ ରାତିକୁ ଭାତ ଦିଓଟି ଖୋଇଲେ । ତୁଳସୀଦେଈଙ୍କୁ ଏତେ ଭୟକରି, ପ୍ରାଣପ୍ରତିମ କନ୍ୟାର ଏତେ ଦୁଃଖ ସହି ମଧ୍ୟ ପଦେ ଶୁଣିଲେ– "ଏହିପରି ମୁହଁ ଦେଲେ କୁଳରେ ଦାଗ ଲାଗିବ, ଚନ୍ଦ୍ରମାରେ କଳଙ୍କ ଲାଗିବ ।" ଅନ୍ନପୂର୍ଣ୍ଣା ଚକ୍ଷୁର ଲୋତକ ନୀରବରେ ଅଞ୍ଚଳରେ ପୋଛି ଉପବାସ ରହିଲେ । ସେଦିନ ଆଉ ପାଇକରାଙ୍କ ଆଗରେ ପଦ୍ମାବତୀଙ୍କ ଇଚ୍ଛା ପ୍ରକାଶ କରିପାରିଲେ ନାହିଁ ।

ଝିଅ କଥା ଘେନି ସ୍ୱାମୀ-ସ୍ତ୍ରୀ ମଧ୍ୟରେ ଅଭ୍ୟାସଗତ ମତାନ୍ତର ହେଲା । ପାଇକରା ତୁଳସୀ ପକ୍ଷ ନେଲେ ।

ପାରିବାରିକ ଆକାଶ କିଞ୍ଚିତ୍ ମେଘ ନିର୍ମୁକ୍ତ ହେବାରୁ ଅନ୍ନପୂର୍ଣ୍ଣା କେତେକ ଦିନ ପରେ କଥାପ୍ରସଙ୍ଗରେ ପାଇକରାଙ୍କୁ ପଦ୍ମାବତୀଙ୍କ ପ୍ରସ୍ତାବ ଜଣାଇଲେ । ପାଇକରା କହିଲେ, "ଆଚ୍ଛା ହେଉ, ଦେଖାଯିବ । ସେ ମଧ୍ୟସ୍ଥ ପଠାନ୍ତୁ, ଦବାନବା ଠିକ୍ ହେଲେ ଜବାବ ଦିଆଯିବ ।" ଅନ୍ନପୂର୍ଣ୍ଣା ଆଉ କିଛି ନ କହି ତୁନିହେଲେ । ସ୍ୱାମୀଙ୍କଠାରେ ତାଙ୍କର 'ଉଝଟ' ଏହିଠାରେ ଶେଷହେଲା । ଅନ୍ନପୂର୍ଣ୍ଣା ଆଉ କ'ଣ କହିବାକୁ ଯାଉଥିଲେ, ପାଇକରା କାର୍ଯ୍ୟାନ୍ତରରେ ବ୍ୟସ୍ତ ଥିବାରୁ ଚାଲିଗଲେ । ଉମାର ବାଳବୈଧବ୍ୟ ଏହି ଦମ୍ପତିଙ୍କର ବିଷଣ୍ଣଭାବ ଓ ମନୋମାଳିନ୍ୟର ଗୋଟିଏ ହେତୁ ନୁହେଁ କି ? ତେଣୁ କହିଥିଲୁଁ ମନୁଷ୍ୟ ଅବସ୍ଥାର ଦାସ ।

ଅନ୍ନପୂର୍ଣ୍ଣା କାହିଁକି ଏପରି ଭାବ ଦେଖାଇଲେ ? ସେ କ'ଣ ପଦ୍ମାବତୀଙ୍କୁ ମିଥ୍ୟା କହିଥିଲେ ? ନାହିଁ । ତେବେ ନିଜ ସ୍ୱାମୀଙ୍କୁ ଫେଡ଼ି କହି କାର୍ଯ୍ୟଟି କରିନେଇପାରିଲେ ନାହିଁ କାହିଁକି ? 'ଗଲି ଅଇଲି, ଯା ଦେଖିଲି ତା' କହିଲି'– ଏହି ରୀତିରେ ପଦେ କହିଦେଇ ତୁନି ହେଲେ । ଏହି କି ତାଙ୍କର ସ୍ୱାମୀ ନିକଟରେ ଉଝଟ ? ଏହାର ମୂଳ କଥା ଜାଣିବାକୁ ହେଲେ ପାଠକ-ପାଠିକାମାନଙ୍କର ପାଇକରା ପରିବାରର ଭିତର କଥା ଜାଣିବା ପ୍ରୟୋଜନ । ଭିତର କଥା ଅର୍ଥ ବଂଶର ଛିଦ୍ର ନୁହେଁ, ପରିବାରର ବିବରଣ ।

ପାଇକରା ପରିବାର ହରିଚନ୍ଦନ ପରିବାରଠାରୁ ସମ୍ପୂର୍ଣ୍ଣ ଭିନ୍ନ । ହରିଚନ୍ଦନ ପଦ୍ମାବତୀଙ୍କର ଏକ ଆତ୍ମା । ସେମାନଙ୍କର ଏକ କଥା, ଏକ ମନ, ଏକ କାର୍ଯ୍ୟ । ହରିଚନ୍ଦନଙ୍କ ହୃଦୟରେ ଆଘାତର ତରଙ୍ଗ ଉଠିଲେ, ପଦ୍ମାବତୀଙ୍କର ହୃଦୟରେ ଆଘାତ ହୁଏ । ଉଭୟଙ୍କ ମଧ୍ୟରେ ବୈଦ୍ୟୁତିକ ସମ୍ବାଦ ପ୍ରେରିତ ହୁଏ । ପ୍ରେମରୂପ ତଡ଼ିତ୍‌ର ଦୀର୍ଘକାଳବ୍ୟାପୀ ଘାତ-ପ୍ରତିଘାତରେ ଉଭୟ ମନ, ଆତ୍ମା, ହୃଦୟ ଏକୀଭୂତ ହୋଇଯାଇଅଛି । ପଦ୍ମାବତୀଙ୍କର ନିଜର ହୋଇ କିଛି ମତ ପ୍ରଥମେ ନ ଥିଲା, ଯାହା ସ୍ୱାମୀଙ୍କର ଆଦେଶ ତାହା ତାଙ୍କର ଶିରୋଧାର୍ଯ୍ୟ । ସେ ବିଶ୍ୱସ୍ତ ଭାବରେ ସର୍ବାନ୍ତଃକରଣରେ ଅକ୍ଷରେ ଅକ୍ଷରେ ସ୍ୱାମୀଙ୍କର ଆଦେଶ ପାଳନ କରୁଥିଲେ । ଏହାର ପରିଣାମ ଏହି ହେଲା ଯେ,

ପରିଣତ ଜୀବନରେ ହରିଚନ୍ଦନ ଏକାନ୍ତ ପଦ୍ମାବତୀଙ୍କ ସ୍ନେହାଧୀନ ଆଜ୍ଞାଧୀନ ହୋଇପଡ଼ିଲେ । ଶେଷରେ ପଦ୍ମାବତୀ ହିଁ ଗୃହକର୍ତ୍ତ୍ରୀ ହେଲେ । ହରିଚନ୍ଦନ ସମସ୍ତ ଭାର ତାଙ୍କ ଉପରେ ନ୍ୟସ୍ତ କରିଦେଇ ପଦ୍ମାବତୀଙ୍କ ଇଚ୍ଛାକୁ ନିଜର ଇଚ୍ଛା, ତାଙ୍କର କାର୍ଯ୍ୟକୁ ନିଜର କାର୍ଯ୍ୟ ବୋଲି ମନେକଲେ । ମନେକଲେ କାହିଁକି, କାର୍ଯ୍ୟତଃ ତାହାହିଁ ଥିଲା । ପଦ୍ମାବତୀ ସ୍ୱାମୀଙ୍କ ମଙ୍ଗଳ ଉଦ୍ଦେଶ୍ୟରେ ତାଙ୍କର ଅପ୍ରକାଶିତ ଇଚ୍ଛାର ଅନୁଗାମିନୀ ହୋଇ ତାଙ୍କର ସହଧର୍ମିଣୀ ରୂପେ ସମସ୍ତ କର୍ତ୍ତବ୍ୟ ପାଳନ କରୁଥିଲେ । ସ୍ୱାମୀ ସ୍ତ୍ରୀଙ୍କର ବିରୋଧ, ବିଚ୍ଛେଦ, ବିବାଦ କେହି କେବେ ଶୁଣି ନାହାନ୍ତି । କିନ୍ତୁ ଏହି ଯୋଗ ଦୀର୍ଘ-କାଳବ୍ୟାପୀ ସଂଯତ ତପସ୍ୟାର ଫଳ । ଗୃହସ୍ଥାଶ୍ରମରେ ଏହି ତାପସଯୁଗଳ ଲୋକଲୋଚନର ଅଗୋଚରରେ ଅଜ୍ଞାତସାରରେ ସ୍ୱୀୟ ସହଜ ସ୍ୱଭାବ, ସୁବୁଦ୍ଧି ଓ କର୍ମଫଳଦ୍ୱାରା ପରିଚାଳିତ ହୋଇ ଗୃହସ୍ଥର ଆଦର୍ଶ ଜୀବନ ଲାଭ କରିଥିଲେ । ତେଣୁ ହରିଚନ୍ଦନଙ୍କୁ ନ ପଚାରି ପଦ୍ମାବତୀ ଧନଞ୍ଜୟଙ୍କ ସହିତ କନକଲତାର ବିବାହ ପ୍ରସ୍ତାବ ଅକୁଣ୍ଠିତ-ନିଃଶଙ୍କ ଭାବରେ ଆନୟନ କରିପାରିଥିଲେ । ମାନବ ! ଯେବେ କର୍ତ୍ତୃତ୍ୱ କରିବାକୁ ଇଚ୍ଛାକର, ତେବେ ଦାସତ୍ୱ କରିବାର ଶିକ୍ଷାକର । ଆଜ୍ଞା ପାଳନ କରି ଜାଣିଲେ ଆଜ୍ଞା ପାଳିତ ହୁଏ । ଭଗବାନ୍ କରନ୍ତୁ, ହରିଚନ୍ଦନ ପଦ୍ମାବତୀଙ୍କ ପରି ଦମ୍ପତି ଉତ୍କଳର ଗୃହେ ଗୃହେ ବିରାଜମାନ ହେଉନ୍ତୁ ।

ପକ୍ଷାନ୍ତରରେ ଏହି ଆଦର୍ଶ ଜୀବନର ଅଭାବରେ ଅନ୍ନପୂର୍ଣ୍ଣା ସ୍ନେହଶୀଳା ହୋଇ ମଧ୍ୟ ସ୍ୱାମୀଙ୍କ ଉପରେ ସମ୍ପୂର୍ଣ୍ଣ ଭାର ଦେଇ କହିଥିଲେ, ‘‘ଆମ୍ଭେମାନେ ଯେତେହେଲେ ମାଇପି ଜାତି !’’ ଏହି ଆତ୍ମଗ୍ଳାନିଦ୍ୱାରା ‘ଏବଂବିଧ କାର୍ଯ୍ୟେ ପୁରନ୍ଧ୍ରିଣାଂ ଏବଂ ପ୍ରଗଲ୍‌ଭତା’ ଏହି କବି-ବାଣୀ ସେ ବ୍ୟର୍ଥ କଲେ ଓ ନାରୀର ନ୍ୟାଯ୍ୟ ଓ ଜନନୀର ପ୍ରାପ୍ୟ ଅଧିକାରରୁ ନିଜକୁ ବଞ୍ଚିତା କଲେ । ତାଙ୍କର ବା ବର୍ତ୍ତମାନ କି ଆୟତ୍ତ ଅଛି ? ସେ ବହୁ ପୂର୍ବରୁ ସେ ଅଧିକାର ହରାଇ ବସିଛନ୍ତି । ପାଇକରା ପରିବାରର ସମବେତ ଜୀବନ ତାଙ୍କୁ ସେହିପରି ଗଠିତ କରିଅଛି; କିନ୍ତୁ ଅବଶ୍ୟ ମୂଳରୁ ସେ ମଧ୍ୟ ଦାୟୀ–ଅର୍ଥାତ୍ ତାଙ୍କର ସ୍ୱଭାବ, ଶିକ୍ଷା, ବ୍ୟବହାରରେ ଏହି ପ୍ରକାର ପାରିବାରିକ ଜୀବନର ଗୋଟିଏ କାରଣ ।

ଯୁବତୀ ଅନ୍ନପୂର୍ଣ୍ଣା ଜୀବନ୍ତ-ବସନ୍ତରେ ସ୍ୱାମୀସୁହାଗିନୀ ଥିଲେ–ସ୍ୱାମୀଙ୍କୁ ବଶ କରିବାକୁ ସଦା ଆୟାସବତୀ । ପିଲାଦିନେ ନୀଚ ସ୍ୱଭାବ ସ୍ତ୍ରୀମହଲର

ଗଳ୍ପ-ଗୁଜବରୁ ସେ ଏହି କୁ-ଶିକ୍ଷା ପାଉଥିଲେ । ସ୍ୱାମୀ ଗୋଟିଏ କଥା କହିଲେ ଯୁବତୀ ଅନ୍ୟ ପ୍ରକାର କରନ୍ତି । ଜାଣନ୍ତି ପ୍ରଣୟୀ ସ୍ୱାମୀ ତାଙ୍କୁ କ୍ଷମାଦେବେ । ସ୍ୱାମୀଙ୍କର ଏହି କ୍ଷମା ଓ ସହିଷ୍ଣୁତାରେ ସେ ଗର୍ବ ଅନୁଭବ କରୁଥିଲେ ଏବଂ ବେଳେବେଳେ ତାହା ପ୍ରକାଶ କରୁଥିଲେ । ଏହି ତୁଳାଦଣ୍ଡ ବା ମାପକାଠିରେ ସେ ନିଜ ପ୍ରତି ସ୍ୱାମୀଙ୍କ ସ୍ନେହ, ପ୍ରେମ ଓଜନ ବା ପରିମାପ କରୁଥିଲେ । ରୂପଗର୍ବିତା ସ୍ୱାମୀସୁହାଗିନୀ ଯୁବତୀ ଜାଣିପାରୁ ନ ଥିଲେ, ଏତଦ୍ଦ୍ୱାରା ସେ ସ୍ୱାମୀଙ୍କ ପ୍ରେମଭଣ୍ଡାର ବୃଦ୍ଧି ନ କରି ଶନୈଃ ଶନୈଃ ହ୍ରାସ କରୁଥିଲେ, ପ୍ରଣୟୀଙ୍କର ପ୍ରଣୟଧାରା କ୍ଷିପ୍ର ନ କରି ଧୀର କରାଇଦେଉଥିଲେ । ପରିଣାମରେ ଏପରି ହେଲା ଯେ, ସ୍ୱାମୀ ସ୍ତ୍ରୀ ପରସ୍ପର ବିପରୀତ ପଥବର୍ତ୍ତୀ ହୋଇ ନିଜନିଜକୁ ସୁଖୀ ମଣିଲେ । ଜଣକର ବାଁ ହେଲେ ଅନ୍ୟର ଡାହାଣ, ଜଣକର ହରି ହେଲେ ଅନ୍ୟର ହର । ପ୍ରଥମ ଯୌବନର ଉଦ୍ଦାମ ପ୍ରେମାବେଗ, ରହସ୍ୟମୟ ପ୍ରେମମୋହ କଟିଗଲାରୁ ଦୈନନ୍ଦିନ ଜୀବନର କ୍ଷୁଦ୍ର କ୍ଷୁଦ୍ର ବିଷୟରେ ସେମାନେ ପରସ୍ପର ବିରୋଧୀ ହୋଇଉଠିଲେ । ଉଭୟେ ଭଦ୍ରଘରଜାତ, ଲୋକଲଜ୍ଜା ଓ କୁଳମର୍ଯ୍ୟାଦାଜ୍ଞାନ ଉଭୟଙ୍କର ଥିଲା । ତେଣୁ ସବୁ କାର୍ଯ୍ୟ ଚଳିଗଲା; କିନ୍ତୁ ଉଭୟଙ୍କର ଜୀବନରେ ଗୃହସ୍ଥାଶ୍ରମ ସଫଳ ହେଲା ନାହିଁ– ସେ ଆଦର୍ଶ ଯୋଗ, ସ୍ୱାମୀ ସ୍ତ୍ରୀ ଉଭୟଙ୍କର ମନ, ଜ୍ଞାନ, ଧ୍ୟାନ, ଭାଷା, ଭାବ, କର୍ମର ଯୋଗ ସେମାନଙ୍କ ଜୀବନରେ ସଂସ୍ଥାପିତ ହୋଇପାରିଲା ନାହିଁ । ସେମାନଙ୍କ ହୃଦୟ ମନ ପରସ୍ପର ନିକଟରୁ ନିକଟତର, ନିକଟତମ ନ ହୋଇ ବରଂ ଦୂରତର ହେଲା । ଅଥଚ ସ୍ଥୂଳ ଭାବରେ ବିଚାର କରିବାକୁ ଗଲେ ଉଭୟଙ୍କର ପାରିବାରିକ ଜୀବନ ସଫଳ — ପୁତ୍ର-କନ୍ୟା, ଦାସ-ଦାସୀ, ଧନ-ସମ୍ପଦ ସବୁ ବିଷୟରେ ପାଇକରା ପରିବାର ସମୃଦ୍ଧିବନ୍ତ ।

ଦମ୍ପତିଙ୍କର ପାରିବାରିକ ଜୀବନ ସଙ୍ଗଠନରେ ଏହିପରି ଭ୍ରମ ଦୁର୍ଯୋଗ ବିଧିପ୍ରେରିତ ବା ଦୈବଦୁର୍ବିପାକ ବୋଲିବାକୁ ହେବ । କାରଣ, ଏ ବିଷୟ ଘଟନାକ୍ରମେ ଯାହା ହେବାର ହୋଇଥାଏ । କେହି ଏତେ କଥା ଭାବି ଏ ବିଷୟରେ ଆୟୋଜନ ବା ଯତ୍ନ କରନ୍ତି ନାହିଁ । ପାରିବାରିକ ଜୀବନରେ ଚରିତ୍ର ସଙ୍ଗଠନ ଯେ କି ଗୁରୁତର କାର୍ଯ୍ୟ–ଗୃହ ଯେ ଆଶ୍ରମବିଶେଷ– ଚତୁରାଶ୍ରମ ମଧ୍ୟରେ ଶ୍ରେଷ୍ଠ ଆଶ୍ରମ– ଏହା କେହି ହୃଦୟଙ୍ଗମ କରନ୍ତି ନାହିଁ । ସତ୍ୟ କହିବାକୁ

ଗଲେ, ପୂର୍ବେ କ'ଣ ଥିଲା କେଜାଣି, ଆଧୁନିକ ହିନ୍ଦୁ ସମାଜରେ ପାରିବାରିକ ବ୍ରତ ପାଳନ କରିବା ନିମିତ୍ତ ଶିକ୍ଷା ଦୀକ୍ଷା ଆଦୌ ନାହିଁ କହିଲେ ଚଳେ । ମାତା ମନେକରେ କନ୍ୟା କିପରି ଧନୀ ପରିବାରର ହୋଇ ଧନଧାନ୍ୟବତୀ ଓ ଅଳଂକୃତା ହେବ । ପିତା ମନେକରେ, କନ୍ୟା କିପରି ବିଦ୍ୱାନ୍ ବ୍ୟକ୍ତିର ପାଣିଗ୍ରହଣ କରୁ । ବନ୍ଧୁ କୁଟୁମ୍ବମାନଙ୍କ ମତରେ କନ୍ୟା ସତ୍‌କୁଳନ୍ୟସ୍ତା ହେଲେ ହେଲା । ଇତରଜନମାନେ ମିଷ୍ଟାନ୍ନ ଖାଇ ରୋଶନି ଦେଖି ସନ୍ତୁଷ୍ଟ ହୁଅନ୍ତି । କନ୍ୟା ଘୋର ଅନ୍ଧକାର ମଧ୍ୟରେ ଥାଇ ଭାବୀ-ସ୍ୱାମୀଙ୍କ କାର୍ତ୍ତିକେୟ ତୁଲ୍ୟ ମୂର୍ତ୍ତି କଳ୍ପନା କରି କରି ଶେଷରେ ଯେବେ କୁରୂପ ବା ଅନଭିପ୍ରେତ ସ୍ୱାମୀ ହସ୍ତରେ ପଡ଼େ, ଚିରଜୀବନ ଅଶାନ୍ତି-ବହ୍ନି ହୃଦୟରେ ପ୍ରଜ୍ୱଳିତ କରିରଖେ । ପୁରୁଷ ପକ୍ଷରେ ଅନ୍ୟ ବ୍ୟବସ୍ଥା । ଅବଶ୍ୟ ସେ ଚମ୍ପକଗୋରୀ, ପଦ୍ମପଳାଶାକ୍ଷୀ, ଘନକୃଷ୍ଣ–ଚିକୁର-ଶୋଭିନୀ, ରମ୍ଭା ଉର୍ବଶୀ ପରି ଜଣକୁ କଳ୍ପନା କରିନିଏ । ପାଇଲେ ଭଲ, ନଚେତ୍ ଅନେକ ସ୍ଥଳରେ ତାହାର ଏଥିରେ ଭାବନା କ'ଣ ? ଅବଶ୍ୟ ଯୌବନର ମୋହ କଟିଗଲେ ସ୍ୱାମୀ ସ୍ତ୍ରୀ ଉଭୟେ ପରସ୍ପର ଗୁଣପକ୍ଷପାତୀ ଓ ଚାରିତ୍ର୍ୟମୁଗ୍ଧ ହୁଅନ୍ତି ।

ଯାହାହେଉ ଦୈବଦୁର୍ବିପାକରୁ ହେଉ ବା ଶିକ୍ଷା ଅଭାବରୁ ହେଉ, ପାଇକରା ଦମ୍ପତି ଜୀବନତରଣୀ ସୁପଥରେ ଚାଳିତ କରିପାରି ନାହାନ୍ତି । ସେଥିରେ ତାଙ୍କର ବିଶେଷତ୍ୱ ନାହିଁ । ଶିକ୍ଷାଦୀକ୍ଷା ଅଭାବରେ ହିନ୍ଦୁ ସଂସାର-ସମୁଦ୍ରରେ ବହୁ ତରୁଣୀ ଏହିପରି ଉଦାସୀନ ଭାବରେ ପରିଚାଳିତ କିମ୍ବା ବଂଶରକ୍ଷା ଓ ଜୀବନଯାତ୍ରାର ଗୋଟିଏ ଯନ୍ତ୍ରସ୍ୱରୂପ । ପାଠକପାଠିକା କ୍ଷମା କରିବା ହେବେ– ଏହାକୁ ନିନ୍ଦୁକର କୁତ୍ସା ନ ମଣି ଭାବୀ-ବଂଶଧରମାନଙ୍କ ପ୍ରତି ହିତାକାଙ୍‌କ୍ଷୀ ବୋଲି ଭାବିବେ । ଗୃହକର୍ତ୍ତା ଓ ଗୃହିଣୀଙ୍କ ମଧ୍ୟରେ ହୃଦୟରେ ଏହିପରି ବ୍ୟବଧାନ ଏହି ପରିବାରର ଆଦର୍ଶ ଶାନ୍ତି ସୁଖ ଅଭାବର ହେତୁ । ଏହାଛଡ଼ା ତୁଳସୀଦେଈଙ୍କର ପ୍ରଥମ ଯୌବନରୁ ବୈଧବ୍ୟ ଓ ଏହି ପରିବାରରେ ବାସ, ପୁଣି ତଦୁପରି ଉମାର ବାଲବୈଧବ୍ୟ ଯୋଗୁଁ ପରିବାରଟା ଅତି ସଂଯମ ଓ କଠୋରତାର ସ୍ଥାନ ହୋଇପଡ଼ିଲା । ଜୀବନର ସ୍ଫୂର୍ତ୍ତି, ଜୀବନର ସମ୍ଭୋଗ, ଜୀବନର ନିର୍ଦ୍ଦୋଷ ସୁଖ ପରିବାରଟିରୁ ଅନ୍ତର୍ହିତ ପ୍ରାୟ ହେଲା । ଏହି ଅତି-ସଂଯମ ଓ ଅତ୍ୟଧିକ ନିବୃତ୍ତି ଫଳରେ ପରିବାରଟି ସଂକୀର୍ଣ୍ଣତା

ଓ ରକ୍ଷଣଶୀଳତାର, ଏମନ୍ତ କି ସ୍ୱାର୍ଥପରତାର ଦୁର୍ଭେଦ୍ୟ ଦୁର୍ଗରେ ପରିଣତ ହେଲା । ଯେଉଁ ପରିବାରର ବ୍ୟକ୍ତିମାନଙ୍କ ମଧ୍ୟରେ ପରସ୍ପର ପ୍ରତି ଅନୁକମ୍ପା, କ୍ଷମା, ବାତ୍ସଲ୍ୟ ନାହିଁ, ତାହାର ଅନ୍ୟ ପ୍ରତି ସେସବୁ କିପରି ହେବ ?

ଏ ପ୍ରଭାବରୁ ଦିଓଟି ପ୍ରାଣୀ ରକ୍ଷା ପାଇଥିଲେ । ଧନଞ୍ଜୟଙ୍କ ଜୀବନ ଆଶୈଶବ ପିତୃବ୍ୟ ସଙ୍ଗରେ ବା ବିଦେଶରେ ବୋର୍ଡିଙ୍ଗ୍ ଘରେ ଅନ୍ୟ ପ୍ରକାରେ ଗଠିତ ହେଲା । ତଥାପି ଧନଞ୍ଜୟ ଅତିଗାମ୍ଭୀର୍ଯ୍ୟ ଓ ରକ୍ଷଣଶୀଳତା ହସ୍ତରୁ ଏକାବେଳକେ ରକ୍ଷା ପାଇ ନାହାନ୍ତି । ଉମା ମାତୁଳାଳୟକୁ ଯାଇ ଥରେ ମାତୁଳାଳୟର ସ୍ନେହସୁଧା ପାନକରି ତୁଳସୀ-ପ୍ରଭାବିତ ଏହି କଠୋର ସଂସାରକୁ ବିଷବତ୍ ମଣି ଭୀତ ସଙ୍କୁଚିତ ହୋଇ ଆଉ ଆସିଲା ନାହିଁ । ବିବାହ ପୂର୍ବରୁ କେତେକ ମାସ ଘରେ ଥିଲା । ପୁଣି ବିବାହ ପରେ ଯେତେବେଳେ ଆଉ ତାହାକୁ ମୁଣ୍ଡ ଗୁଞ୍ଜିବାକୁ ସ୍ଥାନ ନ ମିଳିଲା, ଅଗତ୍ୟା ପିତୃଗୃହରେ ଆଶ୍ରୟ ନେଲା । ସୁଖବେଳେ ମାମୁ ଘରେ ସୁଖ ଥାଏ । କପାଳ ପୋଡ଼ିଗଲେ ସବୁ ପିତା ହୋଇଯାଏ । ଏ ଗୃହରେ ତା'ର ମାତା ଅପେକ୍ଷା ତୁଳସୀ ପ୍ରଧାନ । କାରଣ ପିତା ପାଇକରା ତାହାର କଥାକୁ ଅଧିକ ଘେନନ୍ତି । ରକ୍ଷଣଶୀଳ ସମାଜରେ କୁଳପୁରୋହିତଙ୍କଦ୍ୱାରା, ବୈଷ୍ଣବ ଗୁରୁଗୋସେଇଁଦ୍ୱାରା, ଗ୍ରାମର ବୃଦ୍ଧ-ବୃଦ୍ଧା, ବିଧବା ପ୍ରୌଢ଼ାମାନଙ୍କଠାରେ ସର୍ବତ୍ର ତୁଳସୀ ପ୍ରଶଂସିତା । ପରିବାର ଓ ସର୍ବତ୍ର ତାହାର ଅକ୍ଷୁଣ୍ଣ ପ୍ରତିପତ୍ତି ପ୍ରଭାବ ବିଦ୍ୟମାନ । ଏହାର କାରଣ, ତାହାର ନିଷ୍କଳଙ୍କ ଚରିତ୍ର, କଠୋର ବ୍ରହ୍ମଚର୍ଯ୍ୟ, ଏକନିଷ୍ଠ ଦେବଭକ୍ତି, ସେବାପୂଜା ଓ ଦାନ ଦକ୍ଷିଣା । ଏହି କଠୋର ଶାସନରେ ଉମା ଆଶୈଶବ ବର୍ଦ୍ଧିତ ହୋଇଥିଲେ ସେ ଅନ୍ୟପ୍ରକାର ହୋଇଥାନ୍ତା— ବୋଧହୁଏ ଚିରଦୁଃଖିନୀର ପରବର୍ତ୍ତୀ ଜୀବନରେ ଯାହା ଘଟିଲା, ତାହାପକ୍ଷରେ ଏ ଜୀବନ, ଏ ଶାସନ ହିତକର ହୋଇଥାନ୍ତା; କିନ୍ତୁ ଜଗତଟା ଅନ୍ୟ ପ୍ରକାର ସୃଷ୍ଟି ହୋଇଥିଲେ କ'ଣ ହୋଇଥାନ୍ତା କିଏ ଜାଣେ ! ଏତିକି ଜଣାଅଛି, ସେପରି ହୋଇ ନାହିଁ । ଏତେବେଳେ ଉମା ଉମା, ତୁଳସୀ ତୁଳସୀ । ଏକ ଅନ୍ୟର ସମଧର୍ମାକ୍ରାନ୍ତା ହେବା ଅସମ୍ଭବ । ତାହା ଏ ବୟସର କାର୍ଯ୍ୟ ନୁହେଁ । ଶୈଶବ ସେ ଶିକ୍ଷାର ଉପଯୁକ୍ତ କାଳ । କଞ୍ଚା ହାଣ୍ଡିରେ ଯେଉଁ ଦାଗ ଲାଗିଲା, ଯେପରି ଥରେ ଆକାର ଫୁଟିଲା, ହାଣ୍ଡି ଭାଙ୍ଗି ନ ଗଲେ ଆଉ ତାହା ବଦଳିବ ନାହିଁ ।

ହରିଚନ୍ଦନ ପରିବାର ଓ ପାଇକରା ପରିବାର ଏହିପରି ବିଭିନ୍ନ ସରଞ୍ଜାମ ବିଭିନ୍ନ ପ୍ରଣାଳୀରେ ସଂଗଠିତ ହୋଇଅଛି । ତାହାର ଫଳସ୍ୱରୂପ ଦୁଇ ପରିବାରର ବୈଲକ୍ଷଣ ସ୍ପଷ୍ଟ । ହରିଚନ୍ଦନ ପରିବାର ହର୍ଷାଲୋକିତ, ପାଇକରା ପରିବାର ବିଷାଦମଳିନ । ଏକ ଉଦାରତାର ଆଶ୍ରୟଭୂମି, ଅନ୍ୟଟି ରକ୍ଷଣଶୀଳତାର ଦୁର୍ଭେଦ୍ୟ ଦୁର୍ଗ । ଏକ ଜୀବନର ନିର୍ଦ୍ଦୋଷ ଆମୋଦ ପ୍ରମୋଦକୁ ପ୍ରଶ୍ରୟ ଦେଇ ଜୀବନକୁ ସଂପ୍ରସାରିତ, ସରସ, ଉନ୍ମୁକ୍ତ କରିବାର ଉପଯୋଗୀ, ଅନ୍ୟଟି ଅତି ସଂଯମ ଓ ଅଯଥା ବୈରାଗ୍ୟ ଓ ନିବୃତ୍ତିର କଠୋରତାରୂପ ଶୃଙ୍ଖଳରେ ଆବଦ୍ଧ କରି ଜୀବନକୁ ସଂକୀର୍ଣ୍ଣ, ସ୍ୱପ୍ରଧାନ, ସ୍ୱାର୍ଥପର କରିଦେବାର ଉପଯୋଗୀ । ଏକ ରସମୟ ବେଦମନ୍ତ୍ର, ଅନ୍ୟଟି ରହସ୍ୟପୂର୍ଣ୍ଣ ଗୂଢ଼ ଗାରୁଡ଼ିମନ୍ତ୍ର । ଏକ ଜାହ୍ନବୀର ପୁଣ୍ୟ ପୀୟୂଷ, ଅନ୍ୟଟି ଗମ୍ଭୀର ଗଭୀର କୃଷ୍ଣନୀରା ଯମୁନା । ଏକ ସରସ ଫଳପୁଷ୍ପଶୋଭୀ ସୁରମ୍ୟ ଉଦ୍ୟାନ, ଅନ୍ୟଟି ଶୁଷ୍କ ମରୁମୟ ପ୍ରଦେଶ–କେବଳ ଧନଞ୍ଜୟ ଓ ଉମା ତହିଁରେ ଓଏସିସ୍ ।

ଆଶାକରୁଁ ଆମ୍ଭମାନଙ୍କର ଆଖଣ୍ଡଳମଣିଙ୍କ ପବିତ୍ର ବେଢ଼ାମଧ୍ୟସ୍ଥ ବିବାହ ନିର୍ବନ୍ଧର ଅପ୍ରତ୍ୟାଶିତ ଫଳରେ ଦୀର୍ଘ କୈଫିୟତ ଆମ୍ଭମାନଙ୍କ ସ୍ୱଳ୍ପସଂଖ୍ୟକ ପାଠକପାଠିକାମାନଙ୍କଠାରେ ଗୃହୀତ ହେବ । ପାଇକରାୟ "ଆଚ୍ଛା ହେଉ, ଦେବା ନେବା ଠିକ୍ ହେଲେ ଜବାବ୍ ଦିଆଯିବ ।" – ଏହି କଥାରୁ ତାଙ୍କର ବିବାହବିଷୟକ ଆଦର୍ଶ ଜଣାଯାଉଅଛି । ଏକା ପାଇକରା କାହିଁକି, ଭାରତର ସାଧାରଣ ଗୃହସ୍ଥର ଏହାହିଁ ଆଦର୍ଶ । ବରକନ୍ୟାଙ୍କର ପ୍ରଣୟ ଓ ତଦୀୟ ଉପଯୁକ୍ତତା କିମ୍ବା ନିର୍ବନ୍ଧର ଅନ୍ୟାନ୍ୟ ସକଳ ଉପଯୋଗିତା କେବଳ ଏହି ଯୌତୁକ ପିଶାଚର ସର୍ବଗ୍ରାସୀ ପ୍ରଭାବର ଫୁତ୍କାରରେ ଉଡ଼ିଯାଉଅଛି । ପ୍ରାଚୀନ ଓ ନବୀନ, ଅଶିକ୍ଷିତ ଓ ଶିକ୍ଷିତ, ଦରିଦ୍ର ଓ ଧନାଢ଼୍ୟ ପରିବାର ସର୍ବତ୍ର ଏହି ହୃଦୟହୀନ ରାକ୍ଷସର ପ୍ରାଦୁର୍ଭାବ । କୁଳମର୍ଯ୍ୟାଦା ଆଗେ ମାନଦଣ୍ଡ ଥିଲା, ଏବେ ଧନ ବା ଯୌତୁକ ପରିମାଣ ତାହାର ସ୍ଥାନ ଅଧିକାର କରିବସିଅଛି । ହାୟ ଧନଞ୍ଜୟ-କନକଲତା ! ତୁମ୍ଭମାନଙ୍କ ପ୍ରଣୟର ସ୍ଥାନ କେଉଁଠାରେ ! ସମାଜରୂପ ସିଦ୍ଧାଶ୍ରମରୁ ଏହି ତାଡ଼କା ସୁବାହୁଙ୍କୁ ବିନାଶ କରିବାପାଇଁ ବିଶ୍ୱାମିତ୍ର ଓ ରାମ ଲକ୍ଷ୍ମଣ କେଉଁଠାରେ ଅଛନ୍ତି ?



## ଷଷ୍ଠ ପରିଚ୍ଛେଦ

# ମଧ୍ୟସ୍ଥ

ହରିଆ ଚାକର ଗୋରୁମାନଙ୍କୁ ଗୁହାଳୁ ନେଇ ଦାଣ୍ଡରେ ବାନ୍ଧିଲାଣି । 'ଦାଣ୍ଡକୁ ସୁନ୍ଦର ଗୋରୁ, ଘରକୁ ସୁନ୍ଦର ଜୋରୁ ।' ରାଜେନ୍ଦ୍ର କିନ୍ତୁ କହନ୍ତି, ଦାଣ୍ଡରେ ଗୋରୁ ବାନ୍ଧି ତାହାକୁ ଦୁର୍ଗନ୍ଧମୟ ଓ ଅସ୍ୱାସ୍ଥ୍ୟକର କରିବା, ଘର ସାମନାରେ ଗୁହାଳ ଓ ଗୋବରଗଦା କରିବା ଆଦିମ ବର୍ବରତାର ନିଦର୍ଶନ । ସେ ଯାହାହେଉ, ଦାମୁଡ଼ି ଓ ବାଛୁରୀମାନେ ଭାବୀ-ସ୍ୱାମୀଙ୍କର ଉଚ୍ଚ ସମାଜ-ତତ୍ତ୍ୱ ପ୍ରତି ଭ୍ରୂକ୍ଷେପ ନ କରି ପଦାରେ କଅଁଳ ଖରାରେ ଶୋଇଛନ୍ତି । ଗୋଟାଏ ଲମ୍ୱଜାଳ ହୋଇ ପଡ଼ିଛି, ଦେଖିଲେ ମରିପଡ଼ିଲାପରି ଦିଶୁଛି । ଦୁଇଟା କାଉ ଲାଗିଯାଇ ତାହାର ଆଖିକୋଣ, ପିଠି, ଲାଞ୍ଜ, ଗୋଡ଼, ଖୁରା ଖୁମ୍ପି ସାଫ୍ କରିଦେଉଛନ୍ତି । ଗୋରୁଟି ଆରାମରେ ପଡ଼ିଛି । ବିଚରା ଗୋରୁକୁ ତ ଆଉ ଧୋବା ଭଣ୍ଡାରି ଖଟିବେ ନାହିଁ– ଏହି କାଉ ତା'ର ଧୋବା ଭଣ୍ଡାରି ।

ତିହାଡ଼ିଏ ନାସ ଶୁଙ୍ଘୁ ଶୁଙ୍ଘୁ ଆସି ସଂସ୍କୃତ ଶ୍ଳୋକ ଆଉଡ଼େଇଲେ, 'କାକରାବୀ ବକଧ୍ୟାୟୀ ଶ୍ୱାନନିଦ୍ରା ତଥୈବଚ' । ହରିଆ ପଣ୍ଡିତଙ୍କୁ ଓଳଗି ହୋଇ କହିଲା, ''ପଣ୍ଡିତେ ଆପଣେ ! ଏ ଶ୍ଳୋକର ଅର୍ଥ କ'ଣ ?'' ପଣ୍ଡିତେ ତା' ବାପା ପ୍ରତି ଗୋଟାଏ ଖରାପ କଥା ପ୍ରୟୋଗ କରି କହିଲେ, ''ତୁ ବାପୁଡ଼ା, ଶ୍ଳୋକ ଅର୍ଥ କ'ଣ ବୁଝିବୁରେ ? ସ୍ତ୍ରୀ ଶୂଦ୍ରଙ୍କୁ ଶାସ୍ତ୍ର ନିଷେଧ ।'' ରାଜେନ୍ଦ୍ର ଇଂରେଜୀ ପଢୁଆ । ଶୁଣି କହିଲେ, ''ପଣ୍ଡିତେ, ଇଂରେଜମାନେ କ'ଣ ? ସେମାନେ ଶାସ୍ତ୍ର ପଢ଼ିଅଛନ୍ତି ?'' ଏତିକିବେଳେ ହରିଚନ୍ଦନ ସେଠାରେ ସ୍ୱୟଂ ଉପସ୍ଥିତ ହୋଇ ପୁତ୍ର ଆଡ଼କୁ ଟିକିଏ କଟାକ୍ଷ କଲେ । ଉଦ୍ଦେଶ୍ୟ–ବୃଦ୍ଧ ବ୍ରାହ୍ମଣ ସହିତ ତର୍କ ? ପ୍ରକାଶ୍ୟରେ କହିଲେ, ''ତ୍ରିପାଠୀଏ, ଓଳିକି ।'' 'ମଙ୍ଗଳାନି ଭବନ୍ତୁ' କହି ତ୍ରିପାଠୀଏ ଦୁଇ ହାତ ଅଞ୍ଜଳିବଦ୍ଧ କରି ଆଗକୁ ବଢ଼ାଇଦେଲେ । ହରିଚନ୍ଦନେ ହାତ ପତେଇଦିଅନ୍ତେ ପ୍ରସାଦରୂପୀ ନସ୍ୟ ତାଙ୍କ ବାମହସ୍ତ ଉପରେ ଓଜାଡ଼ି ହୋଇପଡ଼ିଲା । ହରିଚନ୍ଦନ ଦକ୍ଷିଣ ହସ୍ତର ବୃଦ୍ଧାଙ୍ଗୁଷ୍ଠ ଓ ମଧ୍ୟମା ସାହାଯ୍ୟରେ

ଟିପେ ନାସ ଗୋଟେଇ ନାକରେ ଗୁଞ୍ଜିଦେଲେ ଓ ଡାଲୁକାକୁ ଉଠାଇନେଲେ । ତତ୍‌ପରେ ବାମହସ୍ତକୁ ଛିଞ୍ଚାଡ଼ିଦେଇ, ବାକି ନାସକୁ ଫୋପାଡ଼ିଦେଇ କହିଲେ, ''ତ୍ରିପାଠୀଏ ! କ'ଣ ହେଲା ?'' ତ୍ରିପାଠୀଏ ଦାନ୍ତବିହୀନ ତୁଣ୍ଡରେ ହସି ହସି କହିଲେ, ''ନିଅନ୍ତୁ ଝିଅର ଜାତକ । ମୋତିଝରି ପାଇକରାଙ୍କ ପୁଅ ବିଷୟରେ ଯାଇଥିଲି । ଜାତକ ପଡ଼ିଛି । ସାବିତ୍ରୀ ସତ୍ୟବାନ୍‌ଙ୍କ ପରି ଯୋଗ ।''

ଅର୍ଦ୍ଧମୂର୍ଖ ଘଟକଙ୍କର ଅଜ୍ଞାତସୂଚକ ବାକ୍ୟ ଶୁଣି ହରିଚନ୍ଦନ ଚମକିପଡ଼ିଲେ । ଯାହାହେଉ ସେ ଯାହା ଶୁଣିଥିଲେ, ଦେଖିଥିଲେ, ସେଥିକୁ ସେ ଚାତକ ପରି ଚାହିଁ ରହିଥିଲେ । ଦଶମେଳକ ଘଟିଥିବାର ଶୁଭସମ୍ବାଦ ପାଇ ସେ ଦୀର୍ଘନିଶ୍ୱାସ ତ୍ୟାଗପୂର୍ବକ 'ନାରାୟଣ' ଶବ୍ଦ ଉଚ୍ଚାରଣ କରି ଅପାର ଆନନ୍ଦ ଅନୁଭବ କଲେ । କହିଲେ, ''ତ୍ରିପାଠୀଏ ! ମୋତେ ରକ୍ଷାକରନ୍ତୁ ।''

ଅଦୂରସ୍ଥ ରାଜେନ୍ଦ୍ର ମନେ ମନେ କହିଲେ– ''ବର୍ତ୍ତମାନ ସମାଜରେ କି ଘୋର ମୂର୍ଖତା ରାଜତ୍ୱ କରୁଅଛି ! ଗୁଣମୁଗ୍‌ଧା ସାବିତ୍ରୀ ତ ସତ୍ୟବାନ୍‌ଙ୍କୁ ସ୍ୱାଧୀନ ଭାବରେ ବରଣ କରିଥିଲେ ! ଦଶମେଳକ କେଉଁଠି ହୋଇଥିଲା ? ଜାତକ କେଉଁଠି ଦେଖାହୋଇଥିଲା ?'' ପୁଣି ଭାବିଲେ, ''କନ୍ୟାଦାୟ ମହାଦାୟ । ରାଜପୁତାନାରେ କନ୍ୟାହତ୍ୟା ପ୍ରଥା ପ୍ରଚଳିତ ଥିଲା, ତାହାର କାରଣ ଏବେ ମଧ୍ୟ ସମାଜରୁ ତିରୋହିତ ହୋଇ ନାହିଁ । ସମାଜରେ ସ୍ୱାଧୀନ ପ୍ରଣୟ ଓ ନିର୍ବାଚନ ପ୍ରଣାଳୀ ପ୍ରବର୍ତ୍ତିତ ନ ହେଲେ ଏ ଦୁରବସ୍ଥା ଘୁଞ୍ଚିବ ନାହିଁ ।''



## ସପ୍ତମ ପରିଚ୍ଛେଦ

‘ଚମ୍ପାଫୁଲଟିଏ ପାଇଲି ବନ-ହଳଦୀ ପ୍ରାଏ
ଶିବ ଦରଶନ କରିବି କାନ୍ତ ଆସିବା ଯାଏ ।’

କନକଲତାର ବିବାହପ୍ରସଙ୍ଗ ପଡ଼ିବାରୁ ସେ ଚୋରଣୀ ପରି ହୋଇ ତାହାର ତରଳ ଏଣୀନୟନ-ଭଙ୍ଗୀକୁ ତରଳତର କଲା । ଶୁଣିବାକୁ ଇଚ୍ଛା ଥାଏ, ଏଣେ ବିଷମ ଲାଜ ଆଉ ସେକଥା କରାଇଦିଏ ନାହିଁ; ଭୟ, କାଳେ କିଏ ଶୁଣିବ ବା ଦେଖିପକାଇବ । ମନେ ମନେ ବିଚାରକଲା–ହେ ମହାପ୍ରଭୁ ! ଏ ଅଭାଗୀର କପାଳରେ କ’ଣ ଚିରଦୁଃଖ ଲେଖିଅଛ ? ମାଉସୀ (ପାଇକରାଙ୍କ ସ୍ତ୍ରୀ ଅନ୍ନପୂର୍ଣ୍ଣା–ପଦ୍ମାବତୀଙ୍କ ମହାପ୍ରସାଦ) ଯାହା କହିଲେ, କଲେ ନାହିଁ କି ? ମା’ଙ୍କ ସାଙ୍ଗରେ ସେଦିନ ଯେଉଁ ତୁନି ତୁନି କଥା ହେଉଥିଲେ, ସେ ମତେ ଲାଗେ, ନିଶ୍ଚେ ସେଇକଥା । ଅଥବା ମୁଁ ଭୁଲବୁଝିଛି, ଆପଣା କଥା ବୋଲି ସେପରି ଲାଗୁଛି । ନା ନା, ସେ ନିଶ୍ଚେ ସେଇକଥା । ତେବେ ତାଙ୍କ କଥା ଶୁଣାଶୁଣି ନାହିଁ କାହିଁକି ? କାହା ସାଙ୍ଗରେ କଥା ପଡ଼ିଛି ? କାହାକୁ ପଚାରିବି ? କିଏ କହିବ ? କେତେ ଜାଗାରୁ ତ ଭଲଲୋକ ଆସୁଛନ୍ତି– କାଳେ ଅନ୍ୟ କେଉଁଠି ଘଟିବ । ମୋର ଦଶା କ’ଣ ହେବ ? ସଂସାର ସଉଦା ଏହିଠାରୁ ସରିବ ସିନା ! ନା, ମା’ କ’ଣ ପାଷାଣୀ ? ସେ କ’ଣ ମୋ ମନକଥା ଜାଣନ୍ତି ନାହିଁ ? ହା ! ମୁଁ ସେଦିନ ଆଖଣ୍ଡଳମଣିଙ୍କ ପାଖକୁ କାହିଁକି ଗଲି ? ନ ଯାଇଥାନ୍ତି ବା କେମିତି– ମା’ କ’ଣ ଛାଡ଼ନ୍ତେ ? ସେଦିନୁଁ ମୋ ମନ ଘୁଣ ଖାଇଲାପରି ଖାଉଛି । ଆଗେ ତ କିଛି ଜାଣିପାରୁ ନ ଥିଲି, ତାଙ୍କୁ ଦେଖିଲାଦିନୁ ମନ ବିକିଲି । ମନଚୋର ମନ ଚୋରି କରିନେଲେ । ମତେ ନିରାଶ କରିବେ ? ଜଳନ୍ତା ଚୁଲିକୁ ପେଲିଦେବେ ? ମୁଁ କ’ଣ ତାଙ୍କୁ ପାଇବି ? ମୋର କି ଧର୍ମବଳ ଅଛି ? ପୁଣି ତାଙ୍କୁ ନ ପାଇଲେ ମୁଁ କ’ଣ ବଞ୍ଚିବି ? ଭାତ ତ ରୁଚୁ ନାହିଁ, ନିଦ ତ ମାଡୁ ନାହିଁ ! ଆଉ ମାଳତୀ, ମରୁଆ ହେରିକାଙ୍କ ସାଙ୍ଗରେ କଉଡ଼ି ଖେଳିବାକୁ, ତାସ ଖେଳିବାକୁ କି ବହି ପଢ଼ିବାକୁ ମନ ହେଉ ନାହିଁ, ଆତ୍ମା ଚାହୁ ନାହିଁ । ମା’ ତ ସବୁବେଳେ କହିଲେ, ‘କନକ ମୋର ରହିଗଲାଣି । କ’ଣ ତା’ର

ହେଲା ?' କାଳେ ମନକଥା ଜାଣିପାରିଥିବେ ! ବଡ଼ ଲାଜ ମାଡୁଛି । ପୁଣି ସେ ନ ଜାଣିଲେ ଆଉ କିଏ ଦୁଃଖ ନେବ ? ବଡ଼ ନୂଆବୋହୂ ଭାରି ସିଆଣିଆ । ସେ ଜାଣିପାରିଛନ୍ତି । ଭାଇଙ୍କ ଆଗରେ କହିବେ ବୋଲି କହୁଥିଲେ । ଛି, ଛି– ଭାଇ କ'ଣ ମନେକରିବେ ! ମୁଁ ନ ମଲି କାହିଁକି ? ବାପା, ଭାଇ ଜାଣି କ'ଣ ମନେକରିବେ ? ତାଙ୍କ ପାଖକୁ ଯିବାକୁ ମୋତେ ଲାଜମାଡୁଛି । ମୁଁ ତ ଚୋରଣୀ ହୋଇଗଲି । ଯାହାଙ୍କ ସକାଶେ ଏତେ କଥା, କେତେ କଅଣ, ତାଙ୍କ ମନରେ ମୁଁ କ'ଣ ଅଛି ? ସେ ବା ମୋ ମନକଥା କିପରି ବୁଝିବେ ? ଚାହାଣିରୁ ମନକଥା ଜଣାପଡ଼େ କି ? ସେ ବା କାହିଁକି ମତେ ପସନ୍ଦ କରିବେ ? ମୋର କି ଗୁଣ ଅଛି ? ସେ କେତେ ପାଠ ପଢ଼ିଛନ୍ତି–ସାନ ଭାଇଙ୍କଠୁ ବେଶି । ସାନଭାଇ ଯେମିତି, ସେ ବି ସେମିତି । ବିବିମାନଙ୍କୁ ପସନ୍ଦ କରୁଥିବେ । ମୋର କି ଦଶା ହେବ ? ଏହିପରି ଭାବୁଭାବୁ ମାଳତୀ, ମରୁଆ, ଚଞ୍ଚଳା ହାତ ଧରାଧରି ହୋଇ ହସି ହସି ପହଞ୍ଚିଲେ । ମାଳତୀ କହିଲା, "ମୁଁ କାନ୍ଦୁଥାଏଁ ନାନୀପାଇଁ, ନାନୀ ଆଖିରେ ଲୁହ ଚୋପାଏ ନାହିଁ ।"

କନକ ନିଦ୍ରୋତ୍ଥିତା ପରି ଚମକିପଡ଼ି ସେମାନଙ୍କୁ ବସାଇ କଥାବାର୍ତ୍ତା କଲା । ମରୁଆ ବଡ଼ ବୁଦ୍ଧିମତୀ । କନକର ମଳିନ ମୁଖ ଦେଖି ତାହାର କିଛି ବୁଝିବାକୁ ବାକି ରହିଲା ନାହିଁ । ମାଳତୀର ବୟସ କିଛି ଊଣା, ସେ ଏତେ କଥା ବୁଝି ନାହିଁ । କହିଲା, "କନକଦେଈ, ଏମିତି କାହିଁକି ବସିଛୁ ? ଚାଲ୍, ଦି' ବାଜି ତାସ ଖେଳିବା ।" ମରୁଆ– "ତାସ କ'ଣ ହେବ ଲୋ– ଖେଳିବ ତ ଦି' ବାଜି ପଶା ଖେଳ ।"

କନକକୁ ଚିତ୍ରପୁତ୍ତଳିବତ୍ ଯେ ଯେଉଁଆଡ଼େ ଚଳାଏ, ସେହିଆଡ଼େ ଚଳେ– ଯେ ଯାହା କହେ କରେ । ଖେଳିବାକୁ ବସିଲା । କନକର ଇଚ୍ଛା, କେହି ତା' ମନକଥା ଜାଣି ନ ପାରୁ । ମରୁଆର ଇଚ୍ଛା, କନକକୁ ଅନ୍ୟମନସ୍କା କରାଇବ । ମାଳତୀର ଇଚ୍ଛା, କିଏ କାହାକୁ ହରାଇବ ସେ ଦେଖିବ, ଆଉ ଖେଳଟା ଭଲକରି ଶିଖିନେବ । ଚଞ୍ଚଳାର ଇଚ୍ଛା, ଖେଳ ସଙ୍ଗେ ସଙ୍ଗେ ମଝିରେ ମଝିରେ ସରସ କଥାବାର୍ତ୍ତା କରି ହସ-ଖୁସିରେ ସମୟଟା କଟାଇନେବ । ବାସ୍ତବରେ ଏ ସଂସାରଟା କି ବିଚିତ୍ର ! କିଏ କି ଉଦ୍ଦେଶ୍ୟରେ ପରିଚାଳିତ ହେଉଛି । ଜଣେ ଯାହାକୁ ଅତି ଆବଶ୍ୟକ କାର୍ଯ୍ୟ ବୋଲି ମଣୁଛି, ଆଉ ଜଣେ ତାକୁ ଅତି

ଅକିଞ୍ଚିତ୍କର କାର୍ଯ୍ୟ ବୋଲି ଭାବୁଛି । କନକଲତାର ମନକଥା କିଏ ବୁଝୁଛି ? 'ବନ ପୋଡ଼ିଗଲେ ସମସ୍ତେ ଜାଣନ୍ତି, ମନ ପୋଡ଼ିଗଲେ କେହି ନ ଜାଣେ ।' ଯୁବତୀମାନେ ବସି ଦୁଇ-ଚାରି ବାଜି ଖେଳିଛନ୍ତି, ପାଟ ଆସି କହିଲା, ''ତମେ ସବୁ ବସି ଖେଳୁଛ କ'ଣ ? ଆଜି ପାଇକରାଙ୍କ ଗାଁରୁ ଭଲଲୋକ ଆସିବେ । ତାଙ୍କର ଚର୍ଚ୍ଚା ହେବ । ମା' କହିଲେ, ତମେମାନେ ପତର କମକରି କାଟ, ନଡ଼ିଆ କୋରା, ପୁରି, ମାଲପୁଆ, କାକରା ଛାଣି ଜଳଖିଆ ସଜିଲକର । ମଝିଆଣୀ ବୋହୂ ସବୁ କରନ୍ତେ–ମଝିଆଁଭାଇ ତ ତାଙ୍କୁ ରଖିଥୋଇଦେଲେ ନାହିଁ । ସେ ବହୁତ ହେବାରୁ ତାଙ୍କ ଦେହ ଭାରୀ । ଆଜି ଯୋଗକୁ ସବୁ ଘଟିଛି । ସାନ ନୂଆବୋହୂ ଯାହା କିଛି କରନ୍ତେ, ତାଙ୍କର ଦେହସ୍ୱଭାବ । ବଡ଼ ନୂଆବୋହୂ ତ ଆଗରୁ ଅଲଗା । ଛି ଲୋ ଛତିଆ, ଶିଖାଶିଖି ହୋଇଛନ୍ତି କି ଅଣଲାଜେଇମାନେ ? ଆଚ୍ଛା ଯୋଗରେ ଏକ ପାଇକରା ଘରୁ ଭଲଲୋକ ଆସୁଛନ୍ତି । ଯୋଗ ପାଗ ସାଙ୍ଗରେ ଘେନି ଆସିଛନ୍ତି ।'' କହୁଁ କହୁଁ କଥା ବନ୍ଦକରି ଜିଭ କାମୁଡ଼ିପକାଇ ହଠାତ୍ କହିଲା, ''ହେଇ ମା' ଆସୁଛନ୍ତି ।''

ଏ କଥା ଶୁଣି ସମସ୍ତେ ଉଠିଲେ । କନକ ବିଚାରୀ ଲାଜରେ ସାଙ୍କୁଡ଼ିଯାଇ କାନ୍ଥ ଆଡ଼କୁ ମୁହଁକରି ଠିଆହେଲା । କି ଆଶ୍ଚର୍ଯ୍ୟ ! ମନ ଯାହା ଏତେ ଦିନ ଲୋଡୁଥିଲା, ଯାହା ଯୋଗୁଁ ଅନ୍ନଜଳ ରୁଚୁ ନ ଥିଲା, ସେହି ଅଭିପ୍ରେତ ମୁହୂର୍ତ୍ତ ନିକଟତର ହେଲାରୁ ହୃଦୟ ଏପରି ଅସ୍ଥିର ହେଉଛି କାହିଁକି ? ଏ ଆନନ୍ଦ ଅତି ତୀବ୍ର । ଏ ମଧୁର ଲଜ୍ଜା ସ୍ୱାଭାବିକ, ସୁନ୍ଦର । ଶିକ୍ଷାଗୁଣରେ ବା ଦୋଷରେ ସମାଜର ଅବସ୍ଥା ଅନୁସାରେ ଏହାର ଅଳ୍ପତା ବା ଆଧିକ୍ୟ ହୋଇଥାଏ । ରାଜେନ୍ଦ୍ର ଏହାକୁ ଦୋଷ ମନେକରନ୍ତି । ଧନଞ୍ଜୟ ଏହାକୁ ଗୁଣ ମନେକରନ୍ତି । ଇଉରୋପରେ ଭ୍ରାତା, ଭଗିନୀ, ଜନକ ଜନନୀଙ୍କ ସମ୍ମୁଖରେ ଯୁବକ ଯୁବତୀଙ୍କର ପ୍ରେମଚର୍ଚ୍ଚାକୁ ମଧ୍ୟ କେହି ଦୋଷ, କେହି ଗୁଣ ମନେକରନ୍ତି । 'ନଈକେ ବାଙ୍କ୍ ଦେଶକେ ଫାଙ୍କ୍ ।' ସତ୍ୟ କେଉଁଠାରେ ? ଉଭୟ ମଧ୍ୟରେ କି ?

ସେମାନେ ଚାଲିଯିବାରୁ ପାଇକରା ଘର ନାଁ ଶୁଣି କନକର ଛାତି ଦୁଲ୍ ଦୁଲ୍ ଉଠିଲା ପଡ଼ିଲା । ସେ ଆଉ ସମ୍ଭାଳି ପାରିଲା ନାହିଁ । ହୃଦୟରୁ କୋହ ଉଠିଲା । କ୍ରନ୍ଦନ ଛଡ଼ା ଆଉ ବିରାମ ନାହିଁ । ଚକ୍ଷୁ ଲୋତକପୂର୍ଣ୍ଣ ହେଲା । କାଳେ କିଏ ଆସି କ୍ରନ୍ଦନର କାରଣ ପଚାରିବ, ଏହି ଆଶଙ୍କାରେ ସେ କୋଠରିର କବାଟ,

ଖିଡ଼ିକି ଲଗାଇଦେଇ ତକିଆରେ ମୁହଁ ମାଡ଼ି ଶୋଇପଡ଼ିଲା । ଦରବିଗଳିତ–ଧାରାରେ ନୟନାଶ୍ରୁ ପ୍ରବାହିତ ହେଲା । ଏ କି ଅଶ୍ରୁ ? ଗଭୀର ଶୋକ ଦୁଃଖରେ ଯେପରି ଅଶ୍ରୁ ବହେ, ଆନନ୍ଦରେ ମଧ୍ୟ ସେହିପରି ବହେ । ଅବିଶ୍ରାନ୍ତ-ଧାରାରେ ଆନନ୍ଦାଶ୍ରୁ ବୁହାଇ କନକଲତା ମନେ ମନେ କହିଲା, ''ହେ ଆଖଣ୍ଡଳମଣି ! ତୁମ୍ଭେ କି ଦାସୀର ମନ ଜାଣି ଏହା କଲ ? ଯେଉଁଦିନ ତୁମରି ଆସ୍ଥାନରେ ତାଙ୍କୁ ଦେଖିଲି, ମନେ ମନେ ତାଙ୍କୁ ବରିଲି । ସେ ଯେତେବେଳେ ମା'ଙ୍କୁ ଦଣ୍ଡବତ କରି ଉଠିଲେ ଓ ତାଙ୍କ ଆଖି ମୋ ଆଖି ସଙ୍ଗରେ ମିଳିଲା, ମନ ପ୍ରାଣ ସବୁ ତାଙ୍କୁ ବିକିଦେଲି । ପୁଣି ଆଉ ଅନାଇ ପାରିଲି ନାହିଁ, ଲାଜରେ ମରିଗଲି । ତେବେ ବି ଏ ପୋଡ଼ା ମନ ତାଙ୍କୁ ଦେଖିବାକୁ ଦଉଡୁଥାଏ । ଆହା, ସେ କି ଅମୂଲ୍ୟ ନିଧି ! ସେହିଦିନୁଁ ତାଙ୍କୁ ହୃଦୟରେ ପୂଜା କରୁଛି । ମୋ ଆଶା କି ସତେ ପୂରିବ ? ମୋ ତୃଷା ମେଣ୍ଟିବ ? ମୁଁ ତାଙ୍କ ପାଦତଳେ ବସିବି ?– ହା କନକଲତେ ! ଆର୍ଜବର ପ୍ରତିମୂର୍ତ୍ତି, ପୁଣ୍ୟପ୍ରତିମା, କାହିଁକି ଏ ଅକୂଳ ସମୁଦ୍ରକୁ ଡେଇଁଲ ? କିପରି ଉଦ୍ଧାର ପାଇବ ?

କିଛି କ୍ଷଣ ପରେ କନକର ଦୁଇ ଭାଉଜ ଓ ସାଆନ୍ତମା' ଆସି କବାଟରେ ଧକ୍କା ମାଇଲେ । ସାଆନ୍ତମା' ପାଟିକରି କହିଲେ, ''କନକଦେଈ, ଏମିତି କାହିଁକି ବସିଛୁ ? ତ୍ରିପାଠୀ ବୁଢ଼ା ତ ଜାତକ ଘେନି ଆସିଲାଣି । ଜାତକ ତ ପଡ଼ିଛି । ଆଜି ତ ଭଲଲୋକ ଆସିବେ, ନିର୍ବନ୍ଧ ହେବ । ଆଉ ତୋର ଭାବନା କଅଣ ? ଅଳ୍ପଦିନେ ଶାଶୂଘରକୁ ଯିବୁ ।''

ଦମୟନ୍ତୀ–ସତେ ଦେଈ ! ଆମକୁ ପାସୋରି ପକାଇବ ନାହିଁ ତ ? ଦେଈ ବର ତ ଭାରି ପାଠୁଆ, ଭାରି ରସିକ, ତାକୁ ପାଇ ଆଉ ଦେଈ ଆମକୁ ମନେକରୁଛନ୍ତି ?

କନକ ଦଉଡ଼ି ଆସି ଦୁଇ ହାତରେ ଦମୟନ୍ତୀଙ୍କ ପାଟି ବୁଜିଧରି ତୁନି ତୁନି କହିଲା, ''ତମକୁ ମୋ ରାଣଟି, ଜଗନ୍ନାଥଙ୍କ ଦୋହି, ତମକୁ ତମ ଭାଇ ରାଣ, ତମେ ଏଡ଼େ ପାଟିକରି ଏସବୁ କଥା କହି ମତେ ଲାଜ ଦିଅ ନାହିଁ । ଭାଇ ଖଞ୍ଜା ଭିତରକୁ ଆସି ଶୁଣିଲେ କ'ଣ କହିବେ ? ଛି, ଛି ! ମୁଁ ମରିଯାନ୍ତି କି ?''

ସାଆନ୍ତମା'– ତୁ ଏବେ ଏତେ ଲାଜ ପୁଟ୍‌ପୁଟ୍ ହେଉଛୁ କାହିଁକି ? ତମ ଘରେ ତ ତୋ ଭାଇ ତମ ନୂଆବୋହୂ ସାଙ୍ଗରେ ଦିନରେ କଥାବାର୍ତ୍ତା

କରନ୍ତି । ତାକୁ ପାଠ ପଢ଼ାନ୍ତି । ମା' ଖୁଡ଼ୀ ସବୁ ପହିଲୁ ପହିଲୁ ସେ ଖଞ୍ଜାରୁ ପଳେଇ ଆସୁଥିଲେ । ଛାଗାକୁ ଛାଗା ସଭା ବସେଇ ନିଶାପ କରୁଥିଲେ । ଏବେ ଦିହ ସହିଗଲାଣି । ସେହି ଖଞ୍ଜାରେ ଖିଆପିଆ ଦିଆନିଆ ଲାଗିଥାଏ । ଭାଇ ଓ ନୂଆବୋହୂ ସେ ଘରେ ବସି କଥାଭାଷା, ହସଖୁସି, ପଢ଼ାଶୁଣା କରୁଥାନ୍ତି । କାଳ ତ ସେହିପରି ହେଲାଣି । ଏବେ ତ କଟକରେ ସବୁ ଗେରସ୍ତ ଭାରିଯା ଯୋଡ଼ି ଯୋଡ଼ି ହୋଇ ହାଉଆ ଖାଉଛନ୍ତି । ତୋ ବର ତ ଇଂରେଜୀପଢୁଆ । ତୋର ଏତେ ଲାଜ କୁଆଡ଼େ ଭାସିଯିବ ଯେ ! ତତେ ତ ସେ ମେମ ସଜେଇ ବଗିରେ ବସେଇ ବଜାରରେ ବୁଲିବ ।

କନକ – ତତେ ତୋ ଭାଇ ରାଣ । ତୁ ତୁନିହୋ । ତାଙ୍କର ବାହାଘର ହେଲାଣି, ସେମାନେ କଥାଭାଷା ହେଲେ ।

ଦମୟନ୍ତୀ– ତମେ ବୁଝିପାରୁ ନାହଁ, କଥା କେତେ ସନ୍ଧିରେ କୁହାହେଉଛି । 'ଆମେ ସବୁ ବାହାହେଲୁଣ୍ଣ, ଆମର କଥାଭାଷା ହେବୁଁ, ସେ ବାହାହେଲେ କଥାଭାଷା ହେବ ନା ! ମଉନମୁହାଁ ଭାରି ଜଣେ ।'

ସାବିତ୍ରୀ– ଯେ ଯେତିକି ଲାଜକୁଳୀ ଥାନ୍ତି, ସେ ପୁଣି ସେତିକି ଅଣଲାଜେଇ ହୁଅନ୍ତି । ବାଇଆଫଳ ଖାଇଲେ କାହାରି କିଛି ଠିକଣା ଠଉର ରହେ ନାହିଁ । ତମେ ଫେର୍ ଦେଖିବ, କନକ ଆମର ଏମିତି ଗେରସ୍ତରଙ୍କୁଣୀ ହେବେ ଯେ ସମସ୍ତଙ୍କୁ ବଳିଯିବେ ।

ସାଆନ୍ତମା'– ଆଜିକାଲି ଆଉ ପୁରୁଣା କଥା ରହୁଛି ? ଶାଶୂ-ଶଶୁର, ଜାଆ-ନଣନ୍ଦ ସମସ୍ତେ ପର । ଆପେ, ଆପଣା ଭାରିଯାଟି, ଆପଣା ପୁଅଝିଅଙ୍କୁ ଘେନି ଘରକରଣା । କେଉଁଠୁ ଆସିଲ, କେମିତି ହେଲ, ଖୋଇପେଇ ବଢ଼େଇଲା କିଏ ! ପରପୁଅ ପରଝିଅ, ଏକାଦିନକେ କ୍ଷୀରନୀର ବାନ୍ଧବ ହେଲ ! ଆପଣା ରକ୍ତ, ଚାତକ ପରି ସେ ଏତେଦିନ ଅନେଇଛନ୍ତି, ସେ କୁଆଡ଼େ ଉଡ଼ିଗଲେ !

'ଝିଅକୁ ମାରି ବୋହୂକୁ ଶିଖାଇବା' ନୀତି ଅବଲମ୍ବନ କରି ସାଆନ୍ତମା' ଏ କଥାଗୁଡ଼ାକ କହିଲେ ।

କିଛିକ୍ଷଣ ପରେ ପାଇକରା ପ୍ରେରିତ ମଧ୍ୟସ୍ଥମାନେ ଆସି ହରିଚନ୍ଦନଙ୍କ ଚୌପାଢ଼ୀ, ବଗିଚା ଆଦି ଦର୍ଶନକରି ପରସ୍ପର ମଧ୍ୟରେ ନାନାପ୍ରକାର ଶ୍ଳୋକ ସ୍ତୁତିର ଆବୃତ୍ତି, ଲୀଳାବତୀସୂତ୍ର ପ୍ରଭୃତି ଗାଣିତିକ ପ୍ରହେଳିକାର ଚର୍ଚ୍ଚା, ମହାନାୟକ ଖଣ୍ଡାୟତମାନଙ୍କର କ୍ଷତ୍ରିୟତ୍ୱ-ପ୍ରତିପାଦକ-ସୂଚକ ମନ୍ୱାଦି

ପୁରାଣରୁ ଦୃଷ୍ଟାନ୍ତ ଉଦ୍ଧାର ପରେ ବିବିଧ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟର ସଦ୍‌ବ୍ୟବହାରପୂର୍ବକ ବିବାହ ପ୍ରସଙ୍ଗରେ କଥାବାର୍ତ୍ତା କଲେ । ସାମନ୍ତ ମର୍ଯ୍ୟାଦା ଇତ୍ୟାଦିରେ କିଛି ଆପତ୍ତି ରହିଲା ନାହିଁ । ଅଳଙ୍କାର, ବାସନ, ଧେନୁ, ଭୂମି ଇତ୍ୟାଦି ବିଷୟରେ ଜବାବ ହୋଇଗଲା । କେବଳ ଗୋଟିଏ ବିଷୟରେ ପ୍ରଧାନ ମଧ୍ୟସ୍ଥ ହରିଚନ୍ଦନଙ୍କୁ ନେପଥ୍ୟରେ ଗୋପନୀୟ ଭାବରେ କିଛି କହିବାରୁ ହରିଚନ୍ଦନଙ୍କ ମୁଖ ଗଭୀର ଚିନ୍ତାରେ ମଳିନ ହେଲା ଏବଂ ସେ ଏ ବିଷୟ ବିବେଚନା କରି ପରେ କହିବେ ବୋଲି କହିଲେ ।

ଇତିମଧ୍ୟରେ ପାଇକରାଙ୍କ ମାତାଙ୍କର ପରଲୋକପ୍ରାପ୍ତି ହେବାରୁ ବିବାହାଦି ଶୁଭକର୍ମାନୁଷ୍ଠାନ ପ୍ରଥମ ସାମ୍ବତ୍ସରିକ ପୂର୍ବରୁ ଅକର୍ତ୍ତବ୍ୟ ବିବେଚିତ ହେବାରୁ ଅଗତ୍ୟା ଏ ଶୁଭାନୁଷ୍ଠାନଟି ଏକ ବର୍ଷ ପର୍ଯ୍ୟନ୍ତ ସ୍ଥଗିତ ରହିଲା । 'ଶ୍ରେୟାଂସି ବହୁ ବିଘ୍ନାନି' ସବୁ କାଳରେ ଅଛି । ରାଜେନ୍ଦ୍ର ହିନ୍ଦୁ ସମାଜର ଏତାଦୃଶ 'କୁସଂସ୍କାର' ବିରୋଧରେ ବହେ ବ୍ୟାଖ୍ୟାନ କଲେ । ସେ କହିଲେ, ''ଜନ୍ମ ମରଣ ତ ସ୍ୱାଭାବିକ ପ୍ରକ୍ରିୟା, ତନ୍ନିମିତ୍ତ ଅନ୍ୟାନ୍ୟ ସାମାଜିକ ଅନୁଷ୍ଠାନରେ ବାଧା ହେବ କାହିଁକି ? ବାର, ତିଥି, ଯୋଗିନୀ ଇତ୍ୟାଦି ଜ୍ୟୋତିଷଶାସ୍ତ୍ରର ଅତ୍ୟାଚାର; ସୂତିକା, ମୃତାହ୍ନିକ କ୍ରିୟାଦି ସାମାଜିକ ବ୍ୟାପାରାଦିର ବିଘ୍ନ ପ୍ରଭୃତି ବହୁ କୁସଂସ୍କାରରେ ସମାଜ ନିଷ୍ପୀଡ଼ିତ ହୋଇଅଛି । ଯାତ୍ରା, କ୍ଷୌରକାର୍ଯ୍ୟାଦିର ବାଧାଦ୍ୱାରା ନାନା ଅସୁବିଧା ହେଉଅଛି । ବିବାହ, ପୁନର୍ବିବାହ, କନ୍ୟା ବିଦାୟାଦି ମାଙ୍ଗଳିକ କାର୍ଯ୍ୟରେ ବିଘ୍ନ ଜାତ ହେଉଅଛି । ପ୍ରକାରାନ୍ତରେ ସ୍ୱାମୀ-ସ୍ତ୍ରୀ ମିଳନ କାର୍ଯ୍ୟରେ ମଧ୍ୟ ସାମାଜିକ କୁପ୍ରଥା ବାଧା ଦେଉଅଛି । ଶିକ୍ଷା ଓ ସଂସ୍କାରଦ୍ୱାରା ଏ କୁପ୍ରଥାଗୁଡ଼ିକ ସମାଜରୁ ବିଦୂରିତ ହେବା ବିହିତ । କିଛିଦିନ ପରେ ସେ ଗୋଟିଏ ପ୍ରସିଦ୍ଧ ସାମୟିକ ପତ୍ରିକାରେ ଗୋଟିଏ ପ୍ରବନ୍ଧ ଲେଖିଲେ । ସେଥିରେ ସେ ପ୍ରତିପାଦନ କରିଥିଲେ ଯେ, ଏପରି କୁପ୍ରଥାମାନଙ୍କଦ୍ୱାରା ହିନ୍ଦୁସମାଜର ଜନସଂଖ୍ୟାର ହ୍ରାସ ହୋଇ କାଳେ ତାହା ଧରାପୃଷ୍ଠରୁ ବିଲୁପ୍ତ ହେବ । କାରଣ, ସାମାଜିକ କୁପ୍ରଥାମାନ ବଂଶବୃଦ୍ଧିକ୍ଷମ ପୁରୁଷ ଓ ସ୍ତ୍ରୀମାନଙ୍କୁ ବିଚ୍ଛିନ୍ନ ରଖି ହିନ୍ଦୁ ସମାଜର ଜନସଂଖ୍ୟାର ହ୍ରାସ କରୁଅଛି । ଚିରବୈଧବ୍ୟଦ୍ୱାରା ବଂଶବୃଦ୍ଧିକ୍ଷମ ଯୁବତିଗଣ ସନ୍ତାନ ଉତ୍ପାଦନରେ ଅକ୍ଷମ । ସ୍ତ୍ରୀମାନଙ୍କର ସ୍ୱାମୀ

ସହ ବିଦେଶଗମନ ନିଷେଧ ବିଧି, ଜ୍ୟୋତିଷଶାସ୍ତ୍ରର ନାନା କଠିନ ନିୟମ ଯୋଗୁଁ ନବବଧୂ ଯାତ୍ରାଦିର ନିଷେଧ ପ୍ରଭୃତି ହିନ୍ଦୁ ସମାଜର କ୍ଷତି କରୁଅଛି ।

ରାଜେନ୍ଦ୍ରଙ୍କର ସମାଜସଂସ୍କାର ପ୍ରବନ୍ଧ, ଧନଞ୍ଜୟ ଓ କନକଲତାର ବିଚ୍ଛେଦବିଷାଦ-କାତର ପ୍ରାଣ, ହରିଚନ୍ଦନ, ପଦ୍ମାବତୀ, ଅନ୍ନପୂର୍ଣ୍ଣାଙ୍କର ଅଧୈର୍ଯ୍ୟପୂର୍ଣ୍ଣ ବିମର୍ଷଭାବ ପ୍ରତି ଭୂକ୍ଷେପ ନ କରି କାଳ ଅତି ମନ୍ଥର ଗତିରେ ଗମନକଲା । ଇତିମଧ୍ୟରେ ସ୍ୱଚ୍ଛଅବଦାତ କୌମୁଦୀସ୍ନାତ ନଭୋମଣ୍ଡଳ ତଳେ କାଶ-କୁସୁମଶୋଭିତା ଶରତସୁନ୍ଦରୀ ଗହଣରେ ମହିଷାସୁର-ଧୂମ୍ରଲୋଚନ-ଚଣ୍ଡ-ମୁଣ୍ଡ-ରକ୍ତବୀର୍ଯ୍ୟ-ଶୁମ୍ଭ ନିଶୁମ୍ଭବିନାଶିନୀ, ସୁରଥ-ସମାଧି-ରାମଚନ୍ଦ୍ରାଦି ଭକ୍ତମନମୋହିନୀ, ସ୍ୱୀୟ ଭକ୍ତମାନଙ୍କୁ ଧର୍ମ-ଅର୍ଥ-କାମ-ମୋକ୍ଷ ଚତୁର୍ବର୍ଗଫଳଦାୟିନୀ, ସିଂହବାହିନୀ ଦୁର୍ଗା ପୁଣି ବର୍ଷକ ପରେ ଆନନ୍ଦକୋଳାହଳ ମଧ୍ୟରେ ଭକ୍ତ-ମାନସ-ହାରିଣୀ ରୂପରେ ଧରଣୀପୃଷ୍ଠରେ ଅବତରଣ କଲେ ।



## ଅଷ୍ଟମ ପରିଚ୍ଛେଦ

ଧନଞ୍ଜୟ ଦଶହରାକୁ ଗ୍ରାମକୁ ଯାଇଅଛନ୍ତି । ରାଜେନ୍ଦ୍ର ସେ ଅଞ୍ଚଳର ଉଚ୍ଚଶିକ୍ଷିତ ଯୁବକ ଧନଞ୍ଜୟ ରାୟଙ୍କୁ ସେ ବର୍ଷ ଗ୍ରାମର 'ମହାନାୟକ ସମିତି'ର ବାର୍ଷିକ ଅଧିବେଶନରେ ସଭାପତି ନିର୍ବାଚନ କରି ନିମନ୍ତ୍ରଣ କଲେ । ଏହି ସଭାରେ ନାନାପ୍ରକାର ପ୍ରାଚୀନ ଅସ୍ତ୍ରକ୍ରୀଡ଼ା, ଗ୍ରାମ ବିଦ୍ୟାଳୟର ବାଳକ-ବାଳିକାମାନଙ୍କ କବିତା ଆବୃତ୍ତି, ଗ୍ରାମ ଥିଏଟରରେ ଅଭିନୟ ପ୍ରଭୃତି ହୋଇ ସର୍ବଶ୍ରେଷ୍ଠ ଖେଳାଳି, ଆବୃତ୍ତିକାରୀ ଓ ଅଭିନେତାମାନଙ୍କୁ ପୁରସ୍କାର ଦିଆଯାଏ । ଏହା ବ୍ୟତୀତ ଗ୍ରାମରେ ଯେବେ କେହି ବର୍ଷକ ମଧ୍ୟରେ ତୀବ୍ର ବିଷଧର ବୃହତ୍ ସର୍ପ, ଉନ୍ମତ୍ତ ଶୃଗାଳ, କୁକୁର ପ୍ରଭୃତି ପ୍ରାଣନାଶକ ଜୀବଜନ୍ତୁ ବା ନିକଟସ୍ଥ ପାହାଡ଼ ବା ବନରୁ ଗ୍ରାମକୁ ଆସିଥିବା ବ୍ୟାଘ୍ର, ଭଲ୍ଲୁକ ପ୍ରଭୃତି ମାରିଥାଏ, ତାହାକୁ ମଧ୍ୟ ଏହି ସଭାରେ ପ୍ରଶଂସାପତ୍ର ବା ପୁରସ୍କାର ପ୍ରଦତ୍ତ ହୁଏ । ଗ୍ରାମ ବିଦ୍ୟାଳୟର କେହି କୌଣସି ପରୀକ୍ଷାରେ ଉଚ୍ଚସ୍ଥାନ ଲାଭ କରିଥିଲେ, କୌଣସି ଭଲ ପୁସ୍ତକ ପ୍ରଣୟନ ବା ପ୍ରବନ୍ଧ ରଚନାକରି କୌଣସି ପତ୍ରିକାରେ ପ୍ରକାଶ କରିଥିଲେ, ସେମାନେ ମଧ୍ୟ ପୁରସ୍କାର ପାଇଥାନ୍ତି । କୌଣସି ତନ୍ତୁବାୟ, କର୍ମକାର, କୁମ୍ଭକାର, ସ୍ଥପତି, ଭାସ୍କର, ମାଲ୍ୟକାର, ବାଣକାର କେହି କୌଣସି ପ୍ରକାର ଭଲ କାର୍ଯ୍ୟ କରିଥିଲେ, ତାହା ଏହି ସଭାରେ ପ୍ରଦର୍ଶିତ ଓ ପୁରସ୍କୃତ ହୁଏ । ଏମନ୍ତ କି ଭଲ ବାଣ ପ୍ରସ୍ତୁତ କରି ସଭା ସମୟରେ ମାରିଥିବାରୁ ବିଦ୍ୟାଧର ଦାସ ତାଙ୍କ ଆବେଦନମତେ ମହାପାତ୍ର ପଦ ଏବଂ ପରମାନନ୍ଦ ସାହୁ ବେପାରୀ ଭଲ ବେପାର କରିଥିଲା ବୋଲି ପ୍ରଶଂସାପତ୍ର ପାଇଥିବାର କିମ୍ବଦନ୍ତୀ ଅଛି । ସଭାରେ ଗ୍ରାମର କଳହ, ବିବାଦ, ମନୋମାଳିନ୍ୟ ଭାଙ୍ଗିବା ନିମିତ୍ତ ଦିନ ସ୍ଥିରହୋଇ ସେସବୁ ମୀମାଂସିତ ହୁଏ । ନିଷ୍ପତ୍ତି ବିଷୟରେ ମତାନ୍ତର ଉପସ୍ଥିତ ହେଲେ ଅଧିକାଂଶ ସଭ୍ୟଙ୍କ ମତଦ୍ୱାରା ବିବାଦ ନିଷ୍ପତ୍ତି ହୁଏ । ଏହି ସଭାର ସଭ୍ୟ ଏଫ୍. ଏ.,ବି.ଏ. କ୍ଲାସର ଛାତ୍ରମାନେ ଭାଙ୍ଗିଯାଉଥିବା ନଈ ବନ୍ଧରେ ନିଜ ନିଜ ମୁଣ୍ଡରେ ମାଟି ବୋହି ପକାଇଥିଲେ । ସଭାଟି ଏହିପରି ଜନପ୍ରିୟ ହୋଇଅଛି ଯେ ପ୍ରତିବର୍ଷ ସହସ୍ର ସହସ୍ର ଦର୍ଶକ ସେଠାରେ ଉପସ୍ଥିତ ହୁଅନ୍ତି । ନାଚ, ସଂକୀର୍ତ୍ତନ, ଖଞ୍ଜଣୀ ଦଳ ପ୍ରଭୃତିର ମଧ୍ୟ

ଏଠାରେ ପ୍ରଦର୍ଶନୀ ହୁଏ । ଏବଂବିଧ ସଭାର ସଭାପତିରୂପେ ଆହୂତ ହୋଇ ଧନଞ୍ଜୟ ରାୟ ଆନନ୍ଦରେ ସମ୍ମତ ହେଲେ । ବିଶେଷତଃ, ମହାଦେବମନ୍ଦିରସ୍ଥ ଘଟନାର ସ୍ମୃତି ଏ ନିମନ୍ତ୍ରଣକୁ ମଧୁମୟ କରିଦେଲା । ସଭାରେ ସେ ବର୍ଷ 'ହରିଶ୍ଚନ୍ଦ୍ର', 'କାଞ୍ଚିକାବେରୀ' ନାଟକଦ୍ୱୟର ଆଂଶିକ ଅଭିନୟ ହୋଇଥିଲା । ଅନ୍ୟାନ୍ୟ ଆବୃତ୍ତି ମଧ୍ୟରେ 'ମହାଯାତ୍ରା'ର ଅମର୍ଷିଙ୍କ ଉତ୍ସାହବାଣୀ, 'ଚିଲିକା'ର ଶେଷ ପଂକ୍ତିଚୟ, ବୈଦେହୀଶବିଳାସ'ର ରାମଚନ୍ଦ୍ରଙ୍କର ଶିବଧନୁଭଙ୍ଗ ଛାନ୍ଦ ଏବଂ କବି ବିଶ୍ୱନାଥଙ୍କ 'ବିଚିତ୍ରରାମାୟଣ'ର ସୀତାଙ୍କର କରୁଣରସୋଦ୍ଦୀପକ ସନ୍ଦେଶ ବାଣୀ, 'କହ ହନୁ ମୋର କାନ୍ତର କୁଶଳ' ଛାନ୍ଦ ଉଲ୍ଲେଖଯୋଗ୍ୟ । ନବରଚିତ ପ୍ରବନ୍ଧ ଓ କବିତାନିଚୟ ମଧ୍ୟରୁ 'ଉତ୍କଳରେ କପାଚାଷ' ଓ 'ଉତ୍କଳରେ ବୌଦ୍ଧ ଧର୍ମର ଅଭ୍ୟୁଦୟ ଓ ଅବସାନ' ପ୍ରଭୃତି କେତୋଟି ପ୍ରଧାନ । ତାହାଛଡ଼ା ଜନୈକ ବାଳିକା ରଚିତ 'ପଦ୍ମାବତୀ ପରିଣୟ' ନାମକ ନିମ୍ନୋକ୍ତ କବିତାଟି ଦୁଇ ଜଣ ବାଳିକା ସମସ୍ୱରରେ ଗାଇଥିଲେ ।

॥ ୧ ॥

କାଞ୍ଚି-ନୃପତି ଉତ୍କଳ-ନୃପେ
କରିଅଛି ଅବମାନନା,
ସମର-ସଜ୍ଜା ଲାଗିଛି ଉତ୍କଳେ
ବାଜୁଛି ଯୁଦ୍ଧ ବାଜଣା ।
ନଗର ନଗର ବୁଲିଣ ଡଗର
କରଇ ସମର ଘୋଷଣା,
ଦୁର୍ଗେ ଦୁର୍ଗେ ଅର୍ପଇ ଦୂତ
ସାମନ୍ତଗଣଙ୍କୁ ଅର୍ଚ୍ଚନା ।
ପଲ୍ଲୀ ପଲ୍ଲୀ ବୁଲିଣ ପ୍ରଧାନ
ହକାରେ ପାଇକବାହିନୀ,
ଡିମ୍ ଡିମ୍ ବାଜେ ଘୋଷଣା ଡିଣ୍ଡିମ
ରକ୍ତେ ନଚାଇ ଧମନୀ ।
କାଞ୍ଚି-ନୃପତି ଉତ୍କଳ-ନୃପେ
କରିଅଛି ଅବମାନନା,
ସମର-ସଜ୍ଜା ଲାଗିଛି ଉତ୍କଳେ
ବାଜୁଛି ସଂଗ୍ରାମ ବାଜଣା ।

॥ ୨ ॥

ଖଣ୍ଡା ଘେନିଣ ଖଣ୍ଡାଏତଗଣ
ଉନ୍ମତ୍ତ ବୀର-ଗୌରବେ,
ଚଣ୍ଡୀ ପୂଜିଣ ବୀରବାମାଗଣ
ହୁଳହୁଳି ଦେଲେ ସରବେ ।
ଅସ୍ତ୍ର-ଝଣ୍ ଝଣ୍ ହସ୍ତୀ-ବୃଂହଣ
ଅଶ୍ୱର ହ୍ରେଷା ଚହଳ,
ଢାଲ, ତରୁଆଲ ନରମୁଣ୍ଡ ମାଳ
ଟପି ଉଡ଼େ ଧୂଳି ପଟଳ ।
ଛତ୍ରି, ତରାସ ଟପି ଧ୍ୱଜାବଳୀ
ଫର୍ଫର୍ ଉଡ଼େ ପବନେ,
'ଜୟ ଜଗନ୍ନାଥ' ଗୁରୁଗର୍ଜନ
ଗ୍ରାସଇ ସିନ୍ଧୁ ଗର୍ଜନେ ।
କାଞ୍ଚି-ନୃପତି ଉତ୍କଳ-ନୃପେ
କରିଅଛି ଅବମାନନା,
କରୁଛି ବାହିନୀ ଯୁଦ୍ଧଯାତ୍ରା
ବାଜୁଛି ସଂଗ୍ରାମ ବାଜଣା ।

॥ ୩ ॥

ଫଉଜ ଝୁଣ୍ଡ କମ୍ପେ ବ୍ରହ୍ମାଣ୍ଡ
ମହାଦର୍ପେ ଯାନ୍ତି ବାହାରି,
ଚତୁରଙ୍ଗ ସେନା ସହ ଉତ୍କଳେଶ
'ଜୟ ଜଗନ୍ନାଥ' ଉଚ୍ଚାରି ।

ଭକ୍ତବତ୍ସଳ ପ୍ରଭୁ ଜଗନ୍ନାଥ
ଲୁଚି ଲୁଚି ସଙ୍ଗେ ଚଳିଲେ ;
ପ୍ରଥମେ ହାରିଲେ ପୁରୁଷୋତ୍ତମ
ଭକ୍ତକୁ ପ୍ରଭୁ ବିଡ଼ିଲେ ।
କାଞ୍ଚି-ନୃପତି ଉତ୍କଳ-ନୃପେ
କରିଥିଲା ଅବମାନନା,
ସମରେ ହରାଇ ଲଜ୍ଜା ସେ ଦେଲା
ନୀରବ ସମର ବାଜଣା ।
'ହେ ପୁରୁଷୋତ୍ତମ ସାହା ହୁଅ ମମ
କାତରେ କରେଁ ମୁଁ ମିନତି,
ମାରେଁ ଅବା ମରେଁ ନାହିଁ ଆନ ରାହା
ମୁଁ ପୁରୁଷୋତ୍ତମ ନୃପତି ।''
ଇଷ୍ଟ ପ୍ରସାଦେ ଫିଙ୍ଗି ବିଷାଦେ
ହୁଙ୍କାରି ସିଂହ ଗର୍ଜନେ,
କାଞ୍ଚି ଫଉଜେ ଉତ୍କଳ ଥାଟ
ପେଷିଲେ ଶମନ ସଦନେ ।
କାଞ୍ଚି-ହରିଣୀ ହରିଣନୟନା
ପଦ୍ମାବତୀ ରାଜକୁମାରୀ,
ବନ୍ଦିନୀ କରି ଓଡ୍ର କେଶରୀ
କହନ୍ତି ମନ୍ତ୍ରୀଙ୍କୁ ହକାରି–
'ଚଣ୍ଡାଳ-କରେ ଚଣ୍ଡୀ ଅରପ
ମେଣ୍ଟ ମୋ ଅବମାନନା,
ଯୋଗେ୍ୟ ଯୋଗ୍ୟା ଯୋଜନ କରାଅ
ଦୂରେ ଯାଉ ଯୁଦ୍ଧଯାତନା ।'
'ଯେ ଆଜ୍ଞା ଶ୍ରୀଛାମୁ' ବୋଲିଣ ମନ୍ତ୍ରୀ
ଚିନ୍ତା-ଭ୍ରୂକୁଟୀ-ଲୋଚନେ,
ସମ୍ଭ୍ରମଭରେ ରାଜସ୍କନ୍ଧାବାରେ
ରଖିଲେ ଢେମାଙ୍କୁ ନିର୍ଜନେ ।

।। ୪ ।।

କାଞ୍ଚି-ନୃପତି ଉତ୍କଳ-ନୃପେ
କରିଥିଲା ଅବମାନନା,
ଯୁଦ୍ଧେ ବିଜୟୀ ଉତ୍କଳ-ସାଇଁ
ପୂରିଅଛି ମନସ୍କାମନା ।
ସ୍ୱର୍ଣ୍ଣ-ମାର୍ଜନୀ ହସ୍ତେ ନୃପତି
କରୁଥିଲେ ଛେରା ପହଁରା,
ପଦ୍ମାବତୀଙ୍କୁ ମନ୍ତ୍ରୀ-ଆଦେଶେ
ଆଣି ଉଭାକଲା ଡଗରା ।
ମନ୍ତ୍ରୀ କହନ୍ତି, 'ଗଜପତି ଆଜ୍ଞା
ଟଳି ନାହିଁ କେବେ ଭୁବନେ,
ହସ୍ତୀର ଦନ୍ତ ଉଲଟି ହସ୍ତୀ
ମୁଖେ ପଶି ନାହିଁ ଯେସନେ ।
ନୃପତି-ନିର୍ଦ୍ଦେଶେ ଚଣ୍ଡାଳବେଶୀ
ନୃପେ କଲି ଢେମା ଅର୍ପଣ'
'ଜୟ ଜଗନ୍ନାଥ' 'ଧନ୍ୟ ହେ ମନ୍ତ୍ରୀ'
ବଡ଼ଦାଣ୍ଡେ ଶୁଭେ ବଚନ ।'
ଚଣ୍ଡାଳ କରେ ଚଣ୍ଡୀ ଅର୍ପିତା
ମେଣ୍ଟିଲା ଅବମାନନା,
ଯୋଗ୍ୟେ ଯୋଗ୍ୟା ହେଲେ ସଂଯୁକ୍ତା
ଦୂରେ ଗଲା ଯୁଦ୍ଧ ଯାତନା ।

ରଚୟିତ୍ରୀର ନାମ ନ ଥିଲେ ମଧ୍ୟ ସଭାରେ ତାହାର ନାମ ଗୁପ୍ତ ରହିଲା ନାହିଁ ଏବଂ ସଭାପତିଙ୍କ ତତ୍‌ସଂକ୍ରାନ୍ତ ଅତି ସଂକ୍ଷିପ୍ତ ମନ୍ତବ୍ୟ ତାଙ୍କର ମନୋଭାବ ଗୋପନ କରିବା ପରିବର୍ତ୍ତରେ ବିଶେଷ ଭାବରେ ପ୍ରକଟିତ କରିଦେଲା । କାରଣ, ସେ ବିଶ୍ୱସ୍ତ ସୂତ୍ରରେ ରଚୟିତ୍ରୀଙ୍କ ନାମ ଜାଣିଥିଲେ । ସଭାପତିଙ୍କୁ ଧନ୍ୟବାଦ ଦେବା ଅବସରରେ ଗ୍ରାମ ବାଳିକା ବିଦ୍ୟାଳୟର ବୃଦ୍ଧ ପଣ୍ଡିତ

ମହାଶୟ କହିପକାଇଲେ, "ଆମ୍ଭେ ସଭାପତି ମହୋଦୟଙ୍କୁ ଆଶୀର୍ବାଦ ଧନ୍ୟବାଦ ଦେଉଅଛୁ; କିନ୍ତୁ ସେ ବାଳିକା କନକଲତା ପ୍ରତି ଯତ୍‌ପରୋନାସ୍ତି ଅନ୍ୟାୟ କରିଅଛନ୍ତି । ଆଜିକାଲି ଇଂରେଜୀ ପଢ଼ି ଏ ଦେଶୀୟ ଶିକ୍ଷିତ ସମ୍ପ୍ରଦାୟ ଯେଉଁ ସନ୍ଦର୍ଭ, କବିତାଦି ରଚନା କରୁଅଛନ୍ତି ତାହା ଆଇସ୍‌ଲ୍ୟାଣ୍ଡ ବା କାମାସ୍କଟକାଦେଶୀୟ ଉତ୍କଟ ଭାବାପନ୍ନ । ଏ ଦେଶର ଜଳବାୟୁ, ସାମାଜିକ, ପାରିବାରିକ, ପୌରାଣିକ ବିଷୟ ବା କିମ୍ବଦନ୍ତୀକୁ ଆଶ୍ରୟ ନ କରି ବିଦେଶୀୟ ଛାଞ୍ଚରେ ଢଳା ହେଉଅଛି; କିନ୍ତୁ ବାଳିକା କନକଲତାର କବିତାଟି ଉତ୍କଳ-ପ୍ରାଣର ପ୍ରିୟତମ ଓ ଗୌରବାବହ କାଞ୍ଚି-ବିଜୟ ବିଷୟକ ଥିବାରୁ ଅତି ସ୍ୱାଭାବିକ ଓ ଏହି 'ମହାନାୟକ ସମିତି'ର ଅତ୍ୟନ୍ତ ଉପଯୋଗୀ ହୋଇଅଛି । ସଭାପତି ମହାଶୟ ତାହାର ପ୍ରଶଂସାରେ କୁଣ୍ଠାପ୍ରଦର୍ଶନପୂର୍ବକ ସ୍ୱଳ୍ପ ମନ୍ତବ୍ୟ ପ୍ରକାଶ କରିଥିବାରୁ ଆମେ ଟିକିଏ ପ୍ରକଟିତ କରିଦେଲୁଁ ।" ରଚୟିତ୍ରୀ ଅତି ସନ୍ତର୍ପଣରେ ସ୍ୱୀୟ ନାମ ଗୋପନ କରିଥିଲେ; କିନ୍ତୁ ପଦ୍ୟଟି ସଙ୍ଗରେ କନକଲତାର ନାମଟି ସଂଶ୍ଳିଷ୍ଟ କରିଦେଇ ସରଳଚିତ୍ତ ପଣ୍ଡିତ ମହାଶ୍ୟୟ ପଦାରେ ହାଣ୍ଡି ଭାଙ୍ଗିଲେ । ଏଥିରେ ସଭାସ୍ଥ ସମସ୍ତେ ହସିପକାଇଲେ ଏବଂ ପଣ୍ଡିତ ମହାଶୟ ସ୍ୱୀୟ ଛାତ୍ରୀର ଗୌରବରେ ନିଜକୁ ଗୌରବାନ୍ୱିତ ମଣିଲେ; କିନ୍ତୁ ନିକଟସ୍ଥ ଗୃହରେ ଥିବା କନକଲତା ବଡ଼ ଲଜ୍ଜିତା ହୋଇ ରମା, ଉମା, ପ୍ରମିଳା, ଉର୍ମିଳା, ଦୁର୍ଗା, ଲବଙ୍ଗଲତା ପ୍ରଭୃତି ସଖୀମାନଙ୍କ ଟଣା ଝିଙ୍କା ଏଡ଼ି ପଳାଇଗଲା । ଆଉ କିଛିଦିନ ପୂର୍ବ ଘଟଣା ହୋଇଥିଲେ ସେ ପଣ୍ଡିତଙ୍କ ନାସଦାନି ଭାଙ୍ଗିଥାନ୍ତା; କିନ୍ତୁ ସେ ସମୟ ଆଉ ତା'ର ନାହିଁ ।

ଧନଞ୍ଜୟ ସଭାର କାର୍ଯ୍ୟ ସାଙ୍ଗକରି ରାଜେନ୍ଦ୍ରଙ୍କ ଗ୍ରାମ ଦେଖିବାକୁ ଗଲେ । ଗ୍ରାମଟିର ସଂସ୍ଥାନ ଅତି ସୁନ୍ଦର । ଦୂର ଦିଗ୍‌ବଳୟ ସୀମାରୁ ନୀଳାୟମାନ ପର୍ବତଶ୍ରେଣୀର ରୁଚିର ଶୋଭା, କଳକଳନାଦିନୀ ଗିରିନଦୀର ମନୋହର ନାଦ, ଦିଗନ୍ତବ୍ୟାପୀ ଈଷତ୍ ପକ୍ୱ ଶସ୍ୟ କେଦାରପନ୍ତି, ପଲ୍ଲୀପଣନ୍ତବତ୍ ଶୋଭମାନ ଗ୍ରାମ ତରୁଲତାକୁଞ୍ଜର ଛାୟା, ଦିଗ୍‌ବଧୂର ମୃଦୁ ନିଃଶ୍ୱାସବାତ ସଦୃଶ ମୃଦୁଳ ପବନ, ଶାରଦୀୟ ଗଗନର ମନୋମୁଗ୍‌ଧକର ଶୋଭା, ସ୍ୱଚ୍ଛୋଦ ସରସୀରେ ପ୍ରସ୍ଫୁଟିତ ସୁରଭି ଶତଦଳ, କୋକନଦର ଉଦ୍‌ଭ୍ରାନ୍ତକାରୀ ବର୍ଣ୍ଣଲାବଣ୍ୟ, ତାହାଠାରୁ ବଳି ସ୍ନାନାକାଙ୍‌କ୍ଷୀ ସ୍ଫୁଟନୋନ୍ମୁଖ ପଦ୍ମସଙ୍କାଶ ଲାବଣ୍ୟମୟୀ ପଲ୍ଲୀସୀମନ୍ତିନୀକୁଳ, ପୁଷ୍କରିଣୀରେ ସନ୍ତରଣକାରୀ

ହଂସ-ମରାଳକାଦମ୍ବକୁଳକୁଳିତ ପଲ୍ଲୀ ପ୍ରକୃତି ଧନଞ୍ଜୟଙ୍କର କଳ୍ପନାପ୍ରଧାନ ମନକୁ କି ଏକ ଅଲୌକିକ ଲୋକ-ଲୋକାନ୍ତର, ଦେଶ-ଦେଶାନ୍ତର, ଯୁଗ-ଯୁଗାନ୍ତରର ସ୍ୱପ୍ନରାଜ୍ୟକୁ ଘେନିଗଲା । ସେ ଜାଣିପାରିଲେ ନାହିଁ ଯେ, ସେ ନିଜ ଗ୍ରାମକୁ ଛାଡ଼ି ଆସି ତାଙ୍କର ପ୍ରିୟବନ୍ଧୁ ରାଜେନ୍ଦ୍ରଙ୍କର ଅତିଥି ହୋଇଅଛନ୍ତି । ତାଙ୍କ ହୃଦୟରେ ଆନନ୍ଦ-ଇନ୍ଦୁ ଶାରଦାକାଶର ପୂର୍ଣ୍ଣେନ୍ଦୁବତ୍ ଉଜ୍ଜ୍ୱଳରୂପେ ସୁଧା ବର୍ଷଣ କଲା । ସେହି ଆକାଶର ଧ୍ରୁବତାରା, ସେହି ମନ୍ଦିର ପ୍ରାଙ୍ଗଣର ପ୍ରଫୁଲ୍ଲ ପ୍ରସୂନ, ବିଷାଦଭାରାବନଲତଲୋଚନା ସେହି ବିଷାଦଭାରାକ୍ରାନ୍ତା କବିତାର ରଚୟିତ୍ରୀ କନକଲତା—ସେ ଦେଖୁ ଦେଖୁ ସମଗ୍ର ହୃଦୟ ମନ ଆକାଶ ପୃଥିବୀ ଦିବାରାତ୍ରି ସମସ୍ତ ଦେଶକାଳକୁ ତନ୍ମୟ ଏକାକାର କରିଦେଲା । ଆକାଶ ନୀଳିମାରେ ଯୁବକ ଧନଞ୍ଜୟ ସେହି ବାଳିକାର ନେତ୍ର ନୀଳିମା ସନ୍ଦର୍ଶନ କଲେ । ସେ ନେତ୍ର ଗାଢ଼ତା, ସୌନ୍ଦର୍ଯ୍ୟ ଓ ସଂସ୍ଥିତିରେ ଅନନ୍ତ ଆକାଶକୁ ଅତିକ୍ରମ କଲା । ହାୟ ବିଧି ! ତୁମ୍ଭ ସୃଷ୍ଟିର ଏ କି ଲୀଳା । ହେ ଲୀଳାମୟ ! ବଡ଼ କିଏ, ସାନ କିଏ ? ଧନଞ୍ଜୟ ଚତୁର୍ଦ୍ଦିଗବ୍ୟାପୀ ଅନନ୍ତ ଆକାଶକୁ ଏଡ଼ିପାରନ୍ତି; କିନ୍ତୁ ସେହି ଗଭୀର ନୀଳ ନିର୍ମଳ ଯମୁନା ଜଳବତ୍ ଢଳଢଳ ସେହି ନୟନ ଯୁଗଳକୁ ଏଡ଼ିପାରିବାର ଶକ୍ତି ତାଙ୍କର କାହିଁ ? ଉଜ୍ଜ୍ୱଳ ଶରଦିନ୍ଦୁବିଭାରେ ସେ ସେହି କମନୀୟ ଚମ୍ପକଗୌରୀ, ପଦ୍ମପଲାଶନେତ୍ରୀ ସୁନ୍ଦରୀର ଅଙ୍ଗଶୋଭା ଦର୍ଶନ କରନ୍ତି । ରକ୍ତପଦ୍ମ ଓ କୋକନଦରେ ଓ ତାହାରି ବିମ୍ବାଧର, ଶୁକ୍ଳ କାଶକୁସୁମର ମଧୁର ହିଲ୍ଲୋଳରେ ଓ ହଂସପନ୍ତିରେ ଶୁଭ ଅବଦାତ କଳ୍ପିତ ହାସ୍ୟ କ୍ରୀଡ଼ା, ସୁକଣ୍ଠ ମନୋରମ ସଙ୍ଗୀତରେ ତାହାରି କଣ୍ଠସ୍ୱର, ସୁରଭି କୁସୁମରେ ତାହାରି ସୁରଭି ନିଃଶ୍ୱାସ ଅନୁଭବ କଲେ । ଭିତରେ ଭଗିନୀକୁ ଲକ୍ଷ୍ୟ କରି, ବାହାରେ ଭ୍ରାତାକୁ ପ୍ରଶଂସା କରି କହିଲେ, ‘‘ଏପରି ସୁନ୍ଦର ପ୍ରକୃତି କବିଜନନୀ ହେବା ସ୍ୱାଭାବିକ ।’’ ମନର ଭାବ ମନରେ ଗୋପନ କରିବାକୁ ଚେଷ୍ଟାକରି ଚତୁର ଧନଞ୍ଜୟ ଚତୁରତର ରାଜେନ୍ଦ୍ରଙ୍କର ଗୁପ୍ତ ଉପହାସର ବିଷୟୀଭୂତ ହେଲେ । ‘‘ହେ ରାଜେନ୍ଦ୍ର ! ପ୍ରେମ ଏକ ମନୋହର ଫାସିଆରା । ତୁମ୍ଭର ଦିନ ଆସୁଚି । ପ୍ରବାଦ ଅଛି, ତଳ ବରଡ଼ା ଖସୁଛି, ଉପର ବରଡ଼ା ହସୁଛି, ମଝି ବରଡ଼ା ଥାଇ କହୁଛି ମୋ ଦିନକାଳ ଆସୁଛି ।’’ ଯାହାହେଉ ଧନଞ୍ଜୟ ବିଷାଦମୟ ଆନନ୍ଦରେ ରାଜେନ୍ଦ୍ରଙ୍କ ଗ୍ରାମରେ ଦିବସଚତୁଷ୍ଟୟ ଅବସ୍ଥାନାନ୍ତର ସ୍ୱଗ୍ରାମକୁ ବାହୁଡ଼ିଗଲେ । ଯିବାବେଳେ ତାଙ୍କର ମନ ଓ ଶରୀରର ଯୁଗ୍ମତା ସ୍ପଷ୍ଟରୂପେ ପ୍ରତିପାଦିତ ହେଲା ।

ଧନଞ୍ଜୟ ମନେକଲେ, ରାଜେନ୍ଦ୍ର ଯେପରି ମନୋବୃତ୍ତି ମଧ୍ୟରେ ବୁଦ୍ଧି ଏବଂ କନକଲତା ଯେପରି କୋମଳ ଭାବବୃତ୍ତି; ରାଜେନ୍ଦ୍ର ବ୍ରହ୍ମପୁତ୍ର, କନକଲତା ପତିତପାବନୀ ଗଙ୍ଗା; ରାଜେନ୍ଦ୍ର ମରୀଚିମାଳୀ ସୂର୍ଯ୍ୟରଶ୍ମି, କନକଲତା ଶରଦିନ୍ଦୁର କୌମୁଦୀବିଭା । ରାଜେନ୍ଦ୍ର-କନକଙ୍କ ଜନନୀ ରତ୍ନଗର୍ଭା । ଆହା ! ଜନନୀଙ୍କର କି ସ୍ନେହ ମମତା, କି ଉଦାର ସରଳ ହୃଦୟ ! ଏ ବଂଶର ସମସ୍ତେ ସୁନ୍ଦର, ସୌଷ୍ଠବାନ୍ୱିତ । ଯେଉଁମାନେ ବିପଥଗାମୀ, ସେମାନେ ମଧ୍ୟ ଧନଞ୍ଜୟଙ୍କୁ ଅତିମାତ୍ରାରେ ଜୀବନୀଶକ୍ତିଶାଳୀ ବୋଲି ବୋଧହେଲେ । ପରିବାରର ଶିଶୁଗୁଡ଼ିକ ଯେପରି ପ୍ରସ୍ଫୁଟିତ ପୁଷ୍ପ, ଜୀବନ୍ତ ସ୍ନେହଶୀଳ, ସୁନ୍ଦର ବିଶ୍ୱସ୍ରଷ୍ଟାଙ୍କର ଅପରୂପ ସୃଷ୍ଟି । ହେ ଧନଞ୍ଜୟ ! ଜଣକ ଲାଗି ସିନା ତୁମ୍ଭେ ସମସ୍ତଙ୍କୁ ସୁନ୍ଦର ମଣୁଅଛ, ନୋହିଲେ ଅନ୍ୟ ପରିବାରରେ କେହି ସେହିପରି ନର ନାରୀ ଶିଶୁ ନାହାନ୍ତି ? ଯାହାହେଉ ଧନଞ୍ଜୟ ଏହି ପରିବାରଟିର ବିକଶିତ ସହସ୍ର ମୂର୍ତ୍ତି ସଙ୍ଗରେ ନିଜ ପରିବାରର ବୈରାଗ୍ୟ-ନିୟନ୍ତ୍ରିତ କଠୋର ସଂଯତ ମୂର୍ତ୍ତିଟି ତୁଳନାକରି କୌତୂହଳ ଓ ବିସ୍ମୟରେ ବିହ୍ୱଳହେଲେ । ଧନଞ୍ଜୟଙ୍କ ପ୍ରକୃତି କେବଳ ସ୍ୱୀୟ ପୈତୃକ ଆବହାଉଆରେ ଗଠିତ ନୁହେଁ, ସେ ଦେଶ-ବିଦେଶରେ ଭ୍ରମଣକରି ପ୍ରାଚୀନ ଓ ନବୀନ, ସ୍ୱଦେଶୀୟ ଓ ବିଦେଶୀୟ ଗ୍ରନ୍ଥମାନ ପାଠକରି ଏକ ଅଭିନବ ଜୀବନ ଓ ପ୍ରକୃତି ଲାଭ କରିଅଛନ୍ତି । ସୁତରାଂ ନିଜ ପାରିବାରିକ ପ୍ରକୃତିର ସମାଲୋଚନା କରିବାର ଶକ୍ତି ତାଙ୍କର ଜାଗ୍ରତ ହୋଇଅଛି । ସେ ମନେକଲେ, ଯେପରି ହରିଚନ୍ଦନଙ୍କ ପରିବାର ପ୍ରଫୁଲ୍ଲ ପଦ୍ମପୁଷ୍କରିଣୀ ଓ ତଦୀୟ ସ୍ୱୀୟ ପରିବାର ଗୋଟିଏ ତୁଳସୀ କୁଞ୍ଜ । କେହି କାହାରିକୁ ଊଣା ନୁହନ୍ତି ।

ଆହୁରି ଗୋଟିଏ କଥା ଧନଞ୍ଜୟ ଦେଖିଯାଇଥିଲେ, ତାହା ହରିଚନ୍ଦନଙ୍କ ଘରର ଚକଡ଼ା । ଏହାର ପରିମାଣଫଳ ବାଇଶ ମାଣ ବାଇଶ ଗୁଣ୍ଠ ବାଇଶ ବିଶ୍ୱା ବୋଲି ଶୁଣିଲେ । ତଳ ଉପର ହୋଇ ତିନ ଖଞ୍ଜା । ପ୍ରତି ସାହାଲାରେ ପାଞ୍ଚବଖୁରିଆ ଘର ଚାରିଟା ଲେଖାଏଁ–ତେଣୁ ମୋଟରେ ବାର ଖଞ୍ଜା କୁହାଯାଇପାରେ । ଘରଗୁଡ଼ିକ ଦକ୍ଷିଣଦ୍ୱାରୀ ହୋଇ ଧାଡ଼ି ଧାଡ଼ି ତୋଳା । ମଧ୍ୟସ୍ଥ ପ୍ରାଙ୍ଗଣଗୁଡ଼ିକ ପ୍ରଶସ୍ତ, ସୂର୍ଯ୍ୟାଲୋକ ଓ ବାୟୁସଞ୍ଚାଳନର ଅନୁକୂଳ । ପୂର୍ବ-ପଶ୍ଚିମରେ ପାଚେରି । କେଉଁ କେଉଁ ଖଞ୍ଜାରେ ଧାଉଡ଼ି ଟୁଙ୍ଗୀ ଅଛି । ଦକ୍ଷିଣ ସାହାଲାଟି ପକ୍‌କା ପଥର କୋଠା, ସ୍ୱୟଂ ହରିଚନ୍ଦନ, ତତ୍‌ପୁତ୍ରଗଣ ଓ

କୁଣିଆ ମୈତ୍ରଙ୍କ ଭିତର ଓ ବାହାର ବୈଠକଖାନା ନିମିତ୍ତ ବିଭିନ୍ନ କୋଠରିରେ ବିଭକ୍ତ । ଏହିସବୁ ଘରେ ଖଟ, ମେଜ, କେତେକ ଖଣ୍ଡ ଚୌକି ଓ ବେଞ୍ଚ ପଡ଼ିଅଛି । ବନ୍ଧୁବାନ୍ଧବଙ୍କ ବିଶ୍ରାମ ନିମିତ୍ତ ମଶାରି ବିଛଣା ପ୍ରଭୃତି ସର୍ବଦା ପ୍ରସ୍ତୁତ । ଏହି ଘରର ଉତ୍ତରକୁ ଦୁଇଧାଡ଼ି ପାଞ୍ଚବଖୁରିଆ ପାଞ୍ଚଶେଣିଆ ଧୂଳିଆଘର । ଖଞ୍ଜାର ପୂର୍ବଧାଉଡ଼ିରେ ଭାଗବତଗାଦି ଗୋସାଇଁଙ୍କ ଟୁଙ୍ଗୀ । ତତ୍‌ସଂଲଗ୍ନ ଦିଓଟି କୋଠରି ଠାକୁରଙ୍କ ରୋଷେଇଘର ଓ ମାଲଖାନାଘର । ଭଣ୍ଡାରଘରେ ଠାକୁରଙ୍କର ଛତ୍ରୀତରାସ, ଆଢ଼େଣୀ ପ୍ରଭୃତି ରଖାହୋଇଥାଏ । ଛଦୋଳକୁ ଠାକୁର ବାହାରିଲେ ଏଗୁଡ଼ିକ ବାହାରେ । ଝାଞ୍ଜ, ମୃଦଙ୍ଗ ପ୍ରଭୃତି ଏହି ଘରେ ଥାଏ । ପୂର୍ଣ୍ଣିମା, ଅମାବାସ୍ୟା ବା ସଂକ୍ରାନ୍ତି ପ୍ରଭୃତି ପର୍ବପର୍ବାଣିରେ କେବେ କେବେ ଆସି ଭାଗବତ ଘରେ ବଜାହୁଏ । ଏହାର ଉତ୍ତରକୁ ଯେଉଁ ଦୁଇ ଖଞ୍ଜା ଘର ତଳ ଉପରକୁ ଅଛି, ସେସବୁ ଶୟନାଗାର । ଧାନ କୋଠି ବା ଅମାରରେ ରହେ । ଚାଉଳ ଓଳିଆ, ବିହନ ରବିରସାଣ କୋଠି ପାଖ ଘରେ ରହେ । ଭାରଥୋର ଯାହା ଆସେ, ପରିବାପତ୍ର ଜିନିଷାଦି ସେହି ମାଲଖାନା ଘରମାନଙ୍କରେ ରହେ । ଚାବି ବୋହୂ ପୁଅମାନଙ୍କ ପାଖରେ ଦାୟିତ୍ୱଜ୍ଞାନ, ଶ୍ରମବିଭାଗ ଓ ଯୋଗ୍ୟତା ବିବେଚନାରେ ରହେ । ପୁତ୍ରମାନଙ୍କୁ ଆତ୍ମନିର୍ଭରଶୀଳତା ଶିକ୍ଷାଦେବା ଉଦ୍ଦେଶ୍ୟରେ ହରିଚନ୍ଦନ କଲେଜ ଛାତ୍ର ରାଜେନ୍ଦ୍ର ଛଡ଼ା ଅନ୍ୟ ପୁତ୍ରଦ୍ୱୟଙ୍କୁ ମୂଳଧନ ଦେଇ ବିଭିନ୍ନ ବ୍ୟବସାୟ ଅବଲମ୍ବନରେ ତାହା ବୃଦ୍ଧି କରିବାକୁ ସୁବିଧା ପ୍ରଦାନ କରିଥାନ୍ତି । ସୁନ୍ଦର ବନ୍ଦୋବସ୍ତ ଯୋଗେ କାର୍ଯ୍ୟ କଳପରି ଚଳେ । ସାଧାରଣ ହିସାବରେ ଯେ ଯେତେ କାର୍ଯ୍ୟ କରନ୍ତି, ପରିଶ୍ରମ ବୁଦ୍ଧି ବିଚକ୍ଷଣତା ତୁଳନାରେ ପୁରସ୍କାର ବା ବେତନ ଯାହା କହ, ପାଆନ୍ତି । ପୁଅମାନଙ୍କ କାର୍ଯ୍ୟରେ ସାଆନ୍ତ ନିଜେ ଓ ବୋହୂମାନଙ୍କ କାର୍ଯ୍ୟରେ ସାଆନ୍ତାଣୀ ଉପଦେଶ ଦାନ ଓ ତତ୍ତ୍ୱାବଧାନରେ ସାହାଯ୍ୟ କରନ୍ତି । ମାସ ଶେଷକୁ ସବୁ ହିସାବ ସମସ୍ତେ ଥାଇ ବୁଝାଯାଏ । ଗୁମାସ୍ତା ହିସାବ ଲେଖନ୍ତି । ପ୍ରତି ସନ୍ଧ୍ୟାରେ ଭାଗବତ, ରାମାୟଣ ବା ମହାଭାରତ ପାଳିରେ ବୋଲାହୁଏ । ପୁରସ୍ତ୍ରୀମାନେ ଆସି ଅମାର ପା'ଭାଗରେ ବସନ୍ତି । ପୁରୁଷମାନେ କେହି ମେଲାରେ, କେହି ଭାଗବତଘରେ ବା ପିଣ୍ଡାରେ ବସନ୍ତି ଏବଂ ଭଲ ଭଲ ଗଣ୍ଡିସ୍ଥଳମାନଙ୍କରେ ଦୁଆ ଧରି ତିନି-ଚାରିଥର ଆବୃତ୍ତି କରନ୍ତି । ଯେମନ୍ତେ–

ପ୍ରଥମରେ–

ନାରାୟଣଂ ନମସ୍କୃତ୍ୟ ନରଂଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ।
ମୂକଂ କରୋତି ବାଚାଳଂ ପଙ୍ଗୁଂ ଲଙ୍ଘୟତେ ଗିରିଂ
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ।

ପରମାନନ୍ଦ ହେ ମାଧବ । ପୂରିରହିଛ ସର୍ବ ଜୀବ ।।
ଗୋବିନ୍ଦ ଗୋବିନ୍ଦ ଗୋସାଇଁ । ତୋ ବିନୁଁ ଅନ୍ୟ ଗତି ନାହିଁ ।।
ଗୋବିନ୍ଦ ଗୋବିନ୍ଦ ଗୋବିନ୍ଦ । ପଦୁଁ ଗଳୁଛି ମକରନ୍ଦ ।।
ସେ ମକରନ୍ଦ କରି ପାନ । ହେଲେ ତରିଲେ ସାଧୁଜନ ।।
ସେ ସାଧୁଜନଙ୍କ ପୟରେ । ମନ ମୋ ରହୁ ନିରନ୍ତରେ ।।
ମନ ମୋ ନିରନ୍ତରେ ଥାଉ । ହା କୃଷ୍ଣ ବୋଲି ଜୀବ ଯାଉ ।।

ମଧ୍ୟରେ–

ଏ ଦେହ ଥିଲେ ସର୍ବ ପାଇ । ଜଳେ ଯେସନ ଚନ୍ଦ୍ରଛାଇ ।।
ତୁ କୃପା କଲେ ନରହରି । ପଙ୍ଗୁହିଁ ଲଙ୍ଘିପାରେ ଗିରି ।।
ଆତ୍ମାକୁଶଳେ ସର୍ବସିଦ୍ଧି । ତରନ୍ତି ସଂସାର-ଜଳଧି ।।
ଯେ ପକ୍ଷୀ ଉଡ଼େ ଯେତେ ଦୂର । ସେ ଜାଣେ ତାହାର ବେଭାର ।।
ପ୍ରାଣୀର ଭଲମନ୍ଦ ବାଣୀ । ମରଣକାଳେ ତାହା ଜାଣି ।।
ତୋହର ମନ ତୋତେ ଗୁରୁ । ଉଦ୍ଧବ କେତେହେଁ ପଚାରୁ ।।

ଏବଂ ଶେଷରେ–

ସମସ୍ତେ ବୋଲ ହରି ହରି । ହରି କରିବେ ଭବୁଁ ପାରି ।।
ହରି କରିବେ ଭବୁ ପାର । ନାଶିବେ ଅବନୀର ଭାର ।।

ଏହିପରି ଗୀତ ହେଉଥିବାବେଳେ ରାଜେନ୍ଦ୍ର ଧନଞ୍ଜୟଙ୍କୁ କହିଲେ, ''ଏ ବିଲୁଆ ଧର୍ମ । ଗୋଟିଏ ବିଲୁଆ କହିଉଠେ, 'ହୁକେ ହୋ'– ସମସ୍ତେ ସେଇଆ କରନ୍ତି ।' ଧନଞ୍ଜୟ କିନ୍ତୁ କହିଲେ, 'ରାଜେନ୍ଦ୍ର, ତୁମର ଏପରି କହିବା

ଉଚିତ ନୁହେଁ । ପରସ୍ପର ମଧ୍ୟରେ ଗୋଟାଏ ଭାବ ଜାଗ୍ରତ ହେବାବେଳେ ସମସ୍ତେ ସମସ୍ୱରରେ ଗାଇଉଠନ୍ତି । ଭଗବାନ୍ କହିଛନ୍ତି 'ନାହଂ ତିଷ୍ଠାମି ବୈକୁଣ୍ଠେ, ଯୋଗିନାଂ ହୃଦୟେ ନ ଚ, ମଦ୍‌ଭକ୍ତାଃ ଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ନାରଦ ।' Esprit de crops ବା sympathy of numbers ଗୋଟିଏ ବଡ଼ ଜିନିଷ । ତଦ୍ୱାରା centre of force ବା କେନ୍ଦ୍ରୀଭୂତ ଶକ୍ତି ଜାତହୁଏ । ବ୍ରାହ୍ମ ଓ ଖ୍ରୀଷ୍ଟିୟାନମାନେ ମଧ୍ୟ ଏହିପରି କରନ୍ତି । ସେମାନଙ୍କୁ ବିଲୁଆଧର୍ମୀ କହିବାର ସାହସ ଅଛି କି ?''

ସଦର ଦରଜାର ଡାହାଣ ପାଖକୁ ଦାଣ୍ଡରେ ଗୋଟିଏ ପଥର ଚଉରା ଅଛି । ତାହାର ଚାରିପାଖରେ ପଥର ଚଉତରା । ଏଠାରେ ପ୍ରତ୍ୟହ ଉଖୁଡ଼ା କଦଳୀ ଭୋଗ ଦିଆଯାଏ । ପ୍ରତି ସଂକ୍ରାନ୍ତିରେ ଘିଅ ପୋଡ଼ାଯାଏ । ପ୍ରତି ସନ୍ଧ୍ୟାରେ କନକ ସଂଜବତି ଜାଳି ଓଳଗିହୁଏ । ମନରେ କ'ଣ ବାଞ୍ଛା କରେ କିଏ ଜାଣେ ?

ଦାଣ୍ଡ ପୂର୍ବପାଖକୁ କଚେରିଘର ଓ ପଶ୍ଚିମ ପାଖକୁ ଚାକରମାନଙ୍କର ଶୋଇବାଘର । ଦକ୍ଷିଣଟି ମେଲା । ଏହି ପ୍ରଶସ୍ତ ମେଲା ଦାଣ୍ଡର ଆଗ୍ନେୟକୋଣକୁ ଗୋଟିଏ ସାତଶେଣିଆ ଧୂଳିଆ ପ୍ରକାଣ୍ଡ ଖୋଲା ନାଟମନ୍ଦିର ଅଛି । ଦୋଳ, ଦଶହରା, ସୁନିଆଁ, ଗହ୍ମା ଓ ପୁଷ୍ୟାଭିଷେକ ପ୍ରଭୃତି ଯାନିଯାତ୍ରାରେ ମନ୍ଦିରଟି ଚନ୍ଦ୍ରାତପଶୋଭିତ ହୋଇ ନୃତ୍ୟ-ବାଦ୍ୟାଦିରେ ପ୍ରତିଧ୍ୱନିତ ହୁଏ । ଗ୍ରାମର ରାସ୍ତା ଦକ୍ଷିଣରେ ଚାଲିଯାଇଅଛି । ଏହି ରାସ୍ତା ଉପରେ ଘନ ନିବିଡ଼ ପଲ୍ଲବ ଛାୟାପ୍ରଦ ତମାଳ ବୃକ୍ଷଟିଏ ଅଛି । ତାହା ମୂଳରେ ଗୋଟିଏ ପୀଠ ବା ଚୌତରା ଅଛି । ରାଜେନ୍ଦ୍ର କେବେ କେବେ ଏହି ଚୌତରାରେ ବସି ଖବରକାଗଜ ପଢ଼ନ୍ତି ବା ବିଶ୍ରାମ ସମୟ କାଟନ୍ତି । ରାସ୍ତା ଦକ୍ଷିଣରେ ପୁଷ୍ପବାଟିକା–ମଲ୍ଲୀ, ଟଗର, ମନ୍ଦାର, ଚମ୍ପା, କାଠଚମ୍ପା ଓ ରାଜେନ୍ଦ୍ରଙ୍କ ରୋପିତ ହେନା, କାମିନୀ, ନବମଲ୍ଲିକା, ସୁଗନ୍ଧରାଜ, କ୍ରୋଟନ, ଚାଇନା, କାମ୍ପରୋଜ, ମାର୍ଶେଲନିଲ, ସାର୍ ୱାଲଟର ସ୍କଟ୍ ପ୍ରଭୃତି ଗୋଲାପଗଛ ଅଛି । ପୁଷ୍ପବାଟିକାରେ ଥିବା ପୋଖରୀ ଚାରିପାଖରେ ନଡ଼ିଆ, ଗୁଆ ଘନସନ୍ନିବିଷ୍ଟ ହୋଇ ପବନକୁ ଶୀତଳ କରୁଅଛି । ପୂର୍ବପାଖ କଚେରିଘରକୁ ଲଗାଇ ପାଠଶାଳା ଘର । ପଶ୍ଚିମ ପାଖରେ ଚାକରମାନଙ୍କ ଶୋଇବାଘରକୁ ଲଗାଇ ସୁଆରି ପାଲିଙ୍କି ରଖିବା ଘର ଓ ଗୋରୁମାନଙ୍କପାଇଁ କୁଣ୍ଡା ଅମାର ଓ ବିରି କୋଳଥ ଓଳିଆଘର ।

ତାହା ପାଖକୁ ଗୋରୁ ଗୁହାଳ ଓ ଘୋଡ଼ାପାଗା ବା ଅସ୍ତାବଲ । ଅସ୍ତାବଲରେ ଗୋଟିଏ ପଞ୍ଚକଲ୍ୟାଣୀ ଘୋଡ଼ା ବନ୍ଧାଥାଏ । ଏହା ହରିଚନ୍ଦନଙ୍କ ଦ୍ୱିତୀୟପୁତ୍ର ଚନ୍ଦ୍ରମାଧବଙ୍କର ପ୍ରିୟ ବାହନ । ଏହି ଅଶ୍ୱରେ ଆରୋହଣ କରି ସେ ଦଳ ବଳ ସହ ତଦୀୟ ଜନପଦ ଅଭିଯାନରେ ବହିର୍ଗତ ହୁଅନ୍ତି । କେବେ କେବେ ବନ୍ଧୁକ ସହ ନିକଟବର୍ତ୍ତୀ ଜଙ୍ଗଲକୁ ଶିକାର କରିଯାଆନ୍ତି । ଏହାଙ୍କ ଯୋଗୁଁ ଏ ଅଞ୍ଚଳରୁ ବ୍ୟାଘ୍ରଭୟ ପ୍ରାୟ ଦୂର ହୋଇଅଛି ।

ଭିତର ବଗିଚାଟି ବାଇଶ ମାଣ, ବାଇଶ ଗୁଣ୍ଠ ବାଇଶ ବିଶ୍ୱାର । ଅଧିକାଂଶ ବଗିଚାରେ ସଜନାଗଛ, ବାଉଁଶଝାଡ଼, ତାଳ, ନଡ଼ିଆ, ଆମ୍ବ, ପଣସ, ବଉଳ, ନାରଙ୍ଗ, କଇଥ, କାଗିଜୀଲେମ୍ବୁ, ଓଉ, ସାହାଡ଼ା, ଗଙ୍ଗଶିଉଳି, ମାଳତୀ, ମଧୁମାଳତୀ, ସିଆରୀ, କନିଅର, ଗୋଡ଼ିବାଣ ପ୍ରଭୃତି ଆବଶ୍ୟକ ଓ ଅନାବଶ୍ୟକ ନାନା ପ୍ରକାର ଗଛଲତା ଅଛି । ସିଆରୀ ଲଟାରେ ରଜରେ ପିଲାମାନେ ଦୋଳିଖେଳନ୍ତି । ଏହି ବଗିଚାରେ ଥିବା ଗଙ୍ଗଶିଉଳି ଗଛ ପାଠକ ପାଠିକାମାନଙ୍କର ପରିଚିତ । ଏଥିରେ ଗୋଟିଏ ପୋଖରୀରେ ଯଥେଷ୍ଟ ମାଛ ଥାଆନ୍ତି । ପୋଖରୀକୂଳରେ ଘାଟ ନିକଟରେ ଗୋଟିଏ ବଉଳ ଗଛ ଅଛି । ଏହା ମୂଳରେ ଗୋଟିଏ ଚଉତରା ବନ୍ଧା ହୋଇଅଛି । ପୁରନ୍ଧ୍ରୀମାନେ ଏହି ପୀଠ ଉପରେ ବସି ତୈଳ ହରିଦ୍ରା ଲଗାନ୍ତି କିମ୍ବା ଦନ୍ତଧାପନ କରନ୍ତି । କେହି ବା ପଥର ପାହାଚରେ ଉକ୍ତ କାର୍ଯ୍ୟମାନ ସମ୍ପାଦନ କରନ୍ତି । ଏହି ପୁଷ୍କରିଣୀ ଦର୍ଶନରେ କବିବର୍ଣ୍ଣିତ ସର ଧନଞ୍ଜୟଙ୍କ ସ୍ମୃତି-ପଥାରୂଢ଼ ହେଲା ।

''କି ନୀଳ ଶାଢ଼ି ହଂସାବଳୀ ରଙ୍ଗ ଧଡ଼ି ହୋଇଛି,
ଅବନୀ ବନିତା ବିସ୍ତାରେ କିବା କିଣିବା ଇଚ୍ଛି ।''

ପୋଖରୀକୂଳରେ ଗୋଟିଏ କଇଥ ଗଛରେ ଶଙ୍ଖଚିଲଟିଏ ବସା କରିଛି । ଧନଞ୍ଜୟ ତାକୁ ବଡ଼ ଭାଗ୍ୟବାନ୍ ବୋଲି ପ୍ରଶଂସା କଲେ ।

ନେଉଟିଆ, ଖଡ଼ା, କୋଶଳା, ଶିମ୍ବ, ମଟର, ଲାଉ, କଖାରୁ, ସାରୁ, ବାଇଗଣ–ଯେଉଁ ଋତୁରେ ଯେଉଁ ଫସଲ, ତାହା ଏହି ବାଡ଼ି ଭିତରେ ହୁଏ ଏବଂ ବର୍ଷର ଅଧିକାଂଶ ଦିନ ପରିବାର କାର୍ଯ୍ୟରେ ଲାଗେ । ପରିବା କେବେ କେବେ ହାଟରୁ ମଧ୍ୟ ଆସେ । ପୋଖରୀରେ କୁମ୍ଭୀମରା ହୋଇ ମାହାରା ବା ମାଲ କଟା ହୋଇ ପାଣି ବୁହାହୁଏ ।

ଯେଉଁ ଦାଣ୍ଡ ମେଲାଘର କଥା ଲେଖାହେଲା, ସେହି ଘର କାନ୍ଥରେ ଶିବଧନୁଭଙ୍ଗ, ପର୍ଶୁରାମ ବିଜୟ, ରାମାଭିଷେକ, ଅଶ୍ୱମେଧ ଯଜ୍ଞ, ରାମ-ବନବାସ ଦୃଶ୍ୟ, କବନ୍ଧ ଦୈତ୍ୟ, ବିରାଧବଧ, ରାମରାବଣ ଯୁଦ୍ଧ, ହରପାର୍ବତୀ, ସୁଭଦ୍ରାର୍ଜ୍ଜୁନ, ରୁକ୍ମିଣୀହରଣ, ଅଭିମନ୍ୟୁବଧ, ଭୀଷ୍ମଙ୍କ ଶରଶଯ୍ୟା, ଦୁର୍ଯ୍ୟୋଧନର ଘୋଷଯାତ୍ରା, ରାଜସୂୟଯଜ୍ଞ, ବ୍ୟାସଙ୍କ ବଦରିକାଶ୍ରମ, ପ୍ରଭାସମିଳନ, ଲକ୍ଷ୍ମଣଙ୍କ ଶକ୍ତିଶେଳ, ଅଶୋକବନେ ସୀତା, ସମୁଦ୍ରମନ୍ଥନ, ଅନନ୍ତଶୟନ, ଲକ୍ଷ୍ମୀ, ସରସ୍ୱତୀ, ଗଣେଶ, କାର୍ତ୍ତିକେୟ, ଦଶାବତାର ପ୍ରଭୃତି ନାନାପ୍ରକାର ପୌରାଣିକ ମୂର୍ତ୍ତି ଚିତ୍ରିତ ହୋଇଅଛି । ଏହାଛଡ଼ା ଅନ୍ତର୍ଲିପି, ବହିର୍ଲିପି, ଗୋମୂତ୍ରଛନ୍ଦ, ରଥବନ୍ଧ, ନାଗବନ୍ଧ, ପଦ୍ମବନ୍ଧ ପ୍ରଭୃତି ବିବିଧ ଚିତ୍ରବନ୍ଧ ଦର୍ଶକର ନୟନ ମନ ହରଣ କରୁଅଛି ଏବଂ ଏହି ଉତ୍କଳୀୟ ଖାନ୍ଦାନ ଘରର ଶିଳ୍ପକଳାଭିରୁଚି ଓ ପ୍ରାଚୀନ ସାହିତ୍ୟଚର୍ଚ୍ଚାର ପରିଚୟ ପ୍ରଦାନ କରୁଅଛି । ଦୁଃଖର କଥା, ଏହି ପ୍ରାଚୀନ ରୁଚି ଅଧୁନା କ୍ରମଶଃ ବିଲୟପ୍ରାପ୍ତ ହେଉଅଛି । କକ୍ଷାନ୍ତରରେ ରବିବର୍ମାଙ୍କର ନାନା ଚିତ୍ର, ଉତ୍କଳସମ୍ମିଳନୀ ଉପଲକ୍ଷରେ ରଚିତ ସଦୁକ୍ତିଚୟ ରାଜେନ୍ଦ୍ରଙ୍କ ନୂତନ ବୈଠକଖାନାର ବିଚିତ୍ରତା ସମ୍ପାଦନ କରୁଅଛି ।

ବ୍ରାହ୍ମମୁହୂର୍ତ୍ତରେ ପ୍ରାଙ୍ଗଣସ୍ଥ ସାରିକା ଗାଇଉଠେ–

"କନକଲତା ଗୋ କନକଲତା
ଉଠ ମୋହ ସଙ୍ଗେ କହ ଗୋ କଥା,
ରାତି ପାହିଲାଣି କାକ ରାବିଲାଣି
ଉଠିଲେଣି ରମା ଉମା ମୁକୁତା ।"

ପାଟ ଓ ମଝିଆଣୀ ବୋହୂ ଦମୟନ୍ତୀଙ୍କ ଶିକ୍ଷାଗୁଣରେ ସାରିକାର ଏ ଆବୃତ୍ତି । ଏହି ପରିବାରର ମଧୁର ଲୀଳା ଧନଞ୍ଜୟଙ୍କ ସ୍ମୃତିରେ ଏକ ସ୍ୱପ୍ନରାଜ୍ୟର ଛବି ଚିତ୍ରିତ କରିଦେଲା । କନକଲତା ସଙ୍ଗରେ ତାଙ୍କର ବିବାହ ସମ୍ବନ୍ଧରେ ଆଭାସ ମାତ୍ର ହୋଇଥିଲା–ସ୍ଥିର ବା କାର୍ଯ୍ୟ ପରିଣତ ହୋଇଥିଲେ ଏତେ ଆନନ୍ଦ ହୁଅନ୍ତା କି ? ଭୁକ୍ତ ଆନନ୍ଦ ତ ଶାନ୍ତ, ଆନନ୍ଦର ଆଶା ଅନନ୍ତ– ନାଲ୍ପେ ସୁଖମସ୍ତି ।

ଏହି ପରିବାରରେ ପ୍ରାଚୀନକୁ ନବୀନ ସହର୍ଷରେ ସମ୍ବର୍ଦ୍ଧନା କରୁଅଛି । କଠୋର କର୍ତ୍ତବ୍ୟ ଓ ପୂର୍ଣ୍ଣ ପାରିବାରିକ ଆନନ୍ଦ, ସଂଯମ ଓ ନିର୍ଦ୍ଦୋଷ ଆମୋଦ, କର୍ମ ଓ ଭକ୍ତି, ବୈରାଗ୍ୟ ଓ ଭୋଗ ପରସ୍ପରର ହସ୍ତ ମର୍ଦ୍ଦନ କରୁଅଛନ୍ତି । ହରିଚନ୍ଦନ ଓ ତଦୀୟ ସହଧର୍ମିଣୀ ଓ କର୍ତ୍ତବ୍ୟପରାୟଣତାର ଜ୍ୱଳନ୍ତ ପ୍ରତିମୂର୍ତ୍ତି । ପରିବାରସ୍ଥ ଯୁବକଯୁବତୀମାନଙ୍କ ଚରିତ୍ରରେ କର୍ତ୍ତା ଓ କର୍ତ୍ତ୍ରୀଙ୍କର ଶାସନ ଓ ସଂଯମର ଛାୟା ପଡ଼ିଥିଲେ ହେଁ, ଯୌବନସୁଲଭ ଆମୋଦପ୍ରମୋଦ ହାସ୍ୟକୌତୁକର ଅଭାବ ନାହିଁ । ଏଠାରେ କବିଙ୍କର ନିମ୍ନୋକ୍ତ ଆଦର୍ଶ ପ୍ରତିଫଳିତ ହୋଇଅଛି–

"I slept and dreamt that life is beauty
I woke and found that life is duty."



## ନବମ ପରିଚ୍ଛେଦ

ପୂର୍ବ ପରିଚ୍ଛେଦରେ ଆମ୍ଭେମାନେ ହରିଚନ୍ଦନଙ୍କ ଗୃହ ଓ ସାଧାରଣ ଚରିତ୍ର ବର୍ଣ୍ଣନା କରିଅଛୁଁ । ଏହି ଗୃହସ୍ଥ ମନୁଷ୍ୟମାନଙ୍କ ରୂପ ଗୁଣ ଚରିତ୍ରର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନାର ଅଭାବ ଚିନ୍ତାଶୀଳ ପାଠକପାଠିକା ଅନୁଭବ କରୁଥିବେ । ନିସର୍ଗ ଲାବଣ୍ୟ ମନୋହର, ସନ୍ଦେହ ନାହିଁ; କିନ୍ତୁ ମାନବହୃଦୟର ସରସ ବିଚିତ୍ର ଚିତ୍ର ତଦପେକ୍ଷା କୋଟିଗୁଣରେ ମନୋହର । ଏମନ୍ତ କି, ମାନବ ମନର ଅନନ୍ତ ସୌନ୍ଦର୍ଯ୍ୟ ହିଁ ପ୍ରକୃତିର ସୌନ୍ଦର୍ଯ୍ୟକୁ ଶତଗୁଣିତ କରିଦିଏ । ମନର ସମାବେଶ ବ୍ୟତୀତ ନିସର୍ଗ ଲାବଣ୍ୟର ଅନୁଭୂତି ହିଁ ଅସମ୍ଭବ । ବାସସ୍ଥାନଦ୍ୱାରା ମାନବ ବା ପ୍ରାଣୀର ରୂପ ଗୁଣ ଅବଧାରିତ ହୁଏ । ସାହାରାର ସିଂହ ମରୁଭୂମିର ବାଲୁକାମୟ ବର୍ଣ୍ଣ, ନାଉଡଙ୍କ ସାପ ହରିତ୍‌ବର୍ଣ୍ଣ । ତଦ୍ଦ୍ୱାରା ସେମାନଙ୍କର ଖାଦ୍ୟ ସଂଗ୍ରହର ସୁବିଧା ମଧ୍ୟ ହୁଏ । ପ୍ରକୃତିର ଏହି ନିୟମ । ଭଗ୍ନ ଇଷ୍ଟକସ୍ତୂପ ମଧ୍ୟରେ ରୂପଧର ଗୋଖୁର ରହେ । ଅପରିଷ୍କୃତ କର୍ଦ୍ଦମମୟ ସ୍ଥାନରେ ବିଷମକ୍ଷିକା, ମଶକ ପ୍ରଭୃତି ଉତ୍ପନ୍ନ ହୋଇ ରହନ୍ତି । କାଦୁଅ ପାଣିରେ ଧଣ୍ଡସାପ ରହେ । ପର୍ବତର ପ୍ରସ୍ତରମୟ ଗହ୍ୱର ସିଂହ, ଶାର୍ଦ୍ଦୂଳଙ୍କଦ୍ୱାରା ଅଧ୍ୟୁଷିତ । ରସାଳକୁଞ୍ଜରେ କୋକିଳର ବାସ । ଅନ୍ଧକାରମୟ ତେନ୍ତୁଳି ଗଛରେ ପେଚା, ବାଦୁଡ଼ି ପ୍ରଭୃତି ବସାକରନ୍ତି । ମାଛ ପୋଖରୀଜଳରେ, ଘନସାନ୍ଦ୍ର ଚୂତଡାଳରେ ଶଙ୍ଖଚିଲ ବାସକରେ । ପୂତିଗନ୍ଧମୟ କଂସେଇଖାନା ପାଖରେ ମାଟିଆଚିଲ, ଗୃଧ୍ର ପ୍ରଭୃତି ବାସକରନ୍ତି । ସୁନ୍ଦର ସୁରଭି ମୁକୁଳରେ ରସାଳ ଫଳେ, ସୁତୁଙ୍ଗ ସୁନ୍ଦର ଶାଖାବହୁଳ ବୃକ୍ଷ ଉପରେ ନାରିକେଳର ଜନ୍ମ । ପଦ୍ମରାଗ ଖଣିରେ ପଦ୍ମରାଗମଣି ଜନ୍ମେ । କେଳା କୁଡ଼ିଆରେ କେଳା ପିଲାର ଜନ୍ମ । କାଳପାଣି ମଧ୍ୟରେ ଯେଉଁମାନେ ବଢ଼ନ୍ତି ସେମାନଙ୍କର ମନ ବୁଦ୍ଧି ସାଧାରଣତଃ ସେହିପରି ହୁଏ । ହରିଚନ୍ଦନଙ୍କ ପରିବାରର ବହିରାବରଣ ଯେପରି, ସେମାନଙ୍କ ଅନ୍ତର୍ଜୀବନ ସେହିପରି । ଖତକୁଢ଼ରେ ପଦ୍ମ, ଶ୍ମଶାନ-ତୁଳସୀ ଏହିଗୁଡ଼ିକରେ ନିଷେଧ ବିଧିକୁ ପ୍ରମାଣିତ କରେ । ପ୍ରତ୍ୟେକ ବିଧିର ବ୍ୟତିକ୍ରମ ଅଛି । ଅନ୍ଧକାର ବିନା ଆଲୋକ ଅସମ୍ଭବ । ଭଲ ମନ୍ଦ ଦାତ ଧରାଧରି ହୋଇ ସୃଷ୍ଟିର ଲୀଳା ସମ୍ଭବ କରିଅଛନ୍ତି ।

ପାଠକମାନେ ଜାଣନ୍ତି, ହରିଚନ୍ଦନଙ୍କର ଚାରି ପୁଅ ଓ ତିନି ବୋହୂ । ରାଜେନ୍ଦ୍ର ଅବିବାହିତ । ଜ୍ୟେଷ୍ଠ ଇନ୍ଦ୍ରମାଧବ ପିତୃଗୁଣସମ୍ପନ୍ନ, ବିଚକ୍ଷଣ, ସ୍ୱଜନବତ୍ସଳ, ଉତ୍ସାହୀ, ବିଷୟୀ, ମିତାଚାରୀ, ମିତଭାଷୀ । ଦ୍ୱିତୀୟ ଚନ୍ଦ୍ରମାଧବ ଅତି ସାହସୀ, ଅମିତାଚାରୀ, ଦୁର୍ଦ୍ଧର୍ଷ, ଅସଂଯତ, ପିତାଙ୍କର କିଞ୍ଚିତ୍ ଅବାଧ୍ୟ; କିନ୍ତୁ ଏହାଙ୍କର କେତେକ ସଦ୍‌ଗୁଣ ଲୁକ୍‌କାୟିତ । ଏ ଲୋକପ୍ରିୟ ଗୋଟିଏ ଦଳ ଗଠନ କରିଥାନ୍ତି । ରୋଗୀର ଶୁଶ୍ରୂଷା, ଶବସଂସ୍କାର, ବିପନ୍ନ ଅତ୍ୟାଚାରିତଙ୍କୁ ସାହାଯ୍ୟ କରନ୍ତି । କେତେବେଳେ ସଂକୀର୍ତ୍ତନ ଆଖଡ଼ା, କେତେବେଳେ ଖଞ୍ଜଣିମାଡ଼, କେତେବେଳେ ବନମହୋତ୍ସବ କରି କାଳକ୍ଷେପଣ କରନ୍ତି । ପ୍ରଥମ ଯୌବନରେ ଧାନ ଗଦାରୁ, ଅମାରରୁ, ସିନ୍ଦୁକରୁ, ପିତାଙ୍କ ଜ୍ଞାତସାରରେ ବା ଅଜ୍ଞାତରେ ଧନ ନେଇ ସଙ୍ଗୀ, ଗାୟକ ଓ ଲାଠିଆଳମାନଙ୍କ ଉଦର ମନର ତୃପ୍ତି ସାଧନ କରିବାରେ କଦାପି କୁଣ୍ଠା ପ୍ରକାଶ କରି ନାହାନ୍ତି । ଥରେ ହରିଚନ୍ଦନ କ୍ରୁଦ୍ଧ ହୋଇ ତିରସ୍କାର କରି କହିଲେ, "ତୁ ଜାଣୁ, ମୁଁ ନାଗ ସାପ ।" ପୁତ୍ର ତତ୍‌କ୍ଷଣାତ୍ ଉତ୍ତର ହେଲେ, "ଆପଣ ତ ଜାଣନ୍ତି, ମୁଁ ନାଗବଚ୍ଛା ।" ହରିଚନ୍ଦନଙ୍କ ଗୃହିଣୀ ସେହିକ୍ଷଣି ଆସି ସ୍ୱାମୀଙ୍କ କୋପ ଶାନ୍ତକରି ଅବୋଧ ପୁତ୍ରଙ୍କୁ ପିତୃଅଭିଶାପରୁ ରକ୍ଷାକଲେ । ଏହି ପୁଣି ବିପଦ-ଆପଦ, ରୋଗ-ମୃତ୍ୟୁ ଘଟନାରେ ବୀର ପରି କାର୍ଯ୍ୟ କରନ୍ତି । ଯେତେବେଳେ ଯାହାର ଗୃହଦାହ ହେଲା ଦେଖିବ, ଦଳବଳ ଘେନି ସେଠାରେ ଉପସ୍ଥିତ ହୋଇ ଜୀବନର ଆଶାରେ ଜଳାଞ୍ଜଳି ଦେଇ ମହାଉତ୍ସାହରେ ସାହାଯ୍ୟକଲେ । ଅଗ୍ନିନିର୍ବାପନାନ୍ତେ ହାତରୁ କିଛି ଦେଇ ବିପନ୍ନଙ୍କୁ ସାହାଯ୍ୟ କରିଗଲେ । କେହି ଶବସଂସ୍କାର କରିପାରୁ ନାହିଁ, ସେହି ଶବ ସଂସ୍କାର କରିଦେଇ ବିପନ୍ନର କୁଳ-ମାନ ରକ୍ଷାକରନ୍ତି । ଯେଉଁଠାରେ ଦୁର୍ଦ୍ଦାନ୍ତ, ଅତ୍ୟାଚାରୀ ଜମିଦାର ପ୍ରଜା ଉପରେ ଅତ୍ୟାଚାର କରେ, ସେଠାରେ ସେନାନୀରୂପେ ତାହାର ରକ୍ଷାକର୍ତ୍ତା ହୋଇ ଦଣ୍ଡାୟମାନ । ତଦୀୟ ଦଳର ଭୟରେ କେହି ଆଉ ଅଗ୍ରସର ହୋଇପାରନ୍ତି ନାହିଁ । ସ୍ଥୂଳତଃ ହରିଚନ୍ଦନଙ୍କ ଛଡ଼ା ଏହି ପୁରୁଷପୁଙ୍ଗବଙ୍କଦ୍ୱାରା ଆଉ କାହାରି କ୍ଷତି ହୁଏ ନାହିଁ, ବରଂ ଲାଭ । ହରିଚନ୍ଦନଙ୍କ ତୃତୀୟ ପୁତ୍ର ବୀରେନ୍ଦ୍ର କ୍ରୂର, କୃପଣ, କିଞ୍ଚିତ୍ ନୀଚାଶୟ, ସ୍ୱାର୍ଥପର, ଘୋର ସଂସାରୀ, କୌଶଳୀ, ଲମ୍ପଟ । ପୂର୍ବକଥିତା ଚମ୍ପାଙ୍କୁ ବିପଥଗାମିନୀ କରାଉଥିଲେ, କିନ୍ତୁ ରାଜେନ୍ଦ୍ର ତାଙ୍କୁ ରକ୍ଷା କଲେ । ଲମ୍ପଟତାର ଫଳସ୍ୱରୂପ ଅପୁତ୍ରକତା । ବିଧାତାବିଧାନ ପୂର୍ଣ୍ଣ ନ୍ୟାୟାନୁମୋଦିତ । ଯାହାର ଯେପରି

ଦୋଷ, ଦଣ୍ଡ ତଦନୁରୂପ । ଏହି ଲମ୍ପଟ ଅପୁତ୍ରକ ଉପଦଂଶାଦି ରୋଗରେ ରୁଗ୍‌ଣ । ଅର୍ଶ, ମେହ-ନାନା ରୋଗର ଖଣି ଏ । ଗୁଣାନୁଯାୟୀ ପୁରସ୍କାର ମଧ ପାଇଅଛନ୍ତି । ସଞ୍ଚୟପଟୁ ଥିବାରୁ ଅର୍ଥର ସଦ୍‌ବ୍ୟବହାର କରି ଖୁବ୍ ଲାଭବାନ୍ ହୋଇଅଛନ୍ତି । ଅଳ୍ପ ଧନରେ ଅତି ସୁନ୍ଦରରୂପେ ସୁକୌଶଳରେ ଅନେକ କାର୍ଯ୍ୟ କରିପାରନ୍ତି । କେତେକ ଦିନ କୌଣସି ସ୍ଥାନରେ ଜମିଦାରୀ ଶାସନ ବା ନାଏବ କାର୍ଯ୍ୟ କରୁଥିଲେ, କିନ୍ତୁ ପ୍ରଜାମାନେ ବିଦ୍ରୋହୀ ହୋଇ ଅତ୍ୟାଚାର କରିବାରୁ ପଳାୟମାନହୋଇ ପ୍ରାଣରକ୍ଷା କଲେ । ଚାଷ ଓ ଜମିଦାରୀ ସୁନ୍ଦର ବୁଝିପାରନ୍ତି । ନିଜକୁ ପର ସ୍ଥାନରେ ବସାଇ ତାହାର ଅସୁବିଧାଟିକକ ବୁଝିପାରନ୍ତି ନାହିଁ । 'ଅନ୍ୟଠାରୁ ଯାହା ଆଶା କର, ଅନ୍ୟ ପ୍ରତି ସେହିପରି ବ୍ୟବହାର କର'– ଏହାଙ୍କ ଜୀବନରେ ଏହି ଧର୍ମନୀତିର ବୈପରୀତ୍ୟ ଲକ୍ଷିତ ହୁଏ ।

''ପୂର୍ବଜନ୍ମାର୍ଜିତା ବିଦ୍ୟା ପୂର୍ବଜନ୍ମାର୍ଜିତଂ ଧନଂ
ପୂର୍ବଜନ୍ମାର୍ଜିତା କନ୍ୟା ଅଗ୍ରେ ଧାବତି ଧାବତି ।''

ସ୍ତ୍ରୀ ସ୍ୱାମୀଙ୍କ ସମଧର୍ମାକ୍ରାନ୍ତା–ମୁଖରା, ନିଷ୍ଠୁରସ୍ୱଭାବା, କଠୋର–ଭାଷିଣୀ, କୃପଣା, ଗର୍ବିତା । କାହାରି କିଛି ନେବାକୁ ଚାହାନ୍ତି ନାହିଁ । କାହାରିକୁ କିଛି ଦେବାକୁ ନାରାଜ । ଆଦାନପ୍ରଦାନ ଯେ ଜଗତର ନିୟମ ଏହା ସେ ବୁଝନ୍ତି ନାହିଁ । ସ୍ୱାମୀ ସ୍ତ୍ରୀ କେତେକ ବର୍ଷ ଏକତ୍ର ରହିଲେ ପରସ୍ପରର ଦୋଷଗୁଣର ଅଧିକାରୀ ହୁଅନ୍ତି । ବିଧାତା ଏମାନଙ୍କୁ ସମାନ ପ୍ରକୃତିକ କରିଥିବାରୁ ଏମାନଙ୍କ ଚରିତ୍ରରେ ପରସ୍ପରର ଦୋଷଗୁଣ ଦୃଢ଼ୀଭୂତ ହେଲା । ବୃକ୍ଷ ରୋପଣ କଲେ ଫଳ ନ ଖାଇ ଯିବ କୁଆଡ଼େ ? ଏହି ଦମ୍ପତି ଜନପ୍ରିୟ ନୁହନ୍ତି ଏବଂ ପୂର୍ବୋକ୍ତ ନାନା କାରଣରୁ ଅସୁଖୀ । କେବଳ କୌଶଳ ଯଥେଷ୍ଟ ଥିବାରୁ ସାଂସାରିକ ହିସାବରେ ଚଳିଯାଉଥାନ୍ତି ।

ହରିଚନ୍ଦନଙ୍କ ଜ୍ୟେଷ୍ଠା ପୁତ୍ରବଧୂ ସାବିତ୍ରୀ ସୁଗୃହିଣୀ, ସରଳପ୍ରକୃତିକା; କିନ୍ତୁ କିଞ୍ଚିତ୍ କଳହପ୍ରିୟା । ସେ କଳହ ବେଶିବେଳ ସ୍ଥାୟୀ ହୁଏ ନାହିଁ – ପରକ୍ଷଣରେ ମିଳିମିଶି ଯାଆନ୍ତି । ଗୃହକର୍ମରେ ସଦା ତତ୍ପରା । କ୍ଷୁଦ୍ର କାର୍ଯ୍ୟ, ଯାହାକୁ ଅନ୍ୟମାନେ ନୀଚ ବୋଲି ଭାବିବେ ଓ ଦାସୀ ନିମିତ୍ତ ରଖିବେ, ଏ ଅବଲୀଳାକ୍ରମେ ଅବିକୃତଚିତ୍ତରେ ତାହା ସମ୍ପାଦନ କରିବେ । କନିଷ୍ଠା ଶାରଦା କୃପଣା ; ମାତ୍ର ନିଜେ ଭୋଗବିଳାସିନୀ ; କିନ୍ତୁ ଜ୍ୟେଷ୍ଠା ମଧୁମକ୍ଷିକାବତ୍

ସଞ୍ଚୟପରାୟଣା । ସ୍ୱକୀୟ ପରକୀୟ ଉଭୟ ପକ୍ଷରେ କୃପଣା । ବିଳାସବାସନା ଆଦୌ ନାହିଁ । କନକଲତା ଏହାଙ୍କୁ ବେଳେ ବେଳେ କହେ, ''ନୂଆବୋହୂ, ଭାଗବତରେ ପରା ଶୁଣିଥିଲ– 'ଦୁଃଖେ ଅର୍ଜିତ ଯେତେ ଧନ, ସେ ନୋହେ ସୁଖେ ପ୍ରୟୋଜନ' । ଜ୍ୟେଷ୍ଠା ଉତ୍ତର ଦିଅନ୍ତି, ''ଦେଖଲୋ ଭଉଣୀ, କଳିଷଠାରୁ ତ ଦୁଇ ଭାଗ ଗଲାଣି, ସୁଖ ଆଉ କ'ଣ ? ତମ ଭାଇଙ୍କ ଆଗରେ ଚାଲିଗଲେ ସେହି ମୋର ସୁଖ ।''

ପ୍ରକୃତ ପକ୍ଷରେ ହରିଚନ୍ଦନ ପରିବାରର ଗୃହଲକ୍ଷ୍ମୀ ମଧ୍ୟମା ବଧୂ ଦମୟନ୍ତୀ । ପରିବାରର ରନ୍ଧନାଦିର ଭାର ଏହାଙ୍କ ଉପରେ ବିଶେଷ ଭାବରେ ନ୍ୟସ୍ତ । ଭଦ୍ରଲୋକ, ବନ୍ଧୁବାନ୍ଧବ ଯେ ଯେତେବେଳେ ଆସିବେ, ସେମାନଙ୍କୁ ପାନ, ତମାଖୁ ହେଉ ବା ଜଳଖିଆ ପାକ ବା ଅନ୍ନବ୍ୟଞ୍ଜନ ପାକ ହେଉ ସମସ୍ତ ସେହି ବୁଝିବେ । ବନର ମାଳତୀ ଦେଖା ନ ପଡ଼ିଲେ ମଧ ଯେପରି ତାହାର ସୌରଭ ଆପେ ମହକୁଥାଏ, ସେହିପରି ଏହି ମିତଭାଷିଣୀ ନୀରବ ନିଃସ୍ୱାର୍ଥ କର୍ମପରାୟଣା ନାରୀଲଲାମର ସେବାଧର୍ମର ଯଶଃସୌରଭ ବନ୍ଧୁ କୁଟୁମ୍ବ ସର୍ବତ୍ର ମହକିଉଠିଅଛି । ଆଳସ୍ୟ କାହାକୁ କହନ୍ତି, ଏ ଜାଣନ୍ତି ନାହିଁ । ସ୍ୱଜନ ବାନ୍ଧବ, ଗୁରୁଗର୍ବୀ ସମସ୍ତଙ୍କର ସେବାକରି, ଦାସଦାସୀ, ପୋଷ୍ୟ ଜୀବଜନ୍ତୁ ସମସ୍ତଙ୍କର ଆହାର-ପାନର ବ୍ୟବସ୍ଥା କରି ଭାଗବତଙ୍କ ଜଳ ତୁଳସୀ ଓ ଶାଶୂ-ଶ୍ୱଶୁରଙ୍କ ପାଦୋଦକ ପାଇ ଯତ୍‌କିଞ୍ଚିତ୍ ଭୋଜନପୂର୍ବକ ବିଞ୍ଚଣା ଚାଙ୍ଗୁଡ଼ା ବୁଣିବା, ମୋଜା କମ୍ପର୍ଟ ସିଲାଇକରିବା, କନକ ସହିତ ଭାଗବତ ରାମାୟଣ ପଢ଼ିବା ଶୁଣିବାକୁ ସମୟ ପାଇଥାନ୍ତି । ଦାଣ୍ଡଘରର ଚିତ୍ରାଦି ଅଧିକାଂଶ ଏହାଙ୍କର ଓ କନକର ସମବେତ ଚେଷ୍ଟାର ଫଳ ।

ବଡ଼ଭାଇଙ୍କର ଦିଓଟି କନ୍ୟା ଓ ଗୋଟିଏ ପୁତ୍ର ସନ୍ତାନ । ମଧମଙ୍କର ଦୁଇଗୋଟି ପୁତ୍ର ଓ ଦୁଇଗୋଟି କନ୍ୟା ଏବଂ କନିଷ୍ଠଙ୍କର ସନ୍ତାନାଦି ନ ଥିବାରୁ ମଧମଙ୍କଠାରୁ ଗୋଟିଏ ପୋଷ୍ୟପୁତ୍ର କରିନେଇଅଛନ୍ତି । ହରିଚନ୍ଦନଙ୍କର ଇଚ୍ଛା, କନକଲତା ଓ ରାଜେନ୍ଦ୍ରଙ୍କ ହାତକୁ ଦୁଇ ହାତ କରିଦେଇ ସେ ତୀର୍ଥପର୍ଯ୍ୟଟନ କରି ଯିବେ । ଭାଗବତର 'ପୁତ୍ର ନିବେଶି ପତ୍ନୀ ପାଶେ, ଅଥବା ଚଳିବ ସନ୍ନ୍ୟାସେ' ତାଙ୍କ ମନକୁ ବହୁବାର ଆଲୋଡ଼ିତ କଲାଣି ।

ରାଜେନ୍ଦ୍ର ପିଲା । ତାଙ୍କ ଚରିତ୍ର ବିଶ୍ଳେଷଣ କରିବାର ସମୟ ହୋଇ ନାହିଁ । ସୁଧୀ ପାଠକ କାର୍ଯ୍ୟରୁ ଚରିତ୍ର ଜାଣିନେବେ । ରାଜେନ୍ଦ୍ର କିନ୍ତୁ

ବଡ଼ ଏକଜିଦିଆ । ଏମ୍.ଏ. ପାସ୍ ନ ହେଲେ ସେ ବିବାହ କରିବେ ନାହିଁ । ଲୋକେ ସନ୍ଦେହ କରନ୍ତି, ସେ ବ୍ରାହ୍ମଧର୍ମ ବା ଖ୍ରୀଷ୍ଟଧର୍ମ ଗ୍ରହଣକରି ସେହି ସମାଜରେ ବିବାହ କରିବେ । ସେ କହନ୍ତି, ମନୁଷ୍ୟ ଯାହାକୁ ସାରା ଜୀବନର ସଙ୍ଗିନୀ କରିବ, ତାହାକୁ ନ ଦେଖି, ନ ଜାଣି, ପର କଥାରେ କୁଣ୍ଢାଇବିବାହ ପରି ଗଳାରେ ଛନ୍ଦିହୋଇ ଚିରଜୀବନ ମନସ୍ତାପ ଭୋଗ କରିବା ରୂପ ବିଡ଼ମ୍ବନାଠାରୁ ଚିରଜୀବନ ବ୍ରହ୍ମଚର୍ଯ୍ୟ ବ୍ରତ ଗ୍ରହଣ କରିବା ବରଂ ଶ୍ରେୟସ୍କର । ଏ କଥା ସେ ଅଧିକ ଲୋକଙ୍କୁ କହନ୍ତି ନାହିଁ । ଯେଉଁ ଚିନ୍ତାମଣି ଶତପଥୀଙ୍କୁ ନିଜେ ହରିଚନ୍ଦନ ପିତୃବତ୍ ମାନନ୍ତି, ତାଙ୍କରି ଆଗରେ ରାଜେନ୍ଦ୍ର ଏହିପରି କହନ୍ତି । ସେ ତାହା ଶୁଣି ରାଜେନ୍ଦ୍ରଙ୍କୁ ବାୟା ବୋଲି କହନ୍ତି ଏବଂ କହନ୍ତି, ‘‘ତୁ କ’ଣ ସ୍ୱୟଂବର ସଭାରେ ବରିତ ହେବାକୁ ଲୋଡ଼ୁ ?’’ ମନେ ମନେ କହନ୍ତି, ‘‘ଏ ତ ଠିକ୍ କଥା କହୁଛି । ପ୍ରାଚୀନ କାଳରେ ରାମ, ଅର୍ଜୁନ, ଶ୍ରୀକୃଷ୍ଣ ସମସ୍ତେ ତ ଭାବୀ-ସହଧର୍ମିଣୀଙ୍କୁ ଦେଖି ବିବାହ କରିଥିଲେ, କିନ୍ତୁ ଦେଶରେ ତ ଆଉ ସେ ବିଧି ପ୍ରଚଳିତ ନାହିଁ । ଏ ଟୋକାଟାର ହେବ କ’ଣ ?’’ ହରିଚନ୍ଦନଙ୍କୁ ପ୍ରବୋଧ ଦିଅନ୍ତି, ‘‘ବୟସବେଳେ ଏହିପରି ହୋଇଥାଏ । କିଛିଦିନ ପଢୁ । ଜ୍ଞାନ ପରିପକ୍ୱ ହେଲେ ଆପେ ନମ୍ର ହୋଇଯିବ । ଗୋଟିଏ ସୁଶ୍ରୀ କନ୍ୟାଠାରୁ ଗୋଟିଏ ଯୋଡ଼ିଏ ବାଳବଚ୍ଚା ହେଲେ ମନ ଘର ଧରିଯିବ ଯେ !

କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ – ଏହି ଛଅଟି ପ୍ରକୃତି ମାତ୍ରାନୁସାରେ ଦୋଷ-ଗୁଣରେ ପରିଣତ ହୁଅନ୍ତି । ସତ୍ତ୍ୱ, ରଜ, ତମୋଗୁଣ ଭେଦରେ ଏମାନେ ପୁଣି ଭିନ୍ନ ରୂପ ଧାରଣ କରନ୍ତି । କାମପ୍ରଣୋଦିତ ହୋଇ କେହି ଅର୍ଥ, କେହି ବିଦ୍ୟା, କେହି ଧର୍ମ, କେହି ମୋକ୍ଷ କାମନା କରେ । କେହି ଆତତାୟୀ ବା ଅତ୍ୟାଚାରୀ ଉପରେ କ୍ରୁଦ୍ଧ ହୋଇ ତାହାକୁ ବିନାଶକରି ସୃଷ୍ଟିଲୀଳାରେ ସହାୟତା କରେ । କେହି ବା ସାମାନ୍ୟ ସ୍ୱାର୍ଥହାନିରେ ଅଯଥା କ୍ରୁଦ୍ଧ ହୋଇ ଚରିତ୍ରକୁ ନୀଚ କରେ । କେହି ସାମାନ୍ୟ ଅର୍ଥଲୋଭ, କେହି ବିଦ୍ୟାର ଲୋଭ, କେହି ବା ପରର ପୁଣ୍ୟ ଦେଖି ଲୋଭାନ୍ୱିତ ହୋଇ ସତ୍‌ପଥାନୁବର୍ତ୍ତୀ ହୁଏ । ହରିଚନ୍ଦନଙ୍କ ବିଶାଳ ହିନ୍ଦୁ-ହୃଦୟରେ ଏପରି ଲୋଭନୀୟ ଚରିତ୍ରର ବିକାଶ ସାଧିତ ହୋଇଥିଲା ଏବଂ ତଦୀୟ ସହଧର୍ମିଣୀଙ୍କ ପୁଣ୍ୟ ପ୍ରଭାବ ସଙ୍ଗେ ତାହା ଗଙ୍ଗା-ଯମୁନା ସଙ୍ଗମବତ୍ ଏତାଦୃଶ ପରିପୁଷ୍ଟି ଲାଭ କରିଥିଲା ଯେ,

ତଦ୍ଦ୍ୱାରା ସମସ୍ତ ପରିବାର ଅକ୍ଷାଧିକ ପ୍ରଭାବିତ ହୋଇଥିଲା । ତେଣୁ ତଦୀୟ ପୁତ୍ର ଓ ପୁତ୍ରବଧୂମାନେ ସ୍ୱକୀୟ ପ୍ରକୃତି ଦିନକୁ ଦିନ ପରିମାର୍ଜିତ କରି ଉନ୍ନତିପଥରେ ଅଗ୍ରସର ହେଉଥିଲେ । ସାଂସାରିକ ଦୁଃଖ ଶୋକ ରୋଗ ଯନ୍ତ୍ରଣା ସେହି ପଥରେ ସେମାନଙ୍କର ସହାୟତା କରୁଥିଲା । ଦେବପୂଜା, ଶାସ୍ତ୍ରପାଠ, ସର୍ବଦା କର୍ତ୍ତବ୍ୟପାଳନ, ସର୍ବୋପରି ସ୍ୱ ସ୍ୱ ଜୀବନର ଜୀବନ୍ତ ଜ୍ୱଳନ୍ତ ଦୃଷ୍ଟାନ୍ତଦ୍ୱାରା ଏହି ଦମ୍ପତି ସ୍ୱ ସ୍ୱ ପୋଷ୍ୟ ଓ ପ୍ରତିବାସୀବର୍ଗଙ୍କ ଚରିତ୍ରକୁ ଅଜ୍ଞାତସାରରେ ସୁଗଠିତ, ମାର୍ଜିତ ଏବଂ ପବିତ୍ରୀକୃତ କରି ଉନ୍ନତି ମାର୍ଗରେ ଅଗ୍ରସର କରାଉଥିଲେ । ଜ୍ଞାନ ଅପେକ୍ଷା କର୍ମ ଚରିତ୍ରୋନ୍ନତିର ଉତ୍କୃଷ୍ଟତର ପନ୍ଥା । ମାନବର ଇହସଂସାରରେ ଶ୍ରେଷ୍ଠ କର୍ତ୍ତବ୍ୟ ଆତ୍ମୋନ୍ନତି, ସ୍ୱାର୍ଥତ୍ୟାଗ, ପରାର୍ଥପରତା । ନାନା ବିଷୟଲୀଳା ମଧ୍ୟରେ ଏହା ମନୁଷ୍ୟତା ।



## ଦଶମ ପରିଚ୍ଛେଦ

# ଧନଞ୍ଜୟ ରାୟଙ୍କ ଓକାଲତି

ଏ ଜଗତରେ ଯେ ଯାହା ଲୋଡ଼େ, ସବୁବେଳେ ସେ ତାହା ପାଏ ନାହିଁ । ଜୀବନରେ ସ୍ୱାଧୀନ ଇଚ୍ଛା ଓ ସାଧନାର ଫଳ ଅଛି ସତ୍ୟ; ମାତ୍ର ଅନେକ ସମୟରେ ଦେଖାଯାଏ, ମାନବଶକ୍ତିର ଅତୀତ ଅନ୍ୟ ଗୋଟିଏ ଶକ୍ତି କାର୍ଯ୍ୟ କରୁଅଛି । ସୂକ୍ଷ୍ମଭାବରେ ପର୍ଯ୍ୟାଲୋଚନା କଲେ ଦେଖାଯାଏ, ପରିଣାମରେ ସେହି ଶକ୍ତି ହିଁ ଜୟଯୁକ୍ତ ହେଉଅଛି । ମାନବ-ଶକ୍ତି ଯେତିକି ପରିମାଣରେ ସେହି ଶକ୍ତିର ଅନୁଗାମିନୀ, ସେତିକି ପରିମାଣରେ ତାହା ଜୟଯୁକ୍ତ । ପୁଣି ଦେଖାଯାଏ, ଏହି ଶକ୍ତି ଯେ କେବଳ ପ୍ରବଳପରାକ୍ରାନ୍ତ, ଅନତିକ୍ରମଣୀୟ, ଦୁରାଧର୍ଷ, ସର୍ବତୋମୁଖୀ ତାହା ନୁହେଁ, ପରନ୍ତୁ ଏହା ମଙ୍ଗଳମୟ । ଏହି ଶକ୍ତିକୁ ଅନୁଧ୍ୟାନ କରି ତତ୍‌ସହିତ ଯୋଗଯୁକ୍ତ ହୋଇ ସାଧୁ-ମହାତ୍ମାଗଣ କୃତକୃତ୍ୟ ହୁଅନ୍ତି । ଏହାର ଦର୍ଶନ ଯେ ପାଆନ୍ତି ସେହି ଦ୍ରଷ୍ଟା, ଏହା ଯେ ସାଧନ କରନ୍ତି ସେହି ସାଧକ, ଏଥିରେ ଯେ ପାରଦର୍ଶୀ ସେହି ସିଦ୍ଧ, ମହାପୁରୁଷ । କିନ୍ତୁ ସାଧାରଣ ମାନବର ବୁଦ୍ଧି, ଇଚ୍ଛା, ଅନୁଭବ ସୀମାବଦ୍ଧ । ତେଣୁ ତାହାର ଜ୍ଞାନ-କର୍ମ-ପ୍ରେମ ଶାନ୍ତ । ଅନେକ ସମୟରେ ମନୁଷ୍ୟ ତାହାର ବାଞ୍ଛିତ ଫଳ ନ ପାଇ ଅଧୀର ଭାବରେ 'ହା-ହତୋଽସ୍ମି' କରି ବିଧାତାଙ୍କର ଦୋଷ ଦିଏ । ସାନ୍ନିପାତିକ ରୋଗୀ ଜଳ ଲୋଡ଼େ, ହିତାକାଙ୍‌କ୍ଷୀ ବୈଦ୍ୟ ସେତେବେଳେ ତାକୁ ଜଳ ଦିଏ ନାହିଁ । ଯାହା ଅନିଷ୍ଟକର, ବିକୃତ ଅବସ୍ଥାରେ ତନ୍ନିମିତ୍ତ ପ୍ରବଳ ଆକାଙ୍‌କ୍ଷା ହୁଏ । କୁଷ୍ଠରୋଗୀମାନେ ଅମ୍ଳ ଓ ଆମିଷ ନିମିତ୍ତ ଲୋଳଜିହ୍ୱ ହୁଅନ୍ତି–ଅଥଚ ଏହି ଅମ୍ଳ ଓ ଆମିଷ ସେମାନଙ୍କର ଅନିଷ୍ଟକାରୀ । ବିଶ୍ୱତଶ୍ଚକ୍ଷୁ ସର୍ବଦର୍ଶୀ ମଙ୍ଗଳମୟ ପ୍ରଭୁ ବୋଧହୁଏ ତେଣୁ ଅଜ୍ଞାନ ମାନବର ବାଞ୍ଛିତ ବିଷଲଡ୍ଡୁ ତାହା ହସ୍ତରୁ ଛଡ଼ାଇନିଅନ୍ତି । ମାନବର ଯେତେ ବୟୋବୃଦ୍ଧି ହୁଏ ଏବଂ ତାହାର ଜ୍ଞାନ ଯେତେ ପରିପକ୍ୱ ହୁଏ, ନିଜ ଶକ୍ତିରେ ତାହାର ବିଶ୍ୱାସ ସେତେ ଊଣା ହୁଏ । ସେ ସ୍ପଷ୍ଟ ହୃଦୟଙ୍ଗମ କରିପାରେ, ଗୋଟିଏ ଅଜ୍ଞାତ ଅଜ୍ଞେୟ ଶକ୍ତି କି ଏକ ଗୂଢ଼ ଉଦ୍ଦେଶ୍ୟରେ ମାନବକୁ କି ଏକ ମହାଲକ୍ଷ୍ୟ ଆଡ଼କୁ

ଘେନିଯାଉଅଛି । ମାନବସମାଜର ବହୁଦର୍ଶିତା ଏହି ଭାବକୁ ନାନା ଭାବରେ ଶ୍ଳୋକନିବଦ୍ଧ କରିଅଛି । ବୃଦ୍ଧଲୋକେ କହନ୍ତି, ‘‘ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଟାଣଇ ତେଣିକି ଯାଇ ।’’

‘ସମୁଦ୍ରମନ୍ଥନେ ଲଭେ ହରିର୍ଲକ୍ଷ୍ମୀଂ ହରୋବିଷଂ
ଭାଗ୍ୟଂ ଫଳତି ସର୍ବତ୍ର ନ ବିଦ୍ୟା ନ ଚ ପୌରୁଷଂ ।’

ବୟସଗୁଣରେ ବା ଦୋଷରେ ଅଦୃଷ୍ଟବାଦିତା ଆସେ ସତ୍ୟ; ମାତ୍ର ଉଦ୍ଦାମ ଯୌବନରେ ମାନବର ଆତ୍ମନିର୍ଭରଶୀଳତା ସ୍ୱାଭାବିକ । ଆମ୍ଭମାନଙ୍କ ଧନଞ୍ଜୟ ରାୟଙ୍କର ଚାକିରି ଯୋଗାଡ଼ ହୋଇପାରି ନାହିଁ । ଇଚ୍ଛା ବିରୋଧରେ ଓକାଲତି କରୁଥିଲେହେଁ ଚାକିରି ବିଷୟରେ ନିରାଶ ନ ହୋଇ ଭିତରେ ଭିତରେ ଯୋଗାଡ଼ଯନ୍ତ୍ର କରିବାରେ ତ୍ରୁଟି କରି ନାହାନ୍ତି । କିନ୍ତୁ ଚାକିରି କିମ୍ବା ଅର୍ଥାଗମ ଅପେକ୍ଷା ସେ ପରୋପକାର, ସାମାଜିକ ବା ରାଜନୈତିକ ଉନ୍ନତି ପ୍ରତି ଅଧିକ ଆସ୍ଥାବାନ୍ । ଯେଉଁଠାରେ ଅଗ୍ନିଦାହ ହେଲା, ସେଠାରେ ଦେଖିବ ଧନଞ୍ଜୟ । ଭାଇ ଭାଇ ବା ପ୍ରତିବାସୀଙ୍କ ମଧ୍ୟରେ କଳହ ବିବାଦ ହେଲେ ସେ ଦଶକ୍ରୋଶ ଯାଇ ସେମାନଙ୍କ ବିବାଦ ମେଣ୍ଟାଇବାରେ କୁଣ୍ଠିତ ହୁଅନ୍ତି ନାହିଁ । ଏହା ନିଜ ବ୍ୟବସାୟର ବିରୋଧୀ । ବିଶେଷତଃ ଟରଣୀ ମୋହରିରମାନଙ୍କ ମତରେ ଏହା ମର୍ଯ୍ୟାଦାହାନିକର ଏବଂ ଅର୍ଥହାନିକାରକ, ଏଥିରେ ସଂଶୟ ନାହିଁ । କାରଣ ନିଜେ ଓକିଲ, ବାଦୀ-ପ୍ରତିବାଦୀମାନଙ୍କ ଘରକୁ ଯାଇ, କୋମଳ କଥା କହି ଆପୋସରେ ବିବାଦ ମୀମାଂସା ବା ରଫା କଲେ ଟରଣୀଙ୍କୁ ମାନୁଛି କିଏ ? ଏହି ଟରଣୀମାନେ ଅଧିକାଂଶ ନିମ୍ନପ୍ରାଥମିକ ବିଦ୍ୟାଳୟର ପାଠ ସମାପ୍ତ କରିବା ପୂର୍ବରୁ କାନରେ କଲମ ଖୋସି, ଟେରି କାଟି, ପାନରେ ମୁହଁ ଲାଲ କରି, ଲମ୍ବାକାମିଜ ପିନ୍ଧି, ଆଧୁନିକ ଫେସନ୍‌ରେ ଦୁଇଚାରୋଟି ଇଂରେଜୀମିଶା କଥା କହି ଦେଶରେ ମାଲିମକଦ୍ଦମାର ସୃଷ୍ଟି ବା ବୃଦ୍ଧିକରି ସମାଜର ସର୍ବନାଶ ସାଧନ କରୁଅଛନ୍ତି । ଧନଞ୍ଜୟ ଏମାନଙ୍କ ଗର୍ବ, ଅସାଧୁତା, ଚରଣଚୁଟିଆ ଭାବ ଦେଖି ଏମାନଙ୍କୁ ଆନ୍ତରିକ ଘୃଣା କରନ୍ତି । କିନ୍ତୁ ତଦ୍ଦ୍ୱାରା ସେ ନିଜେ କ୍ଷତିଗ୍ରସ୍ତ ହୁଅନ୍ତି, କାରଣ ଏହି ଚତୁର ଟରଣୀଦଳ କେତେକ ଭଲ ଭଲ ଓକିଲଙ୍କଠାରୁ ଛ’ପଣି ଆଦାୟକରି ମକଦ୍ଦମା ଯୋଗାନ୍ତି । ଅନ୍ତରଙ୍ଗ ବନ୍ଧୁମାନଙ୍କୁ ଧନଞ୍ଜୟ କଥାପ୍ରସଙ୍ଗରେ କହନ୍ତି, ‘‘ଏ ବ୍ୟବସାୟ ମୋ ପାଇଁ ନୁହେଁ, ଅଥବା ମୁଁ ଏ ବ୍ୟବସାୟର ଉପଯୁକ୍ତ ନୁହେଁ ।’’ ଈଷତ୍ ହାସ୍ୟକରି କବିବାଣୀ ଉଦ୍ଧାର କରି କହନ୍ତି, ‘‘ମୋ ଜୀବନ ଗଢ଼ା ଅନ୍ୟ ଉପାଦାନେ ।’’

ଆହୁରି କହନ୍ତି, 'ଅବଧୂତଙ୍କ ଚବିଶ ଗୁରୁମାନଙ୍କ ମଧ୍ୟରୁ ପିଙ୍ଗଳା ଗୋଟିଏ । ଆଧୁନିକ କାଳର କେତେକ ଜୁନିଅର ଓକିଲଙ୍କୁ ପାଇଥିଲେ, ଅବଧୂତ ଆଉ ପିଙ୍ଗଳାଙ୍କୁ ଗୁରୁ ବା ଗୁର୍ବୀ କରି ନ ଥାନ୍ତେ । ଅନିଶ୍ଚିତତା ଏ ବ୍ୟବସାୟର ଗୋଟିଏ ପ୍ରଧାନ ଦୋଷ । ଅଶାନ୍ତି, ଅସ୍ଥିରତା, ଅଶିକ୍ଷିତ ଲୋକମାନଙ୍କ ସହିତ ସର୍ବଦା ବ୍ୟବହାର ଅନ୍ୟତମ ଦୋଷ । ଅନେକ ସମୟରେ ଭଲ ମନ୍ଦ, ନ୍ୟାୟ ଅନ୍ୟାୟ ନ ବୁଝି ନ ସୁଝି କେବଳ ବ୍ୟବସାୟ ହିସାବରେ ମକଦ୍ଦମା ନେବାକୁ ହୁଏ । ଅବଶ୍ୟ ଏ ବ୍ୟବସାୟରେ ଅନେକ ଶିଖିବାର, ଜାଣିବାର, କରିବାର ଅଛି । ବୁଦ୍ଧି ବିକଶିତ ହେବା ପକ୍ଷରେ, ଦୁସ୍ଥ ଦରିଦ୍ରଙ୍କୁ ସାହାଯ୍ୟ କରିବା ବିଷୟରେ, ଦେଶର ଉପକାର କରିବା ବିଷୟରେ ଏ ବ୍ୟବସାୟ ବଡ଼ ସୁଯୋଗ ପ୍ରଦାନ କରେ । ତଥାପି କେଜାଣି କାହିଁକି, ଏ ବ୍ୟବସାୟ ମୋତେ ଭଲ ଲାଗୁ ନାହିଁ ।''

ଧନଞ୍ଜୟଙ୍କ ପ୍ରତିବାସୀ ଘନଶ୍ୟାମ ଭାରି ସଂସାରୀ, ଚତୁର ବ୍ୟବସାୟଜ୍ଞ । ସେ ଧନଞ୍ଜୟଙ୍କ ପରି ଜଜ୍ ବା ସବ୍‌ଜଜ୍‌ଙ୍କ ମିସଲରେ ବସିରହି ବଡ଼ ମକଦ୍ଦମା ଓ ଭଲ ଭଲ ପ୍ରବୀଣ ଓକିଲଙ୍କ ଜେରା ଓ ଯୁକ୍ତି ଶୁଣି ସମୟ ବୃଥା ନଷ୍ଟ କରନ୍ତି ନାହିଁ । ଆଶୁଲାଭ ଆଶାରେ ଜଜ୍ କୋର୍ଟ ମକଦ୍ଦମା ନେଇ ବେଶ୍ ଚାରିପଇସା ଲାଭ କରିନିଅନ୍ତି । ଇତି ମଧ୍ୟରେ କଟକରେ ଖଣ୍ଡିଏ କୋଠା ଆରମ୍ଭ ହେଲାଣି । ଗ୍ରାମରେ ଜମିବାଡ଼ି କିଣା ହେଉଅଛି । ଗ୍ରାମରେ ଦିନେ ତାଙ୍କର ପିତା ଅପାର ଆନନ୍ଦ ଓ ଚିତ୍ତପ୍ରସାଦ ସମ୍ଭୋଗକରି କହିଲେ, ''ଘନ ଆମର କୁଳପାବନ ସତ୍‌ପୁତ୍ର । ସେ ଏକା ମୁଖିଆ ଓକିଲଟାଏ ହେବ । ତା' ଛାତକ ଦେଖି ସୁବଳ ନାୟକେ କହିଅଛନ୍ତି, ସେ ରାଜଚକ୍ରବର୍ତ୍ତୀ ହେବ ।''

ଅନନ୍ତା ଚାକର ବେଙ୍ଗଳା ପକାଉ ପକାଉ କହିଲା, ''ସାନ୍ତେ, ବାବୁ ତ ଆଖିରୁ କଳା କାଢ଼ିନେବେ । ମେଜ ବାଡ଼େଇ, ଗର୍ଜନ କରି, ଜବାବ ସୁଆଲ କରି ସତକୁ ମିଛ, ମିଛକୁ ସତ କରିଦେବେ । ତାଙ୍କ ଜବାବ ସୁଆଲ ଢେରାରେ ଖୁସିହୋଇ ଦୁଇ ପକ୍ଷରେ ମୁଦେି ମୁଦାଲା ତାଙ୍କୁ ....'' ବୁଢ଼ା ଶେଷ କଥା ଆଶଙ୍କାକରି ଜିଭ କାମୁଡ଼ି ଚାକରକୁ ଆକଟି ମେରି ପାଖରୁ କୁଟା ଅଲଗାଇ ଦେବାକୁ କହିଲେ ।

ଏହି ଘନଶ୍ୟାମବାବୁଙ୍କ ମନକୁ ଧନଞ୍ଜୟଙ୍କ କଥା ଆସେ ନାହିଁ । ସେ କହନ୍ତି, ନିଜର ଦୋଷ ନ ଧରି ବ୍ୟବସାୟର ଦୋଷ ଧରିବା ଉଚିତ ନୁହେଁ । ତ୍ରିପାଠୀ ବୁଢ଼ାଙ୍କ ଉଦ୍ଭଟ ଶ୍ଳୋକ ଉଦ୍ଧାରକରି କହନ୍ତି –

'ଅକର୍ମା ଭୂମିଂ ନିନ୍ଦନ୍ତି, ଜଳଂ ନିନ୍ଦନ୍ତି ରୋଗିଣଃ,
ଗଣିକାଃ ପୁତ୍ରଂ ନିନ୍ଦନ୍ତି, ଚୌରୈଃ ନିନ୍ଦ୍ୟତେ ଚନ୍ଦ୍ରମାଃ ।'

ନ କରିପାରିବ ତ ଯାଅ, ଅବଧାନୀ ସ୍କୁଲମାଷ୍ଟରୀ କର, ବ୍ୟବସାୟକୁ ନିନ୍ଦୁଚ କିଆଁ ? ଆଚ୍ଛା କହ ତ ଭଲା, ଆଉ କେଉଁ ବ୍ୟବସାୟରେ ଲାଟ୍ ସାହେବଙ୍କ ସଙ୍ଗେ କରମର୍ଦ୍ଦନ କରାଯାଇପାରେ ? ଓକାଲତି କର, ଗୁଣ ଦେଖାଅ, ପଇସା ଜମାଅ, ମ୍ୟୁନିସିପାଲିଟି କମିସନର ହୁଅ, ଲୋକାଲ ବୋର୍ଡ଼, ଡିଷ୍ଟ୍ରିକ୍ ବୋର୍ଡ଼ ମେମ୍ବର, ଭାଇସଚେୟାରମାନ୍ ବା ଚେୟାରମାନ୍ ହୁଅ – ଦେଶ ଭିତରେ ଜଣେ ମୁଖିଆ ମନୁଷ୍ୟ ହେବ । ବ୍ୟବସାୟର ସୁବିଧା ଓ ଧନ ମାନର ବୃଦ୍ଧି ସଙ୍ଗେ ସଙ୍ଗେ ନିଜେ ଲାଟ୍ ବଡ଼ଲାଟ୍ ଦିନେ ତୁମ୍ଭ ସଙ୍ଗରେ ହସି ହସି କଥାକହିବେ, ବସି ଖାନା ଖାଇବା ତ ଅଧିକ କଥା – କିଲଟର କମିସନରଙ୍କୁ ପଚାରେ କିଏ ? ସେ ତ ଘରକା ମୁର୍‌ଗି, ଡାଲ୍ ବରାବର, ଇତ୍ୟାଦି ଇତ୍ୟାଦି ।

ଘନଶ୍ୟାମଙ୍କ ବକ୍ତୃତା ଶୁଣି ଧନଞ୍ଜୟ ମୁରକି ମୁରକି ହସି କହନ୍ତି, ‘‘ଆରେ ଘନ, ତୋ ବକ୍ତୃତା ସ୍ରୋତ ବନ୍ଦକର । ‘ରାମ’ କହ, ‘କୃଷ୍ଣ’ କହ, ଭଲକଥା କହ । ମୁଁ ତ ନିଜେ ମାନୁଛି ମୋର ଦୋଷ–ତୋର ଏତେ ବକାବକି କରିବାର ଦରକାର କ’ଣ ?’’ ମନେ ମନେ ତୁଳସୀ ଦାସଙ୍କ ଦୋହା ଆଉଡ଼ାଇ କହନ୍ତି –

‘ସବ୍‌ମେ ରସିଏ ସବ୍‌ମେ ବସିଏ ସବ୍‌କା ଲିଜିଏ ନାମ,
ହାଁଜି ହାଁଜି କରତେ ରହିଏ ବଇଠେ ଆପନା ଠାମ ।’

ହୃଦୟରେ ଜୀବନର ଗୋଟିଏ ମହତ୍ ଉଦ୍ଦେଶ୍ୟ ପୋଷଣକରି ତାହା କାର୍ଯ୍ୟରେ ପରିଣତ କରିବା ଆଶାରେ ବ୍ୟାକୁଳ ଥାଆନ୍ତି । ଧନଞ୍ଜୟଙ୍କ ମୁଖରେ ଈଷତ୍ ବିଷାଦର ଛାୟା ପଡ଼ିଥାଏ । ତାହାର କାରଣ କ’ଣ ଆଶୁ ବୈଷୟିକ ଉନ୍ନତିର ଅଭାବ ? ସେ ତ ନିଜେ ଇଚ୍ଛାପୂର୍ବକ ଆଶୁ ଲାଭକୁ ତ୍ୟାଗ କରିଅଛନ୍ତି । ବନ୍ଧୁ ଘନଶ୍ୟାମଙ୍କ ପନ୍ଥା ତାଙ୍କ ନିମିତ୍ତ ମଧ୍ୟ ଉନ୍ମୁକ୍ତ । ଏହି ବିଷାଦକାଳିମାର ଅନ୍ୟ କାରଣ ଥିଲାପରି ବୋଧହୁଏ । ଅୟସ୍କାନ୍ତ ମଣି ଯେପରି ସମସ୍ତ ଅବସ୍ଥାରେ ମେରୁ ଉନ୍ମୁଖ ହୋଇଥାଏ, ଧନଞ୍ଜୟ ତାଙ୍କର ସକଳ ସୁଖ ଦୁଃଖ, ବିଷୟ ଜଞ୍ଜାଳ ମଧ୍ୟରେ ନୀଳାବ୍‌ଜ-ଯୁଗ୍ମ-ଶୋଭିତ ଲାବଣ୍ୟସରସୀସଙ୍କାଶ ଗୋଟିଏ ଦେବକନ୍ୟାର (?) ମୁଖପଦ୍ମକୁ ଧ୍ରୁବତାରା ସଦୃଶ ହୃଦୟରେ ଧାରଣ କରିଥାନ୍ତି । ସେ ସ୍ୱର୍ଣ୍ଣପଦ୍ମ ଲାଭାଶା ସୁଦୂରପରାହତ, ତେଣୁ ବିଷାଦ । ସେ ମୁଖପଦ୍ମ କାହାର ? ପାଠକ ଆଖଣ୍ଡଳମଣିଙ୍କ ପବିତ୍ର ବେଢ଼ା ମଧ୍ୟରେ ସଂଘଟିତ ବିଷୟ ସ୍ମରଣ କରନ୍ତୁ । ଜଣକର ଏକାନ୍ତ ତଦ୍‌ଗତ ଭାବନାର ଛାୟା [illegible] ପ୍ରାଣରେ ପତିତ ହୁଏ କି ?

## ଏକାଦଶ ପରିଚ୍ଛେଦ

ପାଇକରାଙ୍କ ମାତୃକ୍ରିୟାର ଏକ ବର୍ଷ ଅନ୍ତେ ବିବାହ ବିଷୟ ଉଭୟ ପକ୍ଷର ସ୍ୱୀକାର ସମ୍ମତି ଆଦାନପ୍ରଦାନର ଆୟୋଜନ ହେଲା । ଅଳଙ୍କାର, ଯାନବାହନ, ଗୋ, ଭୂମି ସମସ୍ତ ଦେବାନେବା ବିଷୟ ସ୍ଥିର ହୋଇଥିଲା । କେବଳ ଗୋଟିଏ ବିଷୟରେ ମତାନ୍ତର ହେଲା । ପାଇକରାଙ୍କ ଭାଇ ପୁରଞ୍ଜୟ କହିଲେ ଯେ, ଆଖଣ୍ଡଳମଣିଙ୍କ ବିଜେଆସ୍ଥାନରୁ ଚାରିପଣ ଯୌତୁକ ଦେବାକୁ ହେବ । ଏହି ବିଷୟ ଶୁଣି ହରିଚନ୍ଦନ ବିଷଣ୍ଣ ହେବାର ପାଠକେ ଜାଣିଅଛନ୍ତି । ଏଥିରେ କନ୍ୟାପକ୍ଷ ସମ୍ମତ ହେଲେ ନାହିଁ । କାରଣ, ବିଜେଆସ୍ଥାନ ହରିଚନ୍ଦନଙ୍କର ସେ ଖଣ୍ଡମଣ୍ଡଳରେ ବିଶିଷ୍ଟତାର ହେତୁ । ଏଥିନିମିତ୍ତ ପାଇକରାଙ୍କ ବଂଶ ସହିତ ବହୁ ମାଲିମକଦ୍ଦମା ଲାଗି ପ୍ରିଭି କାଉନ୍‌ସିଲ ପର୍ଯ୍ୟନ୍ତ ଯାଇ ମୀମାଂସା ହୋଇଅଛି । ଏଥିରେ ବଂଶର ଗୌରବହାନି ଓ ତହିଁରେ କଳଙ୍କ କାଳିମା ଲେପନ କରିବାକୁ ବଂଶର କେହି ରାଜି ହେଲେ ନାହିଁ । କନକଲତା ମୁହଁକୁ ଅନାଇଁ ବଡ଼ ଦୁଇ ଭାଇ କିଛି କହିପାରିଲେ ନାହିଁ । ହରିଚନ୍ଦନ 'ନ ଯଯୌ ନ ତସ୍ଥୌ' ହୋଇ ତଟସ୍ଥ ହେଲେ । କେବଳ ରାଜେନ୍ଦ୍ର ଯେ କି ଉପନ୍ୟାସ-ସୁଲଭ କଳ୍ପନା ଭାବରେ ଜଗତକୁ ଦେଖୁଥିଲେ, ସେ ଏ ବିଜେଆସ୍ଥାନକୁ ମାଗିବା ଲୋକର ଓ ଦେବାକୁ କୁଣ୍ଠିତ ହେବା ଲୋକର ବୁଦ୍ଧିମତ୍ତାକୁ କୃପାଦୃଷ୍ଟିରେ ଅନାଇଲେ । ବିବାହକୁ କେବଳ ପ୍ରେମପରତନ୍ତ୍ର ନ କରି ଗୋଟିଏ କ୍ରୟବିକ୍ରୟ ବ୍ୟାପାର କରିବା ପ୍ରତି ତାଙ୍କର କ୍ଷୋଭ ଓ ଘୃଣା ଶାର୍ଦ୍ଦୂଳବତ୍ ଗର୍ଜ୍ଜନ କଲା । ହରିଚନ୍ଦନଙ୍କ ତୃତୀୟ ପୁତ୍ର ପଣକଲେ ଯେବେ ବିଜେଆସ୍ଥାନରୁ କପର୍ଦ୍ଦକ ଯୌତୁକସ୍ୱରୂପ ପ୍ରଦତ୍ତହୁଏ, ତେବେ ସେ ଗୃହରେ ଅଗ୍ନିସଂଯୋଗ କରିବେ, ଆତ୍ମହତ୍ୟା କରିବେ କିମ୍ବା ଦେଶତ୍ୟାଗୀ ହେବେ । ତୃତୀୟଟି ପରି ନିର୍ଦ୍ଦୋଷ ନିର୍ବାଚନ ଥିବା ସ୍ଥଳେ ପ୍ରଥମ ଦିଓଟିର, ବିଶେଷତଃ ଭୟାବହ ଦ୍ୱିତୀୟ ପ୍ରସ୍ତାବର ନାମୋଲ୍ଲେଖ ଯେ କାହିଁକି କଲେ, ତାହା ସେ ହିଁ ଜାଣନ୍ତି । ସ୍ୱଭାବୋ ମୂର୍ଦ୍ଧ୍ନିବର୍ତ୍ତତେ ।

ଯାହାହେଉ କନକଲତାର କପାଳ ଫାଟିଲା । ବିବାହ ପ୍ରସଙ୍ଗ ଭାଙ୍ଗିଗଲା । ପାଇକରା ପ୍ରତିଜ୍ଞାକଲେ, ନିକଟତମ ଲଗ୍ନରେ ପୁତ୍ରର ବିବାହ ଅନ୍ୟତ୍ର ଦେବେ । ତାଙ୍କର ଯୋଗ୍ୟପୁତ୍ର ପ୍ରତି ସେ ଅଞ୍ଚଳର ବହୁ ଧନାଢ଼୍ୟ ଓ କୁଳୀନ କନ୍ୟାଦାୟଗ୍ରସ୍ତ ବ୍ୟକ୍ତି ସତୃଷ୍ଣ ନୟନରେ ଅନାଇରହିଥିଲେ । ରାତ୍ରିଟି ଅଶାନ୍ତିରେ

କଟାଇ ପ୍ରାତଃକାଳରେ ଉଠି ପୁତ୍ର ସହିତ ସାକ୍ଷାତ୍ ଓ ବିବାହ ବିଷୟରେ ପ୍ରସ୍ତାବ କରିବାକୁ ଇଚ୍ଛା କରନ୍ତେ, ଚାକର କହିଲା, ବାବୁ ପୁରୀ ଗଲେଣି । ରାତ୍ରରୁ ପାହାନ୍ତରା କରିବାରୁ ପିତାଙ୍କ ନିଦ୍ରାଭଙ୍ଗ କରି ଦେଖା କରିପାରିଲେ ନାହିଁ । ପାଇକରା କହିଲେ, "ହଁ, କଳିକାଳ ! ଟୋକାଟା ବିଗିଡ଼ିଗଲା । ବଂଶମର୍ଯ୍ୟାଦା ଜ୍ଞାନ ହେଲା ନାହିଁ ।" ପାଇକରା ଗୃହିଣୀ ଅନ୍ତରାଳରେ ଥାଇ ବାହୁନି କାନ୍ଦିଉଠିଲେ । ବାହୁନାର ବିଷୟ ଏହି–"ପୁଅର ମନରେ ସୁଖ ନାହିଁ; ଏତେଦିନ ଅପେକ୍ଷା କରି ବୋହୂମୁହଁ ଦେଖିବି ବୋଲି ଆଶା କରିଥିଲି– ଅକାଳରେ ସବୁ ଆଶା ଭାଙ୍ଗିଗଲା । ଚନ୍ଦ୍ରମା ପରି ବୋହୂର ମୁହଁ, ଚମ୍ପାଫୁଲ ପରି ଦେହର ରଙ୍ଗ, କଜଳପାତି ପରି ଚକ୍ଷୁର ବର୍ଣ୍ଣ ଓ ଆକାର, ଲକ୍ଷ୍ମୀ ପରି ରୂପଗୁଣବତୀ । ଏପରି କନ୍ୟାରତ୍ନ ହରାଇବସିଲେ । ଟଙ୍କାକଉଡ଼ି ଜମିବାଡ଼ି କ'ଣ ହେବ ? ପୁଅ ଥିଲେ କେତେ କମେଇବ..." ଇତ୍ୟାଦି, ଇତ୍ୟାଦି ।

ଏପରି କବିତା ଛନ୍ଦରେ ବର୍ଣ୍ଣନା ଦୁର୍ଯ୍ୟୋଧନଙ୍କ ଉଆସରେ ମହାଭାରତ ଯୁଦ୍ଧର ଭାନୁମତୀଙ୍କ ତୀବ୍ର ସମାଲୋଚନାବତ୍ ପାଇକରାଙ୍କୁ ଶେଳବିଦ୍ଧ କଲା । ସେ ସେଠାରେ ନ ରହି, ଅଶୁଭସୂଚକ ବିଳାପ ବନ୍ଦ କରିବାର ଆଦେଶ ପ୍ରଚାରକରି ଅନ୍ୟତ୍ର ଗମନକଲେ । ସେ ମନେକଲେ ପୁରୁଷର ଦୃଢ଼ପ୍ରତିଜ୍ଞାବଦ୍ଧକୁ ନାରୀଜାତିର ବିଳାପରୂପ ଜଳପ୍ରବାହ ବିରୋଧରେ ଦୃଢ଼ତର କରିବାକୁ ହେବ । ହାୟ ! ହରିଚନ୍ଦନଙ୍କ ପରିବାରର ସ୍ତ୍ରୀ ସ୍ୱାମୀ ପରାମର୍ଶର ଅଭାବ ଏ ପରିବାରରେ ସ୍ପଷ୍ଟ ଲକ୍ଷିତ ହୁଏ । ଏଠାରେ ସତୀ ଗୃହଲକ୍ଷ୍ମୀ ଗୃହକର୍ତ୍ତାଙ୍କର ସହଧର୍ମିଣୀ ନୁହନ୍ତି, ଗୃହର ରକ୍ଷିଣୀ ମାତ୍ର !

ବାସ୍ତବିକ ଏପରି ଯୌତୁକ ଦାବି ଯେ ଅନ୍ୟାୟ, ଏହା ସମସ୍ତେ ବେଶ୍ ବୁଝିପାରିଲେ । କେବଳ ବିଷକୁମ୍ଭ ପୟୋମୁଖ ତୋଷାମୋଦକାରୀ ଦଳ ପାଇକରାଙ୍କ ପୋଷକତା କଲେ । ସେମାନେ ଯେବେ ଆପ୍ତବାକ୍ୟଦ୍ୱାରା ଲୋଭାନ୍ଧ ପାଇକରାଙ୍କୁ ନ୍ୟାୟପଥ ପ୍ରଦର୍ଶନ କରିଥାଆନ୍ତେ, ତା'ହେଲେ ଉଭୟ ପରିବାର କେତେ ଅଶାନ୍ତିରୁ ରକ୍ଷା ପାଇ ନ ଥାନ୍ତେ ! ଆହା ! ଏହି ବିବାହପଣ କେତେ ଅଶାନ୍ତି ବୁଣୁଛି ! ଧିକ୍ ତୁ କାଞ୍ଚନ ! ତୁ କି ସ୍ନେହ, ମମତା, ଜାତି, ଧର୍ମ, ଭଦ୍ରତା, ଶିଷ୍ଟତା, ପ୍ରେମପ୍ରଣୟ ସମସ୍ତଙ୍କ ମସ୍ତକରେ ପଦାଘାତ କରିପାରୁ ? ଧିକ୍ ଯୌତୁକ ! କେବେ ତୋ କବଳରୁ ଲୋକେ ମୁକ୍ତି ଲଭିବେ ? ତୁ ଯେ ବିଷବୃକ୍ଷ ! ଦିନକୁଦିନ ମୂଳବିସ୍ତାରପୂର୍ବକ ସମାଜର

ଭିତ୍ତିକୁ ଦୃଢ଼ରୁ ଦୃଢ଼ତରରୂପେ ଆଚ୍ଛାଦନ, ଆକର୍ଷଣ କରି ବିକଳ, ବିକୃତ ଓ ହୃଦୟହୀନ କରିଦେଉଅଛୁ । ହାୟ କନଲକତା ! ତୁମ୍ଭର ଦଶା କ'ଣ ହେବ ? ହେ ଧନଞ୍ଜୟ ! ତୁମ୍ଭର ଶିକ୍ଷା କି ଏ କ୍ଷେତ୍ରରେ ଅକାରଣ ? ସରଳା ଅବଳା କୁଳବାଳାକୁ ମର୍ମାନ୍ତକ ଦୁଃଖ ଶୋକ ଏମନ୍ତ କି ମୃତ୍ୟୁର କରାଳ କବଳରୁ ରକ୍ଷା କରିବାକୁ କି ତୁମେ ସମର୍ଥ ହେବ ନାହିଁ ?

ହରିଚନ୍ଦନ ଉନ୍ମନ । ତାଙ୍କ ଗୃହିଣୀ ଆହାର ନିଦ୍ରା ପରିତ୍ୟାଗ କରି ଦିନକୁ-ଦିନ ଦୁର୍ବଳ ହେଲେ । ତୃତୀୟ ପୁତ୍ର କଠୋର ଦୃଢ଼ପ୍ରତିଜ୍ଞ ହୋଇ କନକଲତାର ବିବାହର ଯୋଗାଡ଼ ଅନ୍ୟତ୍ର କରିବାରେ କୃତସଙ୍କଳ୍ପ ହେଲେ । ଏଣେ କନକଲତା କୃଷ୍ଣପକ୍ଷର ଶଶିକଳା ପରି ଅନୁଦିନ ମଳିନା ହୋଇଗଲା । ଶିଶିରପାତରେ ମୃଣାଳଲତାପ୍ରାୟ ଦିନକୁଦିନ ଝାଉଁଳିଗଲା । ଶେଷରେ ଉତ୍କଟ ଜ୍ୱର ଓ ହୃଦ୍‌ରୋଗରେ ଆକ୍ରାନ୍ତହୋଇ ଶଯ୍ୟାଶାୟିନୀ ହେଲା । ତାହାକୁ ଦେଖିବାକୁ ଆସି ବୃଦ୍ଧ ଶତପଥୀଏ ଶ୍ଳୋକ ଆବୃତ୍ତି କଲେ–

ଯଚ୍ଚିନ୍ତିତଂ ତଦିହ ଦୂରତରଂ ପ୍ରୟାତି
ଯଚ୍ଚେତସା ନ ଗଣିତଂ ତଦିହାଭ୍ୟୁପୈତି ।
ପ୍ରାତର୍ଭବାମି ବସୁଧାଧିପ ଚକ୍ରବର୍ତ୍ତୀ
ସୋଽହଂ ବ୍ରଜାମି ଗହନଂ ଜଟିଳସ୍ତପସ୍ୱୀ ।

ସ୍ୱୟଂ ମହାପୁରୁଷ ଜୀବନରେ ତ ଏପରି ହେଲା, ଅନ୍ୟେ ପରେ କା କଥା । ସଖୀମାନେ ମନେକଲେ, ବ୍ରାହ୍ମଣ ପଣ୍ଡିତ କଲ୍ୟାଣ କରିଗଲେ – କନକର ଦେହ ଭଲ ହୋଇଯିବ । କିନ୍ତୁ କନକର ରୋଗ ଯେ ଦେହରେ ନୁହେଁ, ମନରେ । ଶେଷରେ ରାଜେନ୍ଦ୍ର ଏ ଦୃଶ୍ୟ ସହି ନ ପାରି ପିତାଙ୍କୁ କହିଲେ, ''ବିଜେ ଆସ୍ଥାନରେ ମୋର ଯେଉଁ ଅଂଶ ତାହା କନକକୁ ଯୌତୁକ ଦିଆଯାଉ ।'' ଜନନୀ ଆଶୀର୍ବାଦ କଲେ, ''ବାବାରେ, ତୋର କୋଟି ପରମାୟୁ ହେଉ, ଅକ୍ଷୟକୀର୍ତ୍ତି ଅର୍ଜନକର ।'' ତାରାପୁରର ଅର୍ଜୁନବାବୁ ଡାକ୍ତର ଆସି ଆନୁପୂର୍ବକ ବିବରଣ ଶୁଣି, 'ସମୁଦ୍ର ହାଉଆରେ କିଞ୍ଚିତ୍ ରୋଗୋପଶମ ହୋଇପାରେ' କହି ରୋଗୀକୁ ପୁରୀ ପରିବର୍ତ୍ତନ କରିବାକୁ ଉପଦେଶ ଦେଲେ । କ୍ଷେତ୍ରେ କର୍ମ ବିଧୀୟତେ ।



## ଦ୍ୱାଦଶ ପରିଚ୍ଛେଦ

ଗରୁଡ଼ସ୍ତମ୍ଭ ନିକଟରେ ହରିଚନ୍ଦନ ପରିବାର ଦଣ୍ଡାୟମାନ । କାହା ମନରେ କେଉଁ ଭାବ । 'କୃପାସିନ୍ଧୁ ବଦନ କରି ଅବଲୋକନ କେଉଁ କରମହୀନ ଜନ' ଚଉତିଶା ବୋଲି ହରିଚନ୍ଦନଙ୍କ ଦୁଇ ଚକ୍ଷୁରୁ ଦରବିଗଳିତ ଧାରା ବହିଯାଉଅଛି । ରାଜେନ୍ଦ୍ରଙ୍କ ମନମଧ୍ୟରେ ଯୁଗଯୁଗାନ୍ତବ୍ୟାପୀ ଏହି ମନ୍ଦିରର ଇତିହାସର ଛାୟା ପତିତ ହୋଇ ତାଙ୍କୁ ବିସ୍ମୟବିହ୍ୱଳ କରିଦେଇଛି । ସେ ବିସ୍ମୟବିସ୍ଫାରିତ ନେତ୍ରରେ ସେହି ଅମ୍ବରଚୁମ୍ବୀ ମନ୍ଦିରତ୍ରିତୟ ବିଷୟ ଚିନ୍ତା କରୁଅଛନ୍ତି – ''ବଡ଼ଦେଉଳ, ବଡ଼ଦାଣ୍ଡ, ବଡ଼ପାହାଚ, ବଡ଼ପଣ୍ଡା ଏଠାରେ ସବୁ ବଡ଼ । ଏଠାରେ ଶ୍ମଶାନ ସ୍ୱର୍ଗଦ୍ୱାର । ଧନ୍ୟ ହେ ନୃପତି ଇନ୍ଦ୍ରଦ୍ୟୁମ୍ନ ! ଧନ୍ୟ ଧନ୍ୟ ସମ୍ରାଟ୍ ଅନଙ୍ଗଭୀମଦେବ ! ଧନ୍ୟ ତୁମ୍ଭର କୀର୍ତ୍ତିମୟ ଜୀବନ ! ସହସ୍ର ସହସ୍ର ବର୍ଷ କାଳର କରାଳ ଦନ୍ତ ତୁମ୍ଭର କୀର୍ତ୍ତିକୁ ବିନଷ୍ଟ କରିପାରି ନାହିଁ । କି ମହାବିରାଟ କଳ୍ପନା ଘେନି ଏହି ମହାବ୍ୟାପାରର ଅନୁଷ୍ଠାନ କରିଥିଲ ! ଏହି ପବିତ୍ର ସଂକଳ୍ପ ଆରବ୍‌ଧ କରିଥିଲ ! ଯୁଗଯୁଗାନ୍ତବ୍ୟାପୀ ଦେଶ-ଦେଶାନ୍ତବ୍ୟାପୀ, ଉତ୍ତରରେ ତୁଷାରକିରୀଟ ହିମାଦ୍ରିଠାରୁ ଦକ୍ଷିଣରେ ସିନ୍ଧୁନୀରଧୌତ କନ୍ୟା-କୁମାରୀ, ପୂର୍ବରେ ବ୍ରହ୍ମଦେଶରୁ ପଶ୍ଚିମରେ ପଞ୍ଚନଦ ପର୍ଯ୍ୟନ୍ତ ଦିଗଦେଶବ୍ୟାପୀ ଜନପଦରୁ କୋଟି କୋଟି ନରନାରୀ, ଶଙ୍କର, କବିର, ଚୈତନ୍ୟାଦି କେତେ କେତେ ମହାପୁରୁଷ ଆସି ଐଶୀ ଶକ୍ତିର କେନ୍ଦ୍ରସ୍ଥଳ ଏହି ଶ୍ରୀକ୍ଷେତ୍ରରେ ଲୀଳା କରିଗଲେ । ହିନ୍ଦୁ-ବୌଦ୍ଧ-ଶୈବ-ବୈଷ୍ଣବ-ବୈଦିକ-ପୌରାଣିକ-ଧର୍ମମାନଙ୍କର ମହାସମନ୍ୱୟସ୍ଥଳୀ ଏହି ପୁଣ୍ୟ କ୍ଷେତ୍ରର କି ମହୀୟସୀ ଶକ୍ତି ! ଧନ୍ୟ ଏହି ବୀଚିମାଳାଶୋଭିତ ମହୋଦଧିବିଧୌତ ପୁଣ୍ୟସ୍ଥଳୀ ମର୍ତ୍ତ୍ୟବୈକୁଣ୍ଠ !'' କନକଲତା ମନରେ କି ଏକ ଅପୂର୍ବ ଶକ୍ତିର ସଞ୍ଚାର ହେଲା । ଜଗନ୍ନାଥ ସକଳ ଦୁଃଖର ହରଣକର୍ତ୍ତା । ହରି ତାଙ୍କର ନାମ । ଦେବଦର୍ଶନ କରି ହରିଚନ୍ଦନ ବେଢ଼ା ପରିକ୍ରମାପୂର୍ବକ ପୂର୍ବ-ନିର୍ଦ୍ଦିଷ୍ଟ ଗୃହରେ ବାସକଲେ ।

ପ୍ରତିଦିନ ସକାଳୁ ଏହି ଯାତ୍ରୀମାନେ ସମୁଦ୍ର-ସ୍ନାନ କରନ୍ତି । ଦିନେ କନକଲତା ଦେଖିଲା–ସମୁଦ୍ରକୂଳରେ ଏ କିଏ ! ଚାରି ଚକ୍ଷୁ ମିଳିତ ହେଲା । ହଠାତ୍ ପ୍ରଣୟର ଗୋଟିଏ ବୈଦ୍ୟୁତିକ ଧାରା ତାହା ଧମନୀ ମଧ୍ୟରେ ସଞ୍ଚାରିତ ହେଲା । ଏ ସେହି ମିଳନ ଯାହା ଥରେ ଆଖଣ୍ଡଳମଣି ବେଢ଼ାରେ ହୋଇଥିଲା । ରୂପର କି ପରିବର୍ତ୍ତନ ! ଏହାଙ୍କ ମନରେ କି ଏହିପରି ଦୁଃଖକୀଟ ପ୍ରବେଶ କରିଅଛି ! ମୋ ଛାର ପାଇଁ ଏତେ କଷଣ ସହିଲେ ! ଧନଞ୍ଜୟ ରାଜେନ୍ଦ୍ର ପରସ୍ପରକୁ ଆଲିଙ୍ଗନ କଲେ । କନକଲତା ସେ ଆଲିଙ୍ଗନ ଅନୁଭବ କଲା । ତାହାର ଧମନୀ ଭିତରେ ତ ସେହି ହରିଚନ୍ଦନ ରକ୍ତଧାରା ପ୍ରବାହିତ ହେଉଅଛି । ଧନଞ୍ଜୟ ମଧ୍ୟରେ ମଧ୍ୟ ସେହି ବୈଦ୍ୟୁତିକ ଧାରା ପ୍ରବାହିତ ହୋଇ ତାଙ୍କର ରୋମାଞ୍ଚ ସମ୍ପାଦନ କଲା । ଯେଢ଼େ ବନ୍ଧୁ ହେଉ ପରସ୍ପରର ଆଲିଙ୍ଗନରେ ଏତାଦୃଶ ଅନୁଭୂତି ଅସମ୍ଭବ । ଏଥିରେ ବନ୍ଧୁବନ୍ଧୁର ଆଲିଙ୍ଗନ ଛଡ଼ା ଆଉ କିଛି ଥିଲା ।

ଧନଞ୍ଜୟ ଦୂରରେ ଦଣ୍ଡାୟମାନ ହରିଚନ୍ଦନଙ୍କୁ ପ୍ରଣାମକରି ରାଜେନ୍ଦ୍ର ଜନନୀଙ୍କ ପାଦତଳେ ସାଷ୍ଟାଙ୍ଗ ପ୍ରଣତ ହେଲେ । ସେହି ପରିଚିତ ଧନ-ଜନ-ଗୋପଲକ୍ଷ୍ମୀ ଆଶୀର୍ବାଦଧାରା । କିନ୍ତୁ ଏଥର ସେ ଧାରା ପଛରେ ଦରବିଗଳିତ ନୟନାଶ୍ରୁଧାରା ପ୍ରବାହିତ ହେଲା । ସେ ଅଶ୍ରୁବିନ୍ଦୁ ଯେପରି ପ୍ରଜ୍ୱଳିତ ତରଳାଗ୍ନିବତ୍ ଅନୁତପ୍ତ ଧନଞ୍ଜୟର ହୃଦୟ ବିଦ୍ଧ କଲା । ସେ ସାଷ୍ଟାଙ୍ଗ ପ୍ରଣିପାତ କରି କହିଲେ, ‘‘ମା’ ! ମୋର ସମସ୍ତ ଦୋଷ ମାର୍ଜନା କର । ଏଣେ ପିତୃବାକ୍ୟ, ତେଣେ ବିବେକର ବୃଶ୍ଚିକଦଂଶନ ସହି ସହି ମୁଁ ଅନ୍ତଃସାରଶୂନ୍ୟ ହୋଇଅଛି ।’’ ରାଜେନ୍ଦ୍ର ଜନନୀ ଆଉ ସହି ନ ପାରି ସେହି ବୀଚିବିକ୍ଷୁବ୍ଧ ସମୁଦ୍ରତଟକୁ ବିକଳ ବିଳାପଦ୍ୱାରା କ୍ଷଣେ ପ୍ରତିଧ୍ୱନିତ କଲେ ।

ହରିଚନ୍ଦନ ଏଥିରେ ବାଧାଦେଇ ଧନଞ୍ଜୟଙ୍କୁ ସଙ୍ଗରେ ଘେନି ସ୍ୱବାସାଭିମୁଖରେ ପ୍ରତ୍ୟାବୃତ୍ତ ହେଲେ । ବହୁଦିନର ବିଚ୍ଛେଦ କଷ୍ଟ କ୍ଷଣକରେ ଅଶ୍ରୁନୀରରେ କେଉଁଆଡ଼େ ଭାସିଗଲା । ନୂଆବୋହୂମାନେ ଧନଞ୍ଜୟଙ୍କୁ ପରିହାସ-ସ୍ରୋତରେ ଭସାଇଦେଲେ । ଧନଞ୍ଜୟ ଶିଶୁମାନଙ୍କୁ କ୍ରୋଡ଼ରେ ଘେନି ପ୍ରଚୁର ଆନନ୍ଦ ଉପଭୋଗ କଲେ । ଆଉ ଚିରଦୁଃଖିନୀ କନକଲତା–

ତାହା କଥା କ'ଣ କହିବୁଁ ? ତାହା ବର୍ଣ୍ଣନାଠାରୁ କଳ୍ପନାର ଅଧିକ ଉପଯୁକ୍ତ । ସେ ଯେତେବେଳେ ଅନ୍ୟାନ୍ୟ ସ୍ତ୍ରୀମାନଙ୍କ ସଙ୍ଗରେ ଗାଡ଼ିରେ ବସାକୁ ଫେରୁଥିଲା, ଗାଡ଼ିର ଛିଦ୍ରବାଟେ ଅନବରତ ସେହି ଚିରପିପାସିତ ନୟନରେ ସେହି ପ୍ରଣୟପ୍ରଫୁଲ୍ଲ ବିଷାଦମ୍ଳାନ ମୁଖପଦ୍ମକୁ ନିରୀକ୍ଷଣ କରୁଥିଲା । ଚିରତୃଷାର୍ତ୍ତ ଚାତକ ଯେପରି ନବବାରିଧାରାକୁ ସମ୍ଭାଷଣ କରେ, ସେ ସେହିପରି ନୀରବ ସମ୍ଭାଷଣ କରି ହୃଦୟ-ମନ ଶୀତଳ କଲା । ସେହି ବାରିଦବାରି ପାନକରି ତାହାର ଚିରଦଗ୍ଧ ପ୍ରାଣ ଯେପରି ଶୀତଳ ହେଲା । ଯେପରି ତାହାର ଧମନୀର ରୁଧିରଧାରା କ୍ଷିପ୍ରତର ଗତି ଗଲା, ଯେପରି ତାହାର ନିଦ୍ରିତ ସଂଜ୍ଞା ଉଦ୍‌ବୋଧିତ ହେଲା । ଦର୍ଶନରେ ତ ଏତେ, ମିଳନରେ କ'ଣ ନ ହୁଅନ୍ତା ! ବୋଧହୁଏ ବିରହବିଧୁରା ମୁମୂର୍ଷୁ ବାଳିକାଟି ବଞ୍ଚିଉଠନ୍ତା ପରା !

ପାଇକରାଙ୍କ ବାଞ୍ଛିତ ଯୌତୁକ ରାଜେନ୍ଦ୍ର ତ ଦାନ କରିବାକୁ ପ୍ରସ୍ତୁତ ଥିଲେ– କେବଳ ଧନଞ୍ଜୟଙ୍କ ଦେଶତ୍ୟାଗ ବିବାହରେ ବାଧା ଘଟାଇଥିଲା । ସେ ପିତାଙ୍କର ଏତାଦୃଶ ପ୍ରସ୍ତାବରେ ଲଜ୍ଜା ଏବଂ ଦୁଃଖରେ ମ୍ରିୟମାଣ ହୋଇଥିଲେ ଏବଂ ପ୍ରତିଜ୍ଞା କରିଥିଲେ, ଏପରି ବିକ୍ରୟମୂଳକ ବିବାହ ସେ କଦାପି କରିବେ ନାହିଁ । କିନ୍ତୁ ଅନୁତପ୍ତ ହେଲେ । ତାଙ୍କ ଦର୍ଶନରେ କନକର ରୋଗୋପଶମ ସ୍ପଷ୍ଟ ଅନୁଭବ କରି ରୋଗର ନିଦାନ ବିଷୟରେ ଆଉ କାହାରି ସଂଶୟ ରହିଲା ନାହିଁ । ସମସ୍ତେ ସ୍ୱଦେଶକୁ ଫେରିଗଲେ ଏବଂ ଅଳ୍ପଦିନ ମଧ୍ୟରେ ଚିରଈପ୍‌ସିତ ବିବାହ ସମ୍ପନ୍ନ ହେଲା । ଏକମାତ୍ର ପୁତ୍ର-ସୁଯୋଗ୍ୟ, ଧୀର, ଗୁଣବାନ୍ । ତାହାର ମନରେ ଚିରକାଳ କଷ୍ଟ ଦେଇ ଜମି ଖଣ୍ଡେ ନେବା ଯେ କେତେଦୂର ହୀନତାବ୍ୟଞ୍ଜକ, ତାହା ପାଇକରା ବୁଝିପାରିଲେ । ତେଣୁ ତାହା ହେଲା ନାହିଁ । ପରେ କନକର ପୁତ୍ରସନ୍ତାନ ହେଲେ ତାହା ନାମରେ ସେ ବିଜେଆସ୍ଥାନ ଲେଖାହେବାର ସ୍ଥିରହେଲା । ଯେତେବେଳେ ବେଦୀରେ ବରକନ୍ୟା ବସିଥାନ୍ତି ଓ ବ୍ରାହ୍ମଣମାନେ ମନ୍ତ୍ରୋଚ୍ଚାରଣ କରୁଥାନ୍ତି, ବାଳିକାସ୍କୁଲର ଶିକ୍ଷକ ବୃଦ୍ଧ ପଣ୍ଡିତ କ୍ଷେତ୍ରବାସୀ ଶତପଥୀଙ୍କ କଣ୍ଠୋଚ୍ଚାରିତ ମନ୍ତ୍ର ସର୍ବୋପରି ଶ୍ରୁତ ହେଉଥାଏ । ସେ କି ଉତ୍ସାହ ଆବେଗମୟ ସ୍ୱରରେ ବୋଲୁଥିଲେ–

ଓଁ ଯଥେନ୍ଦ୍ରସ୍ୟେନ୍ଦ୍ରାଣୀଯଥା   ରାମଦେବସ୍ୟ ସୀତା
ଯଥା ରାବଣସ୍ୟ ମନ୍ଦୋଦରୀ   ଯଥା ଧୃତରାଷ୍ଟ୍ରସ୍ୟ ଗାନ୍ଧାରୀ
ଯଥା ଶାନ୍ତନୋର୍ଗଙ୍ଗା   ଯଥା ନଳସ୍ୟ ଦମୟନ୍ତୀ
ଯଥା ସୌଦାସସ୍ୟ ମଦୟନ୍ତୀ   ଯଥା ପୁରୁରବସ୍ୟ ଉର୍ବଶୀ
ଯଥା କନକଚନ୍ଦ୍ରସ୍ୟ ଗୌରୀ   ଯଥା ଚନ୍ଦ୍ରସ୍ୟ ରୋହିଣୀ
ଯଥା ଆଦିତ୍ୟସ୍ୟ ଛାୟା   ଯଥା ବଶିଷ୍ଟସ୍ୟାରୁନ୍ଧତୀ
ଯଥା ସୁଗ୍ରୀବସ୍ୟ ତାରା   ଯଥା ଗୌତ୍ରୁମସ୍ୟାଽହଲ୍ୟା
ଯଥା ଅର୍ଜ୍ଜୁନସ୍ୟ ସୁଭଦ୍ରା   ଯଥା ଯୋଗେଶ୍ୱରସ୍ୟ ମୈତ୍ରେୟୀ
ଯଥା ବ୍ରହ୍ମଣଃ ସାବିତ୍ରୀ   ଯଥା ବିଷ୍ଣୋ ରୁକ୍ମିଣୀ
ଯଥା ଉମା ପଶୁପତେରେବଂ   ତୁଭ୍ୟମହଂ ।

## ତ୍ରୟୋଦଶ ପରିଚ୍ଛେଦ

# ବିବାହାନ୍ତେ

ଏ ଜଗତର ସ୍ରଷ୍ଟା ମଙ୍ଗଳମୟ । ସେ ଯାହା କରନ୍ତି ମନୁଷ୍ୟର ମଙ୍ଗଳ ନିମିତ୍ତ କରନ୍ତି । ଧନଞ୍ଜୟଙ୍କର କନକଲତା ସହିତ ଯେ ବିଚ୍ଛେଦ ତାହା ଆପାତତଃ ବିଷାଦମୟ ଓ ଯନ୍ତ୍ରଣାଦାୟକ ହେଲେ ହେଁ ପରିଣାମରେ ହିତକର ହେଲା । ସୁଦୀର୍ଘ ବିଚ୍ଛେଦ ପରେ ମିଳନ ବଡ଼ ମଧୁମୟ । ଯାହାପାଇଁ ମନୁଷ୍ୟ ଯେତେ ଅଧିକ ଦୁଃଖକଷ୍ଟ ସହିଥାଏ, ତାକୁ ସେ ସେତେ ଅଧିକ ମୂଲ୍ୟବାନ୍ ମଣେ । ଦର୍ଶନ ଓ ମିଳନ ପ୍ରଣୟର ଜନକ ହେଲେ ହେଁ, ବିଚ୍ଛେଦ ଓ ଅଦର୍ଶନ ତାହାର ବୃଦ୍ଧିକାରକ । ଅପ୍ରାପ୍ତିର ଆଶଙ୍କା ଯେତିକି ବଳବତ୍ତର ହୁଏ, ପାଇବାର ଇଚ୍ଛା ତେତିକି ବଳବତୀ ହୁଏ, ଏହାହିଁ ପ୍ରକୃତ ପ୍ରଣୟର ଲକ୍ଷଣ । ଯାହା ସହଜରେ ମିଳିଯାଏ, ତାକୁ ମାନବ ଅକିଞ୍ଚିତ୍କର ହେୟ ମଣେ । ବିଚ୍ଛେଦରୂପ ଅନଳରେ ଯେଉଁ ପ୍ରଣୟକାଞ୍ଚନ ପରୀକ୍ଷିତ ଓ ପବିତ୍ରୀକୃତ, ତାହା କି ଅମୂଲ୍ୟ ! ସୁତରାଂ ଧନଞ୍ଜୟଙ୍କ ବିବାହ ପ୍ରସ୍ତାବରେ ବିଘ୍ନ ଓ ବିଳମ୍ବ ତାଙ୍କର ବିବାହିତ ଜୀବନକୁ ମଧୁରତର କରିଦେଲା । ଦୁଃଖ ଯେତେବେଳେ ଆସେ, ସେ ଗହଣରେ ଅନ୍ୟ କେତେଗୁଡ଼ିଏ ଦୁଃଖ ଘେନି ଆସେ । ପୁଣି ସୁଖ ଯେତେବେଳେ ଆସେ, ସେ ତ ଏକାକୀ ଆସେ ନାହିଁ !

ଧନଞ୍ଜୟଙ୍କ ବିରହ-ବିଷାଦ ତାଙ୍କର ଚାକିରି-ଅଭାବଜ ଦୁଃଖକୁ ଶତଗୁଣିତ କରିଥିଲା । ବିବାହ ସଙ୍ଗେ ସଙ୍ଗେ ଚାକିରି ମଧ୍ୟ ଜୁଟିଗଲା, ତେଣୁ ପରବର୍ତ୍ତୀ ଜୀବନରେ ଧନଞ୍ଜୟ କନକଲତାକୁ କୌତୁକରେ କହନ୍ତି, ''ତୁମ୍ଭ ସହିତ ଚାକିରିଟିକୁ ମୋର ଭିଡ଼ି ରଖିଥିଲ, ସଙ୍ଗେ ସଙ୍ଗେ ଘେନି ଆସିଲ ।'' ଅନ୍ନପୂର୍ଣ୍ଣା ସବୁବେଳେ କହନ୍ତି, ''ବୋହୂଟି ମୋର ମା' ଜଗଦ୍ଧାତ୍ରୀ; ଆସି ଗୋଡ଼ ଦେଉଦେଉ ପୁଅର ଚାକିରି ହେଲା । ଉଷୁନା ଧାନ ଗଜା ହେଲା । ଡାଳିଗଲେ ଫୁଲ ଫୁଟିଲା । ମୋର ଘର ଉଜ୍ଜ୍ୱଳ ଓ କୁଳ ପବିତ୍ର ହେଲା । ମା' ବାପା ମୋ'ରି ଘରପାଇଁ ଏ ଲକ୍ଷ୍ମୀଟିକୁ ବଢ଼ାଇଥିଲେ ।'' ହରିଚନ୍ଦନ ଓ ପଦ୍ମାବତୀ ଏ କଥା ଶୁଣିଲେ ତାଙ୍କ ଛାତି କୁଣ୍ଢେମୋଟ ହୁଏ । ତାଙ୍କ ଦେହରେ ଚନ୍ଦନ ବୋଳା ହେଲା ପରି ମଣନ୍ତି । ମାତ୍ର ରାଜେନ୍ଦ୍ର ଶୁଣି ଆକ୍ଷେପ କରନ୍ତି,

''ହାୟ ! ଏହି କାକତାଳିକ ନ୍ୟାୟରେ କେତେ ନିର୍ଦ୍ଦୋଷ ନିରୀହା ବାଳିକା କେତେ ନିଗ୍ରହ ଭୋଗ କରନ୍ତି । ବିବାହ ପରେ କିଛି ଦୁର୍ଘଟନା ଘଟିଲେ ନବବଧୂମାନଙ୍କୁ ଅଲକ୍ଷ୍ମୀ ଓ ଦୁର୍ଯୋଗର ମୂଳ ହେତୁ ମଣି ତିରସ୍କାର ନିର୍ଯାତନା କରନ୍ତି ।''

ଯାହାହେଉ ଧନଞ୍ଜୟଙ୍କର ଆଖଣ୍ଡଳମଣି ବେଢ଼ା ମଧ୍ୟରେ ନିଜ ଶାଶୂଙ୍କ 'ଧନଜନଗୋପଲକ୍ଷ୍ମୀ' ଆଶୀର୍ବାଦ କଥା ସବୁଦିନେ ମନେଥାଏ । କନକଲତା ଯେତେବେଳେ ଦୁଃଖ କରି କହେ, ''ହାଇରେ ! ମୋ' ପରା ଛାର ପ୍ରାଣୀ ପାଇଁ ତମେ କେତେ କଷ୍ଟ ସହିଲ !'' ଧନଞ୍ଜୟ କେବେ ସସ୍ନେହ ଚୁମ୍ବନ, କେବେ କିଞ୍ଚିତ୍ କେଶ ଆକର୍ଷଣ, କେବେ ଗଣ୍ଡଦେଶରେ ଅଙ୍ଗୁଳି ସ୍ପର୍ଶାଦିପୂର୍ବକ କହନ୍ତି, ''ଯାଅହେ, ସେତେବେଳେ ତ ଖଣ୍ଡେ ଚିଠି, ଗୋଟାଏ ଖବର କିମ୍ବା କିଛି ଟିକିଏ ସଙ୍କେତ ପଠାଇଲ ନାହିଁ – ଏତେବେଳେ ସେ କଥା କହିଲେ କ'ଣ ହେବ ?''

କନକ– ମୁଁ ସ୍ତ୍ରୀଲୋକ, ମୁଁ ଫେରେ କ'ଣ କରନ୍ତି ?

ଧନଞ୍ଜୟ– କାହିଁକି, ଗୋଟାଏ ହଂସ, ଖଣ୍ଡେ ମେଘ, ଗୋଟାଏ ପାରା କିମ୍ବା କୌଣସି ଦୂତ ପାଇଲ ନାହିଁ ?

କନକ– ହାଇରେ କଳିକାଳ ! ଓଲଟା କଥା କିଏ କହିବ ? ମେଘକୁ ପରା ଯକ୍ଷ ପଠାଇଥିଲା ?

ଧନଞ୍ଜୟ – ସାଧାରଣ କଥା ତ ସାଧାରଣ– ଓଲଟା କଥା ତ ଅତି ସ୍ନେହର ଲକ୍ଷଣ ।

ଏହିପରି ରଙ୍ଗହାସ୍ୟରେ କାଳ ଅତି ଚଞ୍ଚଳ ବିତିଗଲା । ବିବାହ ପରେ ଧନଞ୍ଜୟ ଚାକିରି ଉପଲକ୍ଷ୍ୟରେ ବିଦେଶ ଗଲେ । ସେ ଦୂରରୁ ଦେଖି ଚାକିରିର ହାକିମୀରେ ମୁଗ୍ଧ ହୋଇଥିଲେ । ଏବେ ଚାକିରିରୂପ ଦିଲ୍ଲୀକା ଲଡୁ ନିଜେ ଚାଖି ତାହାର ପ୍ରକୃତ ସ୍ୱାଦ ଜାଣିଲେ । ସେ ଦୋଦୁଲ୍ୟମାନଚିତ୍ତ ହେଲେ । କନକଲତାର ଯୁକ୍ତି ତାଙ୍କୁ ସାହାଯ୍ୟ କଲା । ଧନଞ୍ଜୟ ଓକାଲତିରେ ଆୟର ଅନିଶ୍ଚୟତା ଓ ଚାକିରିର ପରାଧୀନତା ଭାବି ଇତସ୍ତତଃ କରୁଥିଲେ । କନକ କହିଲା, ''କୌଣସି କାର୍ଯ୍ୟ ବା ଜୀବିକା ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ବା ପୂର୍ଣ୍ଣ ଦୋଷଯୁକ୍ତ ନୁହେଁ । ଓକିଲାତିର ଅସ୍ଥିରତା ପରମୁଖାପେକ୍ଷିତା, ସାକ୍ଷ୍ୟ ପ୍ରସ୍ତୁତ କରିବା ରୂପ

ପ୍ରଲୋଭନାଦି ପରି ଚାକିରିର ପରାଧୀନତା, ସ୍ଥାନ ପରିବର୍ତ୍ତନ ପ୍ରଭୃତି ଅସୁବିଧା ଓ ବିବିଧ ପ୍ରଲୋଭନ ମଧ୍ୟ ଅଛି; ସମ୍ପୂର୍ଣ୍ଣ ନିର୍ଦ୍ଦୋଷ କେହି ନୁହେଁ । ପରନ୍ତୁ ଆଇନବ୍ୟବସାୟଦ୍ୱାରା ବିପନ୍ନର ସହାୟତା, ସ୍ୱଦେଶର ଉନ୍ନତି, ଏକସ୍ଥାନରେ ରହିବା ସୁବିଧାଜନିତ କାୟମନର ସ୍ଥିରତା ଓ ଶାନ୍ତି ଲୋଭନୀୟ ଅଟେ ।''

ଧନଞ୍ଜୟଙ୍କର ଧନର ଏକାନ୍ତ ଅଭାବ ନାହିଁ- ତେଣୁ ଚାକିରିର ପ୍ରୟୋଜନୀୟତା ଅଳ୍ପ । ଧନଞ୍ଜୟଙ୍କର ଦୋଦୁଲ୍ୟମାନଚିତ୍ତ ଏହି ବୁଦ୍ଧିମତୀ ବାଳିକାର ସ୍ଥିରନିଶ୍ଚିତ ଉପଦେଶଦ୍ୱାରା ସୁମୀମାଂସିତ ହୋଇଗଲା । ଧନଞ୍ଜୟ ବିସ୍ମିତ ହେଲେ- କନକ ଏତେ ବୁଦ୍ଧି କାହୁଁ ପାଇଲା ? ପୁଣି ମନେକଲେ, ''ଲୋକେ କହନ୍ତି ସ୍ତ୍ରୀମାନେ ପ୍ରଖରବୁଦ୍ଧିସମ୍ପନ୍ନା । ପୁଣି କନକ ତ ହରିଚନ୍ଦନ ପଦ୍ମାବତୀଙ୍କ କନ୍ୟା, ରାଜେନ୍ଦ୍ରଙ୍କ ଭଗିନୀ ।'' ଉମା କହିଲା, ''ନୂଆବୋଉ, ଏକା ଭାଇଙ୍କି ଆପଣା ପାଲରେ ପକାଇ ତାଙ୍କ ସଙ୍ଗରେ ସବୁଦିନ ରହିବାର ଆଚ୍ଛା ଫିକରଟି କଲ ।'' କନକ କହିଲା, ''ନା ଭଉଣୀ, ପରାଧୀନତା ମାତ୍ରେ ହିଁ ଦୁଃଖ । ଓକାଲତି କୋଉ ପୂରା ସ୍ୱାଧୀନତା ? ତଥାପି ଚାକିରିଠାରୁ ଭଲ । ମୋ ଭାଇ କିଛିଦିନ ଗୋଟିଏ ଚାକିରି କରିଥିଲେ । ଦିନରାତି ଚିନ୍ତା, ପରିବର୍ତ୍ତନର ଅସୁବିଧା ବିଷୟ ଘେନି ସବୁବେଳେ ଆକ୍ଷେପ କରିବାର ମୁଁ ଶୁଣିଛି ।''

ଧନଞ୍ଜୟ କିଛି ଦିନ ଗ୍ରାମରେ ରହି ପୁରୀ ଗଲେ, କନକଲତାକୁ ସେ ସାମୟିକ ବିଚ୍ଛେଦ ବଡ଼ ବାଧେ । ପରିବାର ସଙ୍ଗରେ ନେବାର ପାଇକରା ବଡ଼ ବିରୋଧୀ ହେବେ । ତା' ପୁଣି ଏତେ ଚଞ୍ଚଳ କିପରି ହେବ ? ପୁଣି ଅନ୍ନପୂର୍ଣ୍ଣାଙ୍କ ଶାଶୂ ମନରେ ତହିଁରୁ ଅଧିକ କଷ୍ଟ ହେବ । ସେ ସଙ୍ଗରେ ଗଲେ ଶ୍ୱଶୁରଙ୍କର କଷ୍ଟ ହେବ । କାରଣ, ତାଙ୍କ ଅଣ୍ଟାବିନ୍ଧା ରୋଗରେ ଶାଶୂ ସହାୟ । ତେଣୁ ପରିବାରର ସୁଖ-ସୁବିଧା ନିମିତ୍ତ କନକ ନିଜର ସୁଖସୁବିଧାକୁ ବିସର୍ଜନ କଲା । କନକଲତା ଆସିବା ଦିନରୁ ଏ ଘରର କେତେ କଥା ବଦଳିଲାଣି । ତୁଳସୀ ପରିବର୍ତ୍ତରେ ଅନ୍ନପୂର୍ଣ୍ଣା ସ୍ୱାମୀଙ୍କୁ ପରିବେଷଣ କରନ୍ତି । ସ୍ୱାମୀଙ୍କର ଅଣ୍ଟା ଚିପିସାରି ଚାଲିଆସିବା ବନ୍ଦ ହୋଇଗଲାଣି । କନକ ନିଜ ବାପମା'ଙ୍କ ଦୃଷ୍ଟାନ୍ତ ଦେଇ ଶାଶୂଶ୍ୱଶୁରଙ୍କ ମଧ୍ୟରେ ଆଦର୍ଶ ଦାମ୍ପତ୍ୟ ପ୍ରେମ ଓ ସସ୍ନେହ ବ୍ୟବହାରର ଅବତାରଣା କରିଅଛି । ଉଭୟେ ଏହି ଜଗଦ୍ଧାତ୍ରୀ-ରୂପିଣୀ ବଧୂଟିର ଅପୂର୍ବ ପ୍ରଭାବ ଅଳ୍ପ ଦିନରେ ବୁଝିଲେଣି । ସମସ୍ତେ କହିଲେଣି, ''ଧନ୍ୟ କନକଲତା ! ଦୁହିତା ଦୁଇ କୁଳକୁ ହିତା ଅବା ପିତା ।''

ପାଇକରାଙ୍କର ଏ ବିଷୟକ ପତ୍ର ପାଇ ହରିଚନ୍ଦନ ଓ ପଦ୍ମାବତୀ ଉଭୟେ କୃତକୃତ୍ୟ ପରମାନନ୍ଦିତ ହେଲେ । ଉମାର ବାଳବୈଧବ୍ୟ କନକର କୋମଳ ପ୍ରାଣରେ ଶେଳବିଦ୍ଧ କଲାପରି ହୋଇଅଛି । କଅଣ କଲେ ଉମା ନିଜର ଦୁଃଖ ପାସୋରିପାରିବ, କନକ ତାହାର ଅଶେଷବିଧ ଯତ୍ନ କରିଅଛି । ଏପରି କି ଉମା ପାଇଁ ସେ ନିଜେ ଭଲ ଭଲ ପୋଷାକ ବା ଅଳଙ୍କାର ପିନ୍ଧେ ନାହିଁ । ଭାଗବତ, ରାମାୟଣ, ମହାଭାରତ ଆଦି ସଦ୍‌ଗ୍ରନ୍ଥ ଦୁହେଁ ପଢ଼ନ୍ତି । ନାନା ସାଧୁବାଣୀ ସିଲେଇ କରି ଫ୍ରେମ୍‌ରେ ବନ୍ଧାଇ ଟଙ୍ଗାଇ ଦେଇଅଛନ୍ତି । ଉମା କନକଲତାକୁ ଦେବକନ୍ୟାରୂପେ ମଣେ ଓ ନିଜର ବିଷାଦମୟ ଜୀବନର ଦୁଃଖଭାର ଲଘୁ କରିବାକୁ ସ୍ୱର୍ଗରୁ ଆସିଥିବା ଦେବଦୂତରୂପେ ମନେ ମନେ ପୂଜାକରେ । ଯେତେ କଲେହେଁ ସେ ଗଭୀରତମ କୂପରୁ ଉଦ୍ଧାର କରିବା କନକ ବ୍ୟର୍ଥଚେଷ୍ଟା ବୋଲି ମଣେ । କେବଳ ଅଶ୍ରୁପୂର୍ଣ୍ଣ ଲୋଚନରେ ପ୍ରଭୁଙ୍କ ନିକଟରେ ବଦ୍ଧାଞ୍ଜଳି ହୋଇ ପ୍ରାର୍ଥନା କରେ, ''ହେ ପ୍ରଭୁ ! ତୁମ୍ଭର ଲୀଳା ବୁଝିବା ମନୁଷ୍ୟ ପକ୍ଷରେ କଠିନ । କେଉଁ ଉଦ୍ଦେଶ୍ୟରେ ତୁମେ କ'ଣ କର, ମନୁଷ୍ୟ କ'ଣ ବୁଝିବ ? ସତ୍‌ପଥ ପ୍ରଦର୍ଶନ କର । ତୁମ୍ଭରି ଇଚ୍ଛା ପୂର୍ଣ୍ଣହେଉ ।'' ରାଜେନ୍ଦ୍ରର ଦୈନିକ ଉପାସନା ଓ ସ୍ୱ-ପରିବାରର ବ୍ୟକ୍ତିମାନଙ୍କ ନିକଟରେ ସଦ୍‌ଗ୍ରନ୍ଥପାଠ ଏବଂ ଭାଗବତଘରେ ଦୈନିକ ଶାସ୍ତ୍ରପାଠ ବୁଦ୍ଧିମତୀ କନକଲତାର ଭାବପ୍ରବଣ ହୃଦୟ ଉପରେ କାର୍ଯ୍ୟ ନ କରି ଛାଡ଼ି ନାହିଁ । ପାଠକ-ପାଠିକାମାନେ ତରୁଣୀ କନକଲତାର ଏତାଦୃଶ ବ୍ୟବହାରରେ ବିସ୍ମିତ ହେବେ ନାହିଁ ।

ଏପରି ଦିନ ଯାଉଥାଏ । ଧନଞ୍ଜୟ ଏପର୍ଯ୍ୟନ୍ତ ଚାକିରି ଛାଡ଼ି ନାହାନ୍ତି । ଅସ୍ଥାୟୀ ମୁନସିଫ୍‌ର ଘନ ଘନ ପରିବର୍ତ୍ତନ– କଷ୍ଟ ଅସହ୍ୟ । କାର୍ଯ୍ୟ ଦାୟିତ୍ୱରୁ ଅବ୍ୟାହତି ପାଇଲେ ପୁଣି ଓକାଲତି କରିବେ, ଏଇ ଇଚ୍ଛା । ଧନଞ୍ଜୟ ଥରେ ଗ୍ରାମକୁ ଆସି ଦୁଇ-ଚାରି ଦିନ ରହି ନୂତନ କାର୍ଯ୍ୟସ୍ଥାନକୁ ରମାନାହେଲେ । ପାଇକରା ପାହାନ୍ତରା କରାଇ ନାରାୟଣ ସ୍ମରଣକରି ପୁତ୍ରକୁ ରେଳ ଚଢ଼ାଇଦେଇ ଆସିଲେ । କନକଲତା ପୁଣି ନିର୍ଜନ ନିଶୀଥରେ 'ଚମ୍ପାଫୁଲଟିଏ ପାଇଲି ବନ ହଳଦି ପ୍ରାଏ, ଶିବ ଉପାସନା କରିବି କାନ୍ତ ଆସିବାଯାଏ' ଗୀତ ଆଉଡ଼େଇଲା । ମୁଣ୍ଡ ବାନ୍ଧେ ନାହିଁ– ପଚାରିଲେ କହେ, ନଡ଼ିଆତେଲ ଲଗାଇବାରୁ ତାହାର ମୁଣ୍ଡ ବିନ୍ଧେ । ଗହଣା ବାକ୍‌ସରେ, ଲୁଗା ଆଲମାରିରେ ବନ୍ଦ ହୋଇ ରହେ– ପଚାରିଲେ କହେ, ନାକ କାନ ପରାସ ହୋଇଯାଉଛି ;

ଗହଣା ନାଇହେଉ ନାହିଁ । ଲୁଗା ପିନ୍ଧିହେଉ ନାହିଁ, ଝାଳ ବହୁଅଛି । ଫୁଲରୀ ତେଲ ପୁରୁଣା ହୋଇଯିବାରୁ ତୈଳ ପରି ବାସୁଅଛି । ବେଳେବେଳେ ନିର୍ଜନରେ ବସି ବାଲ୍ୟକାଳର ଅଭ୍ୟସ୍ତ କବିତା ରଚନାକରେ । ବିଚ୍ଛେଦ କବିତାର ଅନୁକୂଳ ନୁହେଁ କି ? ହାଟପାଳିକୁ ଚାତକ ପରି ଅନାଇଥାଏ । ଚିଠି ଖଣ୍ଡେ ପାଇଲେ ଶହେ ଥର, ହଜାରଥର ପଢ଼େ । ଏଣେତେଣେ ଅନାଇ ଦେଇ ମୁଣ୍ଡରେ ଛାତିରେ ଲଗାଇଦେଇ ବାକ୍ସରେ ରଖିଦିଏ । ହନୁମାନବାହିତ ରତ୍ନମୁଦି ଓ ସୀତାଙ୍କଠାରୁ ଆଣିଥିବା ମଥାମଣି କଥା ତା'ର ମନେପଡ଼େ । ଏଣେତେଣେ ବୁଲିଆସି ନିର୍ଜନ ଦେଖି ପୁଣି ଖୋଲି ପଢ଼େ । ଉମା ବଡ଼ ସିଆଣିଆ । ଦିନେ ଦିନେ ଦୂରରୁ ଝଟ୍ ଦେଖିନିଏ । ପାଖକୁ ଆସି ପଚାରେ, ''ନୂଆବୋଉ, ଏତେ କ'ଣ ପଢୁଛ ? ସେଥିରୁ କ'ଣ ପାଉଛ ?'' କନକ ଲାଜରେ ସଢ଼ିଯାଏ । କହେ, ''ନାହିଁ ଅକ୍ଷର ପଢ଼ାଯାଉ ନାହିଁ ।''

ଉମା – ହଁ ସତ କଥା ଏକା ! ଭାଇଙ୍କ ଅକ୍ଷର ନା ! ସେ ତ ଛପା ଅକ୍ଷର ପରି । ସେ କଥା ମିଛ । ଆଉ କ'ଣ ଅଛି କୁହ ?

କନକ – ଆଉ କ'ଣ ? ଉମା, ତମେ ଭାରି ଖରାପ ହେଲଣି ।

ଉମା – ଚିଠିଟାରୁ ତୁମେ ଏତେ ରସ କ'ଣ ପାଅ ?

କନକ – ଅଳ୍ପଦିନେ ଜାଣିବ । ବିଦ୍ୟାସାଗରଙ୍କର ଅନେକ ଚେଲା ବାହାରିଲେଣି । ତମ ଦୁଃଖ ଯିବ ଯେ ! ଆଚ୍ଛା, ଭାଇଙ୍କ ପାଖକୁ ଏ କଥା ଲେଖିବି ?

ଉମା – ନୂଆବୋଉ, ମୋ ରାଣଟି, ମୋ ମୁଣ୍ଡ ଖାଆଟି । ତମ ଭାଇ ରାଣ । ମୁଁ ଲାଜରେ ମରିଯିବି । ତମ ଗୋଡ଼ତଳେ ପଡୁଛି ।

କନକ – କି, ପେଟ ଭିତରେ ଏତେ କଥା– ଉପରେ ଭାଇ କହନ୍ତି, ଆମ ଭଉଣୀଟି କିଛି ଜାଣେ ନାହିଁ, ଋଷିକନ୍ୟା । ତଳମୁହାଁ ମଉନମୁହାଁ ମଣିଷ, ଧୂଳିଆଜନ୍ଦାଙ୍କୁ ବିଶ୍ୱାସ ନାହିଁ ।

ଉମା – ଛି, ତମେ ଏତେ ରାଣ ମାନିଲ ନାହିଁ । ଆଉ ତମକୁ ବିଶ୍ୱାସ ନାହିଁ । ତମକୁ ଯେ ମନକଥା କହିବ ସେ...

କନକ – ରହ, ରହ, ବଡ଼ ନିୟମଟାଏ କର ନାହିଁ । ଅର୍ଜୁନ ଏହିପରି ପ୍ରତିଜ୍ଞା କରି କିପରି ହଇରାଣରେ ପଡ଼ିଥିଲେ ମନେ ନାହିଁ ? ସେ ଦିନ ମହାଭାରତରେ ପଢୁଥିଲ ପରା !

ଉମା – ସତେ ନୂଆବୋଉ, ଏ ମହାପ୍ରସାଦ କୋଥଳି ଛୁଇଁ କହିଲ, ଲେଖିବ ନାହିଁ ।

କନକ – ତମେ କ'ଣ ବାୟାଣୀ ହେଲ ? ଏ କଥା କି ଲେଖାଯାଏ ? ଏତେ ବ୍ୟସ୍ତ କାହିଁକି ? ମୁଁ କ'ଣ ସତେ ଲେଖୁଚି ? ଲେଖିଲେ ଭାଇ ନିଜେ ମୋତେ କ'ଣ କହିବେ ?

ଉମା କନକର କଣ୍ଠ ଦୃଢ଼ ଆଲିଙ୍ଗନ କରି ଗଣ୍ଡଦେଶରେ ଗାଢ଼ ଚୁମ୍ବନ ଦେଲା । ଦୁହେଁ ଦୁହିଁକି ଚୁମା ଦିଆଦେଇ ହୋଇ ଦୁହେଁ ଦୁହିଁକି 'ମୋ ସୁନାଭଉଣୀଟା ପରା' କହି ମନମୁତାବକ ତାନେ ହସିଲେ ।

ଭାଉଜବୋହୂ ଭାଇଙ୍କ ପାଖକୁ ଗୁମର ଫିଟାଇ ଚିଠି ଦେବାରୂପ ଉପସ୍ଥିତ ବିପଦରୁ ରକ୍ଷାପାଇ ଉମାର ମନ କୌତୂହଳପୂର୍ଣ୍ଣ ହେଲା । ସେ ସମ୍ମୁଖସ୍ଥ ଚିଠିଆଡ଼କୁ ସତୃଷ୍ଣ ଦୃଷ୍ଟି ନିକ୍ଷେପ କରୁଥିବାର ଦେଖି କନକଲତା ଚିଠିଖଣ୍ଡକ ଉମା ଆଡ଼କୁ ବଢ଼ାଇଦେଲା । ଉମା ମୂଳରୁ କେତେକ ଧାଡ଼ି ପଢ଼ିଯାଇ ଶେଷକୁ ଦେଖିଲା, ''କନକ ! ଯୌବନ ବଡ଼ ବିପଦକାଳ । ସବୁବେଳେ କାର୍ଯ୍ୟରେ ମନଦେବ । ପରିଶ୍ରମ ମନୁଷ୍ୟର ସର୍ବଶ୍ରେଷ୍ଠ ପ୍ରହରୀ । ତୁମେ ଲେଖିଛ, ବିଚ୍ଛେଦ ବଡ଼ ଦାରୁଣ । ହଁ, ନବୀନ ବିଚ୍ଛେଦ ଦୁର୍ବିଷହ ସତ୍ୟ; କିନ୍ତୁ ସେହି ବିଚ୍ଛେଦ ତ ମିଳନକୁ ମଧୁର କରେ । ଗୋଟିଏ କଥା ଅଛି, ମିଳନ ପ୍ରୀତି କରାଏ, ବିଚ୍ଛେଦ ପ୍ରୀତିକୁ ଦୃଢ଼ କରାଏ । ମୁଁ ଦଶହରାକୁ ଗ୍ରାମକୁ ଯିବି । କୌଣସି ସ୍ଥାନରେ ସ୍ଥାୟୀ ହୋଇ-ରହିଲେ ତୁମକୁ ଘେନିଆସିବି ।''

ଉମା – ନୂଆବୋଉ, ମୋତେ ସାଙ୍ଗରେ ନେବ ନା ?

କନକ – ତମକୁ ନ ନେଇ ମୁଁ ପ୍ରବାସରେ ଚଳିବି କିପରି ? ଭାଇ କଚେରିକୁ ଗଲେ ଏକୁଟିଆ ବଡ଼ କଷ୍ଟ ହେବ ।

ଉମା – ତମର ତ ଅବସର ମେଣ୍ଟାଇବା ପାଇଁ ମୁଁ ଦରକାର । ମୋର ଭଉଣୀ ! କିଛି ଆଶ୍ରୟ ନାହିଁ, ମୁଁ ଆଉ କାହା ମୁହଁ ଚାହିଁ ରହିବି ? ତମେ ଆସି ଖତକୁଢ଼ରେ ପଦ୍ମ ଫୁଟିଛ । ମୋ ପକ୍ଷରେ ତମେ ଏ ଘରେ ଶ୍ମଶାନତୁଳସୀ ପରି ।

କନକ ଚିରହାସ୍ୟମୟୀ ଉମାର ସବୁ କଥାରେ ଉତ୍ତର ଦିଏ । ଉମା ଯେତେବେଳେ ଗମ୍ଭୀର ହୋଇ ତାହାର ଛିନ୍ନ ମୃଣାଳ ଦଗ୍ଧ ପଦ୍ମବନ, ରାମହୀନ ଅଯୋଧ୍ୟା, କୃଷ୍ଣଶୂନ୍ୟ ଗୋପପୁର ସଦୃଶ ସ୍ୱୀୟ ଜୀବନ ଆଲୋଚନା

କରେ, କନକ ବଡ଼ ଭୟ କରେ ଏବଂ ତାକୁ ଅନ୍ୟ କଥାରେ ଭୁଲାଏ ଏବଂ ସ୍ୱରଚିତ ବିବିଧ କବିତା ଶୁଣାଇ ତାକୁ ଅନ୍ୟମନସ୍କ କରାଏ । କନକ ଉମାର ଉଜ୍ଜାଗ୍ରତ ଦୁଃଖବହ୍ନିକୁ ନିର୍ବାପନ କରିବା ଉଦ୍ଦେଶ୍ୟରେ ଅନ୍ୟ କୌଣସି କଥା କହି ପତ୍ରର ଏକ ଅଂଶ ପ୍ରତି ତାହାର ଦୃଷ୍ଟି ଆକର୍ଷଣ କରି କହିଲା, ''ଉମା, ତମ ଭାଇ ଲେଖିଛନ୍ତି, ପରିଶ୍ରମ ମନୁଷ୍ୟର ସର୍ବଶ୍ରେଷ୍ଠ ପ୍ରହରୀ । ଏହା କ'ଣ ସତ୍ୟ ?'' ଉମା କନକର ବୁଦ୍ଧିକୁ ଶତବାର ପ୍ରଶଂସା କରି ନିଜ ଜୀବନରେ ଏହି ଆପ୍ତବାକ୍ୟର ପ୍ରୟୋଜନୀୟତା ଉପଲବ୍ଧି କରିକହିଲା, ''ସତେ ନୂଆବୋଉ, ଭାଇ ଠିକ୍ ସତକଥା ଲେଖିଛନ୍ତି । ସୀତା ବନବାସ ବେଳେ କାର୍ଯ୍ୟରେ ମନଦେଇ ବନବାସ କଷ୍ଟ ଭୁଲିଥିଲେ ।

କନକ – ଆଣ ତ ଭଉଣୀ, ସୀତାବନବାସ ବୋଲିବା ।

ଉମା ସୀତାବନବାସ ଆଣି ପଢ଼ିଲା –

'ଘନ ବର୍ଷାରତୁ ସାନ୍ଦ୍ର ତରୁ ଗିରି ବନ,
ଡୁହାଇ ଡୁହାଇ ବାରି ବରଷଇ ଘନ ।
ପଡ଼େ ପଲ୍ଲବରେ ନୀର ଟପ ଟପ ସ୍ୱନେ,
ଆନ୍ଦୋଳିତ ତରୁଲତା ଚଞ୍ଚଳ ପବନେ ।
ନିସ୍ତବ୍ଧ ନିଶୀଥେ ସର୍ବେ ଘୋର ନିଦ୍ରାଗତ,
ଏକାକିନୀ ରାମନାରୀ ଥାଆନ୍ତି ଜାଗ୍ରତ ।'' ... ଇତ୍ୟାଦି ।

ଉମା – ନୂଆବୋଉ, 'ପଲ୍ଲବ' ଅର୍ଥ କ'ଣ ?

କନକ – ଏଠାରେ କଖାରୁପତ୍ର ।

ଉମା – ଠିକ୍ କହିଲ ଭଉଣୀ ! ଆଚ୍ଛା, ନିଛାଟିଆ ରାତିରେ କଙ୍କିଶିଆଳୀ ବୋବାଇଲେ ମନ ଉଦାସ ହୁଏ, ସେ କଥା ବାଲ୍ମୀକି ଛାଡ଼ିଗଲେ କାହିଁକି ?

❖❖❖

## ଚତୁର୍ଦ୍ଦଶ ପରିଚ୍ଛେଦ

କନକଲତାର ବିବାହ ପରେ ରାଜେନ୍ଦ୍ର ଥରେ ତା' ଶାଶୂଘରକୁ ଯାଇଥିଲେ । ଦେଶପ୍ରଚଳିତ ବିଧି ଅନୁସାରେ ଧନଞ୍ଜୟଙ୍କ ଭଉଣୀ ଉମା ରାଜେନ୍ଦ୍ରଙ୍କୁ ଉତ୍ତ୍ୟକ୍ତ କରିବାକୁ ଯତ୍ନବତୀ ହେଲେ । ଯେପରି ପାନଖିଲରେ ଲଙ୍କାମରିଚ ମଞ୍ଜି ଦେବା, ଖାଇବାବେଳେ ଶାଗଭାଜି ସାଙ୍ଗରେ ଟିକିଏ କଞ୍ଚାଶାଗ ମଳିଦେବା, ପଇଡ଼ ଉପରେ ଲହୁଣି ଘଷି ତାକୁ ପିଚ୍ଛିଳ କରିଦେବା, ଗୋଟିଏ ଛୁଞ୍ଚିପତ୍ର ଉପରେ ଖଣ୍ଡେ ସରୁ କନା ମଡ଼ାଇଦେବା, ରାଜେନ୍ଦ୍ର ଯିବା ରାସ୍ତାରେ ପାଚିଲାକଦଳୀ ଚୋପା ପକାଇଦେବା ଇତ୍ୟାଦି । ଏତେ ଷଡ୍‌ଯନ୍ତ୍ରରୁ କନକଲତା ଭାଇକୁ ଏବେ କେତେ ରକ୍ଷା କରିବ ? ଯଥାସାଧ ଯତ୍ନକରି ମଧ ରାଜେନ୍ଦ୍ରବାବୁଙ୍କୁ ଉମାର ଷଡ୍‌ଯନ୍ତ୍ରରୁ ରକ୍ଷା କରିପାରି ନ ଥିଲା । ଯେତେବେଳେ ରାଜେନ୍ଦ୍ରବାବୁ ଛୁଞ୍ଚିପତ୍ର ବୋଲି କନା ଚୋବାଇଲେ ବା କଞ୍ଚା ସଜନାଶାଗ ଖାଇ ଥୁ-ଥୁ କରୁଥିଲେ, ଗବାକ୍ଷ ରନ୍ଧ୍ରରୁ ପୁରନ୍ଧ୍ରୀମାନଙ୍କର ଗହଣାର ଝଣ୍‌ଝଣ୍ ଶବ୍ଦ ଓ ଗୁଦ୍ଧହାସ୍ୟର ରୋଳ ଶୁଣାଯାଉଥିଲା ଏବଂ ରାଜେନ୍ଦ୍ରବାବୁଙ୍କ ମୁହଁ ଶୁଖିଯାଉଥିଲା । ଓହୋ ! କି ଘୋର ଆଦିମ ବର୍ବରତା– କିନ୍ତୁ ରାଜେନ୍ଦ୍ର ଆଉ ପୂର୍ବ ରାଜେନ୍ଦ୍ର ନ ଥିଲେ । କୁମାରୀକାମାକ୍ଷା ଦେଶରେ ଯେପରି ମନୁଷ୍ୟ ମେଣ୍ଢା ପାଲଟିଯାଏ, ଏଠାକୁ ଆସି ଏ ସେହିପରି ଉମାର ଅନିନ୍ଦ୍ୟସୁନ୍ଦର ସୁଗୋଲ ସୌଷ୍ଠବାନ୍ୱିତ ବପୁ ଦେଖି ଆତ୍ମବିକ୍ରୟ କରିସାରିଥିଲେ । ହରିଚନ୍ଦନଙ୍କ ସନିର୍ବନ୍ଧ ଆଗ୍ରହାତିଶଯ୍ୟ, ଜନନୀଙ୍କ ସାଶ୍ରୁନୟନ, ଶତପଥୀଙ୍କ ପୌରାଣିକ ଉପାଖ୍ୟାନ, ଭାଉଜମାନଙ୍କ ଉପହାସ-ବାକ୍ୟବାଣ ଯାହା କରିପାରି ନ ଥିଲା, ଦୁଇ ଦିନରେ ଏହି ପରିହାସମୟୀ ଚଞ୍ଚଳା ହାସ୍ୟକୌତୁକପ୍ରିୟା ତରୁଣୀ ତାହା କରିପାରିଥିଲା ।

କେତେକ ଲୋକ କହନ୍ତି, ଚକ୍ଷୁର ଏକ ବୈଦ୍ୟୁତିକ ଶକ୍ତିଦ୍ୱାରା ମାନବ ଅନ୍ୟମାନଙ୍କୁ ବଶ କରିପାରେ । ଏହା ସତ୍ୟ ହେଲେ– ଉମାର ନୟନର ବୈଦ୍ୟୁତିକ ଶକ୍ତି ରାଜେନ୍ଦ୍ରଙ୍କର ଶକ୍ତିଠାରୁ ବହୁଗୁଣରେ ଅଧିକ । କାରଣ, ମାର୍ଜ୍ଜାର ନିକଟରେ ମୂଷିକବତ୍ ଉମା ନିକଟରେ ଦୁର୍ଦ୍ଧର୍ଷ ରାଜେନ୍ଦ୍ର ! ଶେଷରେ ଲଜ୍ଜାର ମସ୍ତକ ଚର୍ବଣକରି ଇଂରେଜୀ ଶିକ୍ଷିତ ସମାଜ-ସଂସ୍କାରକ ରାଜେନ୍ଦ୍ର

ଧନଞ୍ଜୟଙ୍କଠାରେ ସ୍ୱାଭିପ୍ରାୟ ବ୍ୟକ୍ତ କଲେ । ଧନଞ୍ଜୟ ଏହି ସମାଜବିରୋଧୀ କାର୍ଯ୍ୟରେ ପ୍ରଥମେ ମତ ଦେଇପାରିଲେ ନାହିଁ । କହିଲେ, ‘‘ବଙ୍ଗଦେଶରେ ପୁଣ୍ୟଶ୍ଳୋକ ବିଦ୍ୟାସାଗର ବିଧବା-ବିବାହ ଶାସ୍ତ୍ରସିଦ୍ଧ, ଯୁକ୍ତିସିଦ୍ଧ ଓ ସମାଜର ମଙ୍ଗଳକାରୀ, ଏହା ସୁପ୍ରମାଣିତ ଓ କାର୍ଯ୍ୟରେ ପରିଣତ କରାଯାଇଥିଲେ ହେଁ, ଆମ୍ଭମାନଙ୍କ ଦେଶରେ, ଅପିଚ ବଙ୍ଗଦେଶରେ ଉଚ୍ଚଜାତୀୟମାନଙ୍କ ମଧ୍ୟରେ ପ୍ରବର୍ତ୍ତିତ ହେବାର ଆଶା ସୁଦୂରପରାହତ । ତୁମ୍ଭେ ଏ କାର୍ଯ୍ୟରୁ ବିରତ ହୁଅ; କାରଣ ବରକର୍ତ୍ତା ଓ କନ୍ୟାକର୍ତ୍ତା ଉଭୟ ଏଥିରେ ଅସ୍ୱୀକୃତ ହେବେ ଓ ପ୍ରାଣାନ୍ତ ପ୍ରତିବନ୍ଧକ ଦେବେ । ବଂଶ ଓ ସମାଜରେ ଘୋର ବିପ୍ଳବ ସଂଘଟିତ ହେବ । ଦୂର ଭବିଷ୍ୟତରେ ଯାହା ହେଉ, ବର୍ତ୍ତମାନ ଏପରି ସାମାଜିକ ଅନୁଷ୍ଠାନ ଅବିଧେୟ– ‘ଯଦ୍ୟପି ଶୁଦ୍ଧଂ ଲୋକବିରୁଦ୍ଧଂ ନାଦରଣୀୟଂ ନାଚରଣୀୟଂ ।’

ରାଜେନ୍ଦ୍ରଙ୍କ ଚରିତ୍ରରେ ଗୋଟିଏ ବିପ୍ଳବକାରୀ ସାମଗ୍ରୀ ଥିଲା । ସେ ଯାହା ବିବେକାନୁମୋଦିତ ମନେକରୁଥିଲେ ତାହା ଲୋକବିରୁଦ୍ଧ ହେଲେ ହେଁ ତାହା ସର୍ବସମକ୍ଷରେ ସମ୍ପାଦନ କରିବାରେ ଆନନ୍ଦ ଓ ଗର୍ବ ଅନୁଭବ କରୁଥିଲେ । ଶତପଥୀଏ କହୁଥିଲେ, ତୁଳାରାଶିକ ଲୋକଙ୍କର ଏହା ଗୋଟିଏ ଲକ୍ଷଣ । ରାଜେନ୍ଦ୍ରଙ୍କର ତୁଳାରାଶି ଥିଲା । ଧନଞ୍ଜୟ ଯେତେ ବିଘ୍ନ ପ୍ରଦର୍ଶନ କଲେ, ରାଜେନ୍ଦ୍ର ସେତେ ବିଦ୍ରୋହୀ ହୋଇଉଠିଲେ – କହିଲେ – ‘‘ଛି ଧନଞ୍ଜୟ, ତୁମେ ବୟସରେ ବଡ଼ହୋଇ ସଂସାର-ସୁଖ ଉପଭୋଗ କରିବ, ଅଥଚ ତୁମର କନିଷ୍ଠା ଭଗିନୀ, ଯେ କି ଅକ୍ଷତଯୌବନା, ବିବାହ କ’ଣ ଜାଣେ ନାହିଁ, ତାହାକୁ ଚିରବୈଧବ୍ୟ ଯନ୍ତ୍ରଣାରେ ଦୀକ୍ଷିତ କରାଇବ । ତୁମେ ତୁମର ପିତାମାତାଙ୍କ ଭୟ ଦେଖାଉଅଛ । ସେମାନେ ଯୌବନର ପ୍ରାନ୍ତରେ ଉପନୀତ ହୋଇ ବିଷୟ-ସୁଖରୁ ନିଜକୁ ନିବୃତ୍ତ କରିପାରୁ ନାହାନ୍ତି, ଅଥଚ ଅପରିଚିତ ମୃତ ପୁରୁଷ ନିମିତ୍ତ ଚିରବୈଧବ୍ୟ ଯନ୍ତ୍ରଣାରେ ସରଳା ଯୁବତୀକୁ ନିୟନ୍ତ୍ରିତ କରିବାକୁ ଦୃଢ଼ପ୍ରତିଜ୍ଞ ହୋଇଅଛନ୍ତି । ଧିକ୍ ଏପରି ଭ୍ରାତାକୁ, ଶତସହସ୍ର ଧିକ୍ ସେହି ପିତାମାତାଙ୍କୁ ! ସେମାନେ ପିତାମାତା ରୂପରେ ରାକ୍ଷସ-ରାକ୍ଷସୀ । ଜାଣନ୍ତି ଯେବେ ଯୁବତୀ ନିଜ ଇଚ୍ଛାରେ ଚିରବୈଧବ୍ୟବ୍ରତ ନିର୍ବାଚନ କରି ବ୍ରହ୍ମଚର୍ଯ୍ୟରେ ଯୌବନକୁ ଆହୁତି ପ୍ରଦାନ କରିପାରନ୍ତା, ତେବେ କୌଣସି ଆପତ୍ତି କରନ୍ତି ନାହିଁ । ସୁଦୀର୍ଘ ଜୀବନପଥ ତାହା ସମ୍ମୁଖରେ ବିଦ୍ୟମାନ । ପାପପଥ ପିଚ୍ଛିଳ–ପୁଣ୍ୟପଥ କଣ୍ଟକାକୀର୍ଣ୍ଣ । ଏପରି ସୁସ୍ଥ ସବଳ ହାସ୍ୟମୟୀ ଯୁବତୀ

କିପରି ନିର୍ଦ୍ଦୋଷ ନିଷ୍କଳଙ୍କ ଭାବରେ ଜୀବନ ଯାପନ କରିବା ଆଶାକର ? ଆମ୍ଭେମାନେ ଶାସ୍ତ୍ରପାଠ, ବିଦ୍ୟାଧ୍ୟୟନ କରି ଚରିତ୍ର ନିର୍ମଳ ରଖିବା ଦୁରୂହ ମଣୁ ନାହୁଁ କି ? ଏମାନେ ଅଶିକ୍ଷିତ ପଶୁବତ୍ ଲୋକଙ୍କ କବଳରୁ କିପରି ଆତ୍ମରକ୍ଷା କରିପାରିବେ ? ଏହାର ଅପରୂପ ଲାବଣ୍ୟ ଏବଂ ସରଳ ସୁନ୍ଦର ଠାଣି ମୋର ହୃଦୟ ଅଧିକାର କରିଅଛି । ମୁଁ ତୁମର ସ୍ୱଜାତୀୟ, ବିଶେଷତଃ ସୁପାତ୍ର । ଏହାର ଦୁଃଖରେ ଦୁଃଖିତ । ମୋତେ ଦେବା ଭଲ ନା ଏହାର ଚରିତ୍ର କଳଙ୍କିତ କରାଇ ଭ୍ରୂଣହତ୍ୟାର ପ୍ରଶ୍ରୟ ଦେବା ଉଚିତ ମନେକର ? ତୁମେ ଈଶ୍ୱରସୃଷ୍ଟ ମାନବ, ଏ ସେହି ହସ୍ତସୃଷ୍ଟ ମାନବୀ । ତୁମେ ଭାରତୀୟ ଶିକ୍ଷିତ ଯୁବକ, ଏ ଭାରତୀୟ ହିନ୍ଦୁ ବାଳିକା । ତୁମେ ସହୋଦର ଭ୍ରାତା, ଏ ସହୋଦରା ଭଗିନୀ । ବକ୍ଷରେ ହସ୍ତ ଦେଇ ଈଶ୍ୱରଙ୍କୁ ସାକ୍ଷୀ କରି ନିରପେକ୍ଷ ହୋଇ କହ ତ ଭାଇ ଧନଞ୍ଜୟ, ଏହାକୁ ଧର୍ମପଥରେ ରଖିବାର କେଉଁଟି ସଦୁପାୟ ? ମୁଁ ଏହାର ପ୍ରେମଭିକାରି, ଏ ମୋର ରୂପଗୁଣମୁଗ୍ଧା–ମୋ ହସ୍ତରେ ଅର୍ପଣ କରିବା ଉଚିତ ନା ନରକର ପଥରେ ପରିତ୍ୟାଗ କରିବା ଉଚିତ ?''

ନିର୍ମଳ ନିର୍ଦ୍ଦୟ ଧର୍ମଧ୍ୱଜୀ ପରର ମନ ଯାହା ହେଉ, ସ୍ୱୀୟ ସହୋଦରା ଭଗିନୀର ଦଶାରେ ଭ୍ରାତାର ହୃଦୟ ବିଗଳିତ ହେଲା । ସେ କହିଲେ, ''ଭାଇ ରାଜେନ୍ଦ୍ର ! ନିଷ୍କଳଙ୍କ ଚନ୍ଦ୍ରମାବତ୍ ରାଜେନ୍ଦ୍ର ! ନିର୍ଭୀକ ସରଳପ୍ରାଣ ରାଜେନ୍ଦ୍ର ! ତୁ କ'ଣ ଦେବଦୂତ ?''

ରାଜେନ୍ଦ୍ର କହିଲେ, ''ନା ଭାଇ ଧନଞ୍ଜୟ ! ମୁଁ ତୋଅରିପରି ପାପତାପମଳିନ ମନୁଷ୍ୟ ମାତ୍ର; କିନ୍ତୁ ଚିରଜୀବନ ମୁଁ ମୋର ହୃଦୟରେ ଏହି ଆଶା ପୋଷିଛି ଯେ, ଦେଶର ଅନ୍ଧ ଆଚାରରେ ପ୍ରପୀଡ଼ିତା ନରନାରୀମାନଙ୍କର କିଛି ହେଲେ ଉପକାର କରିବି । ପରକୁ ଉପଦେଶ ଦେବା ସହଜ; କିନ୍ତୁ ନିରର୍ଥକ, ଅକାରଣ । ନିଜେ ସ୍ୱାର୍ଥତ୍ୟାଗ କରି ଦୃଷ୍ଟାନ୍ତ ଦେଖାଇବା ହିଁ ସୁପନ୍ଥା । ଏଠାରେ ମୋର ସ୍ୱାର୍ଥତ୍ୟାଗ କାହିଁ ? ମୋତେ ତ ପିତାମାତା ବିବାହ କରିବାକୁ ଆଦେଶ ଦେଉଅଛନ୍ତି । ଏ ତ ମୋର ସ୍ୱଜାତୀୟା ରୂପଗୁଣବତୀ ଯୁବତୀ । ତେବେ ସାମାନ୍ୟ ଗୋଟିଏ ମିଥ୍ୟା ଅପବିତ୍ରତା ବାହାନାକୁ ପଦାହତ କରି ସ୍ୱକର୍ତ୍ତବ୍ୟ ସମ୍ପାଦନ କରିବାକୁ ହେବ । ମୁଁ ଆଜିଯାଏ ନାନା ପୁସ୍ତକ ପାଠକରି, ସଭା-ସମିତିରେ ଯୋଗଦେଇ, ସାଧୁସଜ୍ଜନ ସଙ୍ଗ କରି ନିଜ ଅନ୍ତରରେ ସ୍ପଷ୍ଟ ଅନୁଭବ କରୁଅଛି ଯେ ଏ କନ୍ୟାଟି ବାଳବିଧବା ହୋଇଥିବା ଯୋଗୁଁ

ଅପବିତ୍ରା ବା ଅସ୍ପୃଶ୍ୟା ହୋଇ ନାହିଁ । ପ୍ରାଚୀନ ଭାରତର, ବର୍ତ୍ତମାନ ପୃଥିବୀର ଅନ୍ୟାନ୍ୟ ଦେଶମାନଙ୍କର ଗ୍ରନ୍ଥାଦିରେ ଏପରି କନ୍ୟା ଗ୍ରହଣର ନିଦର୍ଶନ ସହସ୍ର ସହସ୍ର ରହିଅଛି । ଅତଏବ ଏ କାର୍ଯ୍ୟ ମୋର କରଣୀୟ । ଭାରତର ଜଣେ ଶ୍ରେଷ୍ଠ ବ୍ୟବସ୍ଥାପକ ପରାଶର ମୁନିଙ୍କ 'ନଷ୍ଟେ ମୃତେ ପ୍ରବ୍ରଜିତେ କ୍ଳୀବେ ଚ ପତିତେ ତଦୌ ପଞ୍ଚସ୍ୱାପତ୍ସୁ ନାରୀଣାଂ ପତିରନ୍ୟୋ ବିଧୀୟତେ'– ତୁମର ମନେଥିବ ।''

କନକଲତା ଅନ୍ତରାଳରେ ଥାଇ ଏ କଥାଗୁଡ଼ାକ ଶୁଣୁଥିଲା । ତାହାର ସହଜ ସରଳ ବିଶ୍ୱାସକୁ ଏହା ଘେନିଲା । ସେ ଯେତେବେଳେ ଦେଶପ୍ରଚଳିତ ସଂସ୍କାର ଓ ରାଜନୀତି ଆଡ଼କୁ ଅନାଏ, ତାହାର ବୁଦ୍ଧିଭ୍ରଂଶ ହୁଏ; କିନ୍ତୁ ଯେତେବେଳେ ସରଳ, ସତ୍‌ସାହସୀ ପରହିତରତ ଭ୍ରାତାର ଯୁକ୍ତିଚୟ ଅନୁଧାବନ କରେ, ତାହାର କିଛି ସଂଶୟ ରହେ ନାହିଁ । ସେ ବାତବିକ୍ଷିପ୍ତା କମଳିନୀ ପରି ଧନଞ୍ଜୟ କ୍ରୋଡ଼ରେ ମୁଖ ଲୁଚାଇ ତାଙ୍କରି ଉପରେ ନିର୍ଭର କରି କହିଲା । ଭାଇ ଭଉଣୀଠାରୁ ବହୁ ଦୂରରେ । ସ୍ୱାମୀ ଉଚ୍ଚଶିକ୍ଷିତ ହେଲେ ହେଁ ସ୍ତ୍ରୀର ନିକଟରେ । ଅଧ୍ୟୟନ, ସ୍ୱାଧୀନ ଚିନ୍ତା ଓ ଆଲୋଚନା ନୋହିଲେ କେବଳ ଉଚ୍ଚଶିକ୍ଷା ନିରର୍ଥକ । ବିଶ୍ୱବିଦ୍ୟାଳୟର ଏପରି ଉଚ୍ଚ ଉପାଧିଧାରୀ ଓ ପଲ୍ଲୀନାରୀ ମଧ୍ୟରେ ପ୍ରଭେଦ କେତେ ? ଯାହାହେଉ ସେମାନଙ୍କ ମନରେ ଗୋଟିଏ ଧାରଣା ହେଲା ଯେ, ସମୟରେ ଏହି ବିବାହ ସମ୍ଭବପର ହୋଇପାରେ ।

ରାଜେନ୍ଦ୍ରଙ୍କର ଉମା ପ୍ରତି ଗଭୀର ପ୍ରଣୟ ଜନ୍ମିଥିବାର ସ୍ପଷ୍ଟ ଅନୁଭବ କରି ଶେଷରେ ଧନଞ୍ଜୟ କହିଲେ, ''ଭାଇ, ଏ ପ୍ରସ୍ତାବ ଗୁରୁତର । ଏ ଘୋର ଅଶାନ୍ତିର ବୀଜ ହଠାତ୍ ଉପ୍ତ କରିବାରେ ମୁଁ ସାହସୀ ହେଉ ନାହିଁ । ତେବେ ତୁମର ସଦ୍‌ବ୍ୟବହାର, ସଦାଳାପ ପ୍ରଭୃତି ନାନା ସଦ୍‌ଗୁଣ ଦେଖି ଏ ସ୍ଥାନର ସମସ୍ତେ, ବିଶେଷତଃ ମୋର ପରମାରାଧ୍ୟ ପିତାମାତା ତୁମ ପ୍ରତି ସନ୍ତୁଷ୍ଟ ହୋଇଅଛନ୍ତି । ତୁମର ସ୍ନେହମୟୀ ଭଗିନୀ ମଧ୍ୟ ଏ ବିଷୟରେ ପକ୍ଷପାତିନୀ ହୋଇଥିବାର ଦେଖାଯାଏ । ଏପରି ଅବସ୍ଥାରେ ତୁମେ ଯେବେ ଛ' ମାସ ଅପେକ୍ଷା କର, ତେବେ ମୁଁ ଏ ବିଷୟରେ ମତ ପ୍ରକାଶ କରିବି । ତୁମମାନଙ୍କର ବାହ୍ୟ ଶାରୀରିକ କାମନା କିମ୍ବା ପ୍ରକୃତ ନିଃସ୍ୱାର୍ଥ ପ୍ରେମ ଜନ୍ମିଅଛି, ତାହା ମୁଁ ଜାଣିବାକୁ ପ୍ରୟାସୀ । ଏ ବିଷୟରେ ଗୋଟିଏ ସୂଚନା ଓ ଜନବାଦ

ଆରବ୍ଧ ହେଲେ, ଲୋକଙ୍କର ଏହା ସହ୍ୟ ହୋଇଗଲେ, ପ୍ରତିବନ୍ଧକ ତେତେ ଉତ୍କଟ ନ ହୋଇପାରେ । ସହିଷ୍ଣୁତା ସର୍ବତ୍ର ଯେପରି, ଏଠାରେ ମଧ୍ୟ ସେହିପରି ସୁଫଳପ୍ରଦ ହୋଇପାରେ ।''

ଏହି ପରାମର୍ଶ ପରେ ରାଜେନ୍ଦ୍ର ଉମାଠାରେ ପ୍ରାଣ ଅର୍ପଣକରି ସ୍ୱଗ୍ରାମକୁ ପ୍ରତ୍ୟାଗତ ହେଲେ । ଜଣଜଣଙ୍କର ଏପରି ସ୍ୱଭାବ ଯେ, ସେମାନେ ଏକସମୟରେ ଏକାଧିକ ବିଷୟରେ ମନୋନିବେଶ କରିପାରନ୍ତି ନାହିଁ, ସମଗ୍ର ମାନସିକ ଶକ୍ତି ଏକ ବିଷୟରେ କେନ୍ଦ୍ରୀଭୂତ କରନ୍ତି । ରାଜେନ୍ଦ୍ର ସେହି ଶ୍ରେଣୀର ବ୍ୟକ୍ତି । ଏବେ ଉଦ୍ଦାମ ଯୌବନ, ଉମାର ଅଲୋକସାମାନ୍ୟ ସୌନ୍ଦର୍ଯ୍ୟ, ବିଷାଦମାଧୁରୀଶାଣିତ ଅତୁଲ୍ୟ ଲାବଣ୍ୟ, ବର୍ଷଣୋନ୍ମୁଖ ନବଜଳଧରବତ୍ ସରସ ନୀଳାବଜ୍-ନିନ୍ଦୀ-ଲୋଚନଯୁଗଳ, ସୁଗଠିତ ପୂର୍ଣ୍ଣାବୟବ ଯୌବନଧୌତ ଚମ୍ପକଗୌର ଷୋଡ଼ଶୀ ମୂର୍ତ୍ତି, ତାହା ପ୍ରତି ସମାଜର ଅତ୍ୟାଚାର ଏହି ସମାଜ-ସଂସ୍କାରପ୍ରୟାସୀ ଯୁବକର ହୃଦୟ ତନ୍ମୟ କରିଦେଲା । ତା' ପକ୍ଷରେ ଜଗତ୍ ସଂସାର ଉମାମୟ ହୋଇଗଲା । ଉମାଲାଭ ଜୀବନର ଶ୍ରେଷ୍ଠ ବ୍ରତ ହେଲା । ରାଜେନ୍ଦ୍ର ଅନୁଦିନ ଅନ୍ୟମନସ୍କ, ଶୁଷ୍କକାୟ, କ୍ଷୀଣ ବିଷଣ୍ଣ ହେବାକୁ ଲାଗିଲେ ।

ରାଜେନ୍ଦ୍ରର ବିଦାୟ ସଙ୍ଗେ ସଙ୍ଗେ ଉମାର ଚାଞ୍ଚଲ୍ୟ, ଚାପଲ୍ୟ, ପରିହାସ, ରସିକତା ସମସ୍ତ ଅନ୍ତର୍ହିତ ହେଲା । ଆଗେ ଉମା ପରିଚିତ ଆତ୍ମୀୟ ପୁରୁଷ ସଙ୍ଗରେ ଅବାଧରେ ନିଃସଙ୍କୋଚରେ ମିଶୁଥିଲା । ମା' ଓ ତତୋଽଧିକ ପିଉସୀ ତୁଳସୀର ବାକ୍ୟବାଣ ପ୍ରତି ସେ ଭ୍ରୂକ୍ଷେପ କରୁ ନ ଥିଲା । କିନ୍ତୁ କି ମନ୍ତ୍ର ରାଜେନ୍ଦ୍ର ପଢ଼ିଲେ, ଆଉ ସେ ପୁରୁଷ ଛାଇ ମାଡ଼ିଲା ନାହିଁ । ହସ ଆଉ ତା' ମୁହଁରେ କେହି ଦେଖି ନାହିଁ । ଗୋଟିଏ ଗୋଟିଏ ଚରିତ୍ର ଅଛି, ସେ ପ୍ରହେଳିକାମୟ । ସେ ପାଣି ନୁହେଁ, ଯେ କ୍ଷଣେ ଭିନ୍ନ ହୋଇ କ୍ଷଣେ ମିଶିଯିବ । ସେ ପଥର ପରି ଟାଣ, ସହଜରେ ଭାଙ୍ଗେ ନାହିଁ – ଥରେ ଭାଙ୍ଗିଲେ ଆଉ ଯୋଡ଼ିହେବା କଠିନ । ଉମାର ଚରିତ୍ର ସେହିପରି । ପରିହାସମୟୀ ବାଳିକା କେତୋଟି ଦିନରେ ନାରୀତ୍ୱର ଗୌରବ, ଗୁରୁତା, ଗାମ୍ଭୀର୍ଯ୍ୟ ଅନୁଭବ କରି ତହିଁରେ ନତ ହୋଇଗଲା । ତାହାର ଜୀବନର ଗୋଟାଏ ମହତ୍ ଲକ୍ଷ୍ୟ ତା' ସମ୍ମୁଖରେ ପ୍ରତିଭାତ ହୋଇଅଛି ।

ରାଜେନ୍ଦ୍ର ପ୍ରତି ଉମାର ଭାବ ତୁଳସୀର ଅଜ୍ଞାତ ରହିଲା ନାହିଁ । ସେ ତାହାର କଥାରୁ ତାହାର ହୃଦୟର ଗଭୀରତମ ପ୍ରଦେଶର ଭାବ ଜାଣିନେଲା । ମାନବ ଜୀବନରେ ଏହିପରି ଏକ ସମୟ ଆସେ, ଯେତେବେଳେ ଉଦ୍‌ବୁଦ୍ଧ,

ଜାଗ୍ରତ, ନବୀନ ପ୍ରେମକୁ ସେ ଆଉ ରୋଧ କରି ରଖିପାରେ ନାହିଁ । ପ୍ରଥମ ଆଷାଢ଼ରେ ନିଃସୃତ ପ୍ରଖର ସ୍ରୋତ ଯେପରି ତୀର ତରୁବ୍ରଜ ଉତ୍ପାଟନପୂର୍ବକ କ୍ଷିପ୍ତ ଧୂର୍ଜଟିବତ୍ ପ୍ରଧାବିତ ହୋଇ ସିନ୍ଧୁ ସଙ୍ଗରେ ମିଳିତ ହେବାକୁ ଉନ୍ମତ୍ତ ହୁଏ, ସେହିପରି ମାନବ ନବୀନ ଉଦ୍ଦାମ ପ୍ରେମଧାରା ପ୍ରିୟତମଠାରେ ସମର୍ପଣ କରିବାକୁ ଉତ୍କଣ୍ଠିତ ହୁଏ । ଚିରପରିଚିତ ସ୍ନେହମୟ ସଖାଗଣ ଆଉ ତାହାର ହୃଦୟର ସେ ମହାଶୂନ୍ୟ ପୂରଣ କରିପାରନ୍ତି ନାହିଁ, ସେ ମହା ଅଭାବ ମୋଚନ କରିପାରନ୍ତି ନାହିଁ, ଅଶାନ୍ତ ହୃଦୟ ତୃପ୍ତ କରିପାରନ୍ତି ନାହିଁ । ସେତେବେଳେ ମାନବ କଳ୍ପନା ନିର୍ମିତ ସ୍ୱପ୍ନରାଜ୍ୟରେ ବୁଲି ଦୂରସ୍ଥ ଅପରିଚିତ ସ୍ୱୀୟ ବାସନାରାଜ୍ୟବାସୀ ପ୍ରିୟତମଙ୍କୁ ଅନନ୍ତ ଆକାଶରେ ବିଶାଳ ଧରଣୀରେ ଲୋଡ଼ି ତାଙ୍କରି ଶ୍ରୀଚରଣ-ସରୋଜରେ ପ୍ରାଣ ସମର୍ପଣ କରିବାକୁ ପ୍ରୟାସୀ ହୁଏ । ସେହି ବିଚିତ୍ର ସୁଖମୟ ଦୁର୍ବିଷହ ହଳାହଳପୂର୍ଣ୍ଣ ଅମୃତ ମୁହୂର୍ତ୍ତ ରାଜେନ୍ଦ୍ର ଓ ଉମାର ଜୀବନରେ ଉପସ୍ଥିତ ହୋଇଅଛି ।

ଯୁବକ, ଯୁବତୀ ! ଏ ବଡ଼ ବିଷମ ସମୟ, ବିଷମ ଅବସ୍ଥା । ଧର୍ମ କେବଳ ଏ ବେଳର ସହାୟ । ପୁରାକାଳରେ ଜଣେ ଭୁବନବିଖ୍ୟାତ ବୀରଙ୍କ ଜୀବନର ସନ୍ଧିସ୍ଥଳରେ ଏହି ସମସ୍ୟା ଉପସ୍ଥିତ ହୋଇଥିଲା । ସେ ତାହାର ସୁନ୍ଦର ମୀମାଂସା କରିଥିଲେ । କଥିତ ଅଛି, ସେ ଦିନେ ଗନ୍ତବ୍ୟ ପଥରେ ଅଗ୍ରସର ହେଉ ହେଉ ଗୋଟିଏ ତେମୁହାଣୀ ଛକରେ ଉପସ୍ଥିତ ହେଲେ । ଯୁବକ ବୀର ଏକାକୀ; ସମ୍ମୁଖରେ ଦୁଇ ରମଣୀମୂର୍ତ୍ତି ଦଣ୍ଡାୟମାନ । ତନ୍ମଧ୍ୟରୁ ଜଣେ ମନୋମୋହିନୀ, କୁଞ୍ଚିତକୁନ୍ତଳା, ଚାରୁଭ୍ରୂଲତାଶୋଭିନୀ, ମଦାଳସା । ଅଧରପଲ୍ଲବ ଯତିଜନମନୋହର ଦରହାସର କନକକିରଣମୟୂଖରେ ଉଦ୍ଭାସିତ । ଆକର୍ଣ୍ଣବିସ୍ତୃତ ପଦ୍ମପଳାସ-ଲୋଚନରେ ଅପୂର୍ବ ଅପାଙ୍ଗ ଲୀଳାଖେଳା କରୁଅଛି । ସେ ଦେବବାଞ୍ଛିତା ରମ୍ଭୋରୁ କାମିନୀ ଶୁଭ୍ରଶଙ୍ଖସଙ୍କାଶ ଗ୍ରୀବା, କନକ ବକ୍ଷ, କଟିତଟ ଓ ସୁଗଠିତ ସର୍ବାଙ୍ଗରେ ଯଥୋପଯୁକ୍ତରୂପେ ନାନା ରତ୍ନାଳଙ୍କାର ସମନ୍ୱିତା । ତ୍ରିଭଙ୍ଗ ଠାଣିରେ ଠିଆହୋଇ ଏହି ତ୍ରିଭୁବନ ବିଜୟିନୀ ରମଣୀ ଯୁବକଙ୍କୁ କଟାକ୍ଷସହକାରେ ବୀଣାବିନିନ୍ଦୀ ସ୍ୱରରେ କହିଲା, ''ଯୁବକ, ଆସ ମୋ ସଙ୍ଗରେ । ସୁଖର ଅକ୍ଷୟ ଉତ୍ସ ତୁମ୍ଭ ନିକଟରେ ଉଦ୍‌ଘାଟିତ ହେବ, ସମସ୍ତ ଇନ୍ଦ୍ରିୟର ଭୋଗ୍ୟ ଅନନ୍ତ ଐଶ୍ୱର୍ଯ୍ୟ ଲାଭକରିବ, ଆସ; ଏହି ମୋର

ପଥ କୁସୁମାସ୍ତରଣଶୋଭିତ, ଏହି ଫୁଟନ୍ତ ଯୌବନ ତୁମ୍ଭର ଉପଭୋଗ୍ୟ । ନିଅ, ଭୋଗକର । ଏହାକୁ ଅକାରଣ ବିନଷ୍ଟ କର ନାହିଁ । ବୃଥା ସମୟକ୍ଷେପ ନ କର ।'' – ଯୁବକ ସ୍ତମ୍ଭିତ ।

ଅନ୍ୟ ମୂର୍ତ୍ତି ସରଳା, ସ୍ଥିରଦୃଷ୍ଟିଶୀଳା, ଆଲୁଳାୟିତକୁନ୍ତଳା, ଚକ୍ଷୁ ଉଜ୍ଜ୍ୱଳ ଓ ସ୍ଥିରଦୃଢ଼ତାବ୍ୟଞ୍ଜକ, ଧୀର, ବିନମ୍ର, ସରଳ ଅଙ୍ଗଯଷ୍ଟି ଦିବ୍ୟବିଭାଯୁକ୍ତ; ନେତ୍ରପ୍ରଭା ସହିତ କରୁଣା, ପବିତ୍ରତା, କାତରତା ମିଶ୍ରିତ । ଦେବୀ ଧୀର ପ୍ରଶାନ୍ତ ଭାବରେ କହିଲେ, ''ମୋର ପଥ କଣ୍ଟକପୂର୍ଣ୍ଣ, ଅସିଧାରବତ୍ ସଂକୀର୍ଣ୍ଣ । ଦୃଢ଼, ଧୀର, ସାବଧାନଭାବେ ଅଗ୍ରସର ନ ହେଲେ ମହା ବିପଦର ସମ୍ଭାବନା । ମୋର ପଥ ସଂଯମର ପଥ, ନିବୃତ୍ତିର ପଥ, ପବିତ୍ରତାର ପଥ, ତପସ୍ୟାର ପଥ, ସ୍ୱାର୍ଥତ୍ୟାଗର ପଥ, କିନ୍ତୁ ପରିଣାମରେ ଭୂମାନନ୍ଦ ଦେବଦୁର୍ଲଭ ସୁଖ ଶାନ୍ତି । ହେ ଯୁବକ ! ସାହସ, ସଂଯମ ଓ ମନୁଷ୍ୟତା ଯେବେ ଥାଏ, ତେବେ ଆସ ମୋ ସାଙ୍ଗରେ ।'' ଯୁବକବୀର ଅବିଚଳିତ ଭାବରେ ଶେଷୋକ୍ତ ସ୍ୱର୍ଗଦୂତଙ୍କ ସଙ୍ଗରେ ଯାଇ ଜଗତରେ ଅକ୍ଷୟ କୀର୍ତ୍ତି ଲାଭକଲେ । ବିଳାସର ପଥ ନରକର ପଥ; କର୍ତ୍ତବ୍ୟର ପଥ ସ୍ୱର୍ଗର ପଥ । ହେ ରାଜେନ୍ଦ୍ର, ଉମାର ଏହି ଆଦର୍ଶ କି ତୁମ୍ଭମାନଙ୍କ ଜୀବନକୁ ପ୍ରଭାବିତ କରିବ ନାହିଁ ?

କିଛିଦିନ ପରେ ରାଜେନ୍ଦ୍ର ଶୁଣିଲେ ଯେ, ଉମା ଆଉ ଇହସଂସାରରେ ନାହିଁ, ବିସୂଚିକାରୋଗରେ ତୁଳସୀ ଦେଈ ସହିତ ଉମା ପ୍ରାଣତ୍ୟାଗ କରିଅଛି । ତାହାର ବିଷାଦମୟ ଜୀବନକୁସୁମ ଅକାଳରେ କୀଟଦଷ୍ଟ ହୋଇଅଛି । ସେ ବାଜେଣୀ ବୀଣାର ତାର ଅକାଳରେ ଛିଡ଼ିଯାଇଅଛି । ଅକାଳରେ ସେ ଇନ୍ଦୁକଳା ନିଷ୍ପ୍ରଭ ହୋଇଅଛି । ହାୟ ! ଉମାର ମୃତ୍ୟୁର ପ୍ରକୃତ କାରଣ ରାଜେନ୍ଦ୍ରଙ୍କର ଆଉ ବୁଝିବାକୁ ବାକି ରହିଲା ନାହିଁ । ସେହି ଦିନୁ ଆଉ କେହି ରାଜେନ୍ଦ୍ରଙ୍କୁ ଦେଖି ନାହିଁ । ଉଚ୍ଛୃଙ୍ଖଳ ଉନ୍ମତ୍ତବତ୍ ଯୁବକ ନିରୁଦ୍ଦିଷ୍ଟ ହେଲେ । ହରିଚନ୍ଦନ କଟକ, ପୁରୀ, କଲିକତା ଆଦି ନାନା ସ୍ଥାନ ଖୋଜାଇ ହୁଲିଆ ଦେଇ ନିରସ୍ତ ହେଲେ ।



## ପଞ୍ଚଦଶ ପରିଚ୍ଛେଦ

ଧନଞ୍ଜୟ ପୁରୀରେ ଓକିଲାତି କରି ସ୍ଥାୟୀ ଜୀବନ ଆରମ୍ଭ କରିଅଛନ୍ତି । ଉମାର ଅପ୍ରତ୍ୟାଶିତ ଅନ୍ତର୍ଦ୍ଧାନ ଫୁଲଝରୀକୁ କନକ ପକ୍ଷରେ ଅସହ୍ୟ କରିଦେଲା । ସେ ନରକପୁରୀସଦୃଶ ସେହି ପାପପୁରୀକୁ ପରିତ୍ୟାଗ କରି ପୁରୀ ଯିବାକୁ ଉତ୍କଣ୍ଠିତ ହେଲା । ଧନଞ୍ଜୟ ଅଗତ୍ୟା ତାକୁ ପୁରୀ ନେଲେ । ଅନ୍ନପୂର୍ଣ୍ଣା ଓ ପାଇକରା ମଧ୍ୟ ସକଳଗୁଣାଧାର ପୁତ୍ର-ପୁତ୍ରବଧୂସଙ୍ଗରେ ରାମସୀତାହୀନ ଅଯୋଧ୍ୟା ପରି ସ୍ୱଗ୍ରାମ ପରିତ୍ୟାଗ କରି ପୁରୀବାସ କଲେ ।

ଲକ୍ଷ୍ମୀସ୍ୱରୂପିଣୀ କନକର ପୁଣ୍ୟବଳରେ ହେଉ ବା ନିଜର ଧୀଶକ୍ତି ଓ ଅଧ୍ୟବସାୟ ବଳରେ ହେଉ ବା ଉଭୟର ସମ୍ମିଳିତ ଫଳରୁ ହେଉ, ଧନଞ୍ଜୟଙ୍କ ଧନ,. ମାନ, ଯଶ, କୀର୍ତ୍ତି ସର୍ବତୋଭାବରେ ଉତ୍ତରୋତ୍ତର ଉନ୍ନତି ହେଲା । ସେ ନାନା ଦେଶହିତକର ଓ ସମାଜହିତକର କାର୍ଯ୍ୟରେ ପୁରୋବର୍ତ୍ତୀ ହୋଇ ରାଜସରକାର ଓ ଜନସମାଜ ଉଭୟତ୍ର ଯଶସ୍ୱୀ ହେଲେ । ସମୁଦ୍ରକୂଳରେ ପ୍ରକାଣ୍ଡ ଅଟ୍ଟାଳିକା ପ୍ରସ୍ତୁତ ହେଲା ଏବଂ ନାନା ସତ୍‌କାର୍ଯ୍ୟରେ ତାଙ୍କର ସଦୁପାର୍ଜ୍ଜିତ ଅର୍ଥ ବ୍ୟୟିତ ହେଲା । ସେ ଅବିଳମ୍ବରେ ରାଜଦ୍ୱାରରେ ସମ୍ମାନିତ ହେଲେ । ଏତେ ସମ୍ପଦ ମଧ୍ୟରେ ଥାଇ ମଧ୍ୟ ସେମାନେ ନିର୍ଲିପ୍ତ ନିଷ୍କାମ ଭାବରେ ସ୍ୱକର୍ତ୍ତବ୍ୟମାନ ପାଳନ କରି କରି ଧର୍ମପଥରେ ଅଗ୍ରସର ହେଉଅଛନ୍ତି । 'ବ୍ରହ୍ମନିଷ୍ଠୋଗୃହସ୍ଥ୍ୟ ସ୍ୟାତ୍ ତତ୍ତ୍ୱଜ୍ଞାନପରାୟଣଃ । ଯତ୍ ଯତ୍ କର୍ମ ପ୍ରକୁର୍ବୀତ ତଦ୍‌ବ୍ରହ୍ମଣି ସମର୍ପୟେତ ।' – ଏହା ସେମାନଙ୍କ ଜୀବନରେ ସାର୍ଥକ ହୋଇଅଛି । କନକ ବହୁ ସନ୍ତାନର ଜନନୀ ହୋଇ ମଧ୍ୟ ଶୃଙ୍ଖଳା ଓ କାର୍ଯ୍ୟ ବିଭାଗଦ୍ୱାରା ଆଦର୍ଶ ଗୃହିଣୀ ହୋଇପାରିଅଛି । ଅଥଚ ଆବାଲ୍ୟ ନିୟମିତ ଅଭ୍ୟାସ ଯୋଗୁଁ ନାନା ସଦ୍‌ଗ୍ରନ୍ଥ ପାଠ ଏବଂ ପାକପ୍ରଣାଳୀ, ଗାର୍ହସ୍ଥ୍ୟବିଧାନ, ଶିଶୁପାଳନ ତଥା ବିବିଧବିଷୟକ କବିତା, ଗଳ୍ପ ଓ ଜୀବନଚରିତ ରଚନାକରି ଦେଶରେ ଖ୍ୟାତିଲାଭ କରିଅଛି । ରାଜେନ୍ଦ୍ରର ଗୀତାଧର୍ମ ସେ ସାଧନ କରିବାକୁ ଯତ୍ନ କରିଅଛି । ପ୍ରବୀଣ ପଣ୍ଡିତ ସାହାଯ୍ୟରେ ସ୍ୱାମୀ ସ୍ତ୍ରୀ ଗୀତାଧର୍ମ ଅନୁଶୀଳନ କରିଅଛନ୍ତି ଓ ଗୀତାର ନିଃସ୍ୱାର୍ଥ ଧର୍ମ ଗୃହସ୍ଥାଶ୍ରମରେ ପ୍ରୟୋଗ କରୁଅଛନ୍ତି ।

'ସସ୍ତ୍ରୀକୋ ଧର୍ମମାଚରେତ୍' ଏହି ଦମ୍ପତିଠାରେ ସାର୍ଥକ ହୋଇଅଛି । ଏକ ଆତ୍ମା, ଏକ ଉପାୟ, ଏକ ଉଦ୍ଦେଶ୍ୟ । ଏକର ଭାବ ଅନ୍ୟର କାର୍ଯ୍ୟରେ ପ୍ରକଟିତ ହେଉଅଛି । ସବୁ କରନ୍ତି, କାହିଁରେ ଲିପ୍ତ ନ ଥାନ୍ତି । ପାଇକରା ଯଥାସମୟରେ ପୌତ୍ର-ପୌତ୍ରୀମାନଙ୍କ ମୁଖାରବିନ୍ଦ ଚୁମ୍ବନ ଓ ବାଳଗୋପାଳଙ୍କର ପଦଧୂଳି ସ୍ୱବକ୍ଷରେ ଧାରଣପୂର୍ବକ ଅପୂର୍ବ ସୁଖଶାନ୍ତି ସମ୍ଭୋଗକଲେ । ସୁଦକ୍ଷ ଗୁମାସ୍ତା ଉଦ୍ଧବ ମଲ୍ଲ ଜମିଦାରୀ ଆଦିର ସୁବ୍ୟବସ୍ଥା କରି ବିଷୟ-ସମ୍ପତ୍ତି ଅତି ସୁନ୍ଦରରୂପେ ପରିଚାଳନା କଲେ । ଭଗବାନ୍‌ଙ୍କ କରୁଣା ହେଲେ ନାରିକେଳଫଳାମ୍ବୁବତ୍ ନାନା ଅପ୍ରତ୍ୟାଶିତ ଭାବରେ ଅର୍ଥାଗମ ଓ ଅଭ୍ୟୁଦୟ ହୁଏ । ତତ୍‌ବ୍ୟତିରେକେ 'ଗଜଭୁକ୍ତକପିତ୍‌ଥବତ୍' କେଉଁଆଡ଼େ ଅନ୍ତର୍ହିତ ହୁଏ । ହରିଚନ୍ଦନ ସପରିବାର ଆସି କେତେଥର କନକଲତାକୁ ସଙ୍ଖୁଳିଗଲେଣି ଓ ତା'ର ସନ୍ତାନାଦି ହବାପରେ ନାତି-ନାତୁଣୀଙ୍କୁ ସଙ୍ଖୁଳିଗଲେଣି । ତାଙ୍କର ସୁଖ ବା ଦୁଃଖ ଯାହା କହନ୍ତୁ, କନକର ଚାରୋଟି ପୁଅ ଓ ଚାରୋଟି ଝିଅ ବୁଢ଼ାଙ୍କ ଉପରେ ଚଢ଼ି ତାଙ୍କ ନିଶ ଟାଣି ଅଭିମନ୍ୟୁଙ୍କୁ ସପ୍ତରଥୀ ବେଢ଼ିଲାପରି ଅସ୍ତବ୍ୟସ୍ତ କରନ୍ତି । ପଦ୍ମାବତୀ ଏ ସୁଖ ଦେଖି ମନେ କରନ୍ତି– ରାଜେନ୍ଦ୍ର ଯୋଗୁଁ ସିନା କନକର ଏତେ ସୁଖ ! ହାୟ ! 'ଗଲା ପୁତ୍ର ବାହୁଡ଼ି ନଇଲା ଲୋ କୋଇଲି' ପ୍ରାଣରେ ପ୍ରତିଧ୍ୱନିତ ହୁଏ । ଟୁଆଁବାବୁ ଓରଫ୍ ଅଭିରାମ ଏହି ସ୍ଥାନରେ ଜନୈକ ଡେପୁଟିରୂପେ ଅବସ୍ଥିତ । ସରକାରୀ ଓକିଲ ଧନଞ୍ଜୟ ରାୟ ଯେତେବେଳେ ଟୁଆଁବାବୁଙ୍କ ମିଶଲରେ ଠିଆହୋଇ 'ହଜୁର' ସମ୍ବୋଧନ କରି କହନ୍ତି, ସେତେବେଳେ ଜାଣିବା ଲୋକେ ହାସ୍ୟ ସମ୍ବରଣ କରିପାରନ୍ତି ନାହିଁ । ଏହି ପାପର ପ୍ରାୟଶ୍ଚିତ୍ତ କରିବା ଉଦ୍ଦେଶ୍ୟରେ ଟୁଆଁବାବୁ ଘରେ ଆସି ପିତୃସ୍ୱସାଙ୍କ ପଦଧୂଳି ମସ୍ତକରେ ଗ୍ରହଣ କରନ୍ତି । ରତ୍ନମଞ୍ଜରୀ ସତକୁ ସତ କେନ୍ଦ୍ରାପଡ଼ାନିବାସୀ ଜଣେ ବିଲାତଫେରନ୍ତା ପ୍ରଫେସର୍‌ଙ୍କ ଅଙ୍କ ଶୋଭିତ କରିଅଛନ୍ତି । ସଂକ୍ଷେପତଃ ଏହି ବର୍ଦ୍ଧିଷ୍ଣୁ ପରିବାର ଦିଓଟି ଦେଶବିଖ୍ୟାତ ହୋଇଅଛନ୍ତି । ଏମାନଙ୍କ ଯତ୍ନରେ ଅଳ୍ପଦିନେ ପୂର୍ବେ ଗୋଟିଏ ବାଳବିଧବା ବ୍ରାହ୍ମଣ-ବାଳିକାର ବିବାହ ହୋଇଯାଇଅଛି । ଶୀତଳ ଜଳର ଗଭୀର ପ୍ରଦେଶରେ ବଡ଼ବାନଳସଦୃଶ ଏହି ହାସ୍ୟମୟ ପରିବାରରେ 'ରାଜେନ୍ଦ୍ର-ଉମା' ବିଷୟକ ଗଭୀରତମ ବିଷାଦ କାହାଣୀର ସ୍ମୃତି ପ୍ରଜ୍ୱଳିତ ହେଉଥାଏ । ହାୟ ! କେବେ କେଉଁ ଯୁଗରେ ରାଜେନ୍ଦ୍ର-ଉମା ମିଳନ ହେବ । ହେବ କି ?

## ଷୋଡ଼ଶ ପରିଚ୍ଛେଦ

ଦିନେ ଶୁଣାଗଲା ଯେ ଜଗନ୍ନାଥ ମନ୍ଦିର ବେଢ଼ାରେ ହରଦ୍ୱାରରୁ ଆଗତ ଜଣେ ଭାରତବିଖ୍ୟାତ ସନ୍ନ୍ୟାସୀ ଗୀତାର ନିଷ୍କାମଧର୍ମ ବିଷୟରେ ବକ୍ତୃତା- ଦେବେ । ପୁରୀର ତାବତୀୟ ଭଦ୍ରବ୍ୟକ୍ତି ଉପସ୍ଥିତ ହେଲେ । ଧନଞ୍ଜୟ ପରିବାର ମଧ୍ୟ ଅଭ୍ୟସ୍ତ ସାନ୍ଧ୍ୟଦର୍ଶନସୂତ୍ରରେ ବକ୍ତୃତା ଶୁଣିଲେ । ବକ୍ତା ଅନର୍ଗଳ ପ୍ରାଞ୍ଜଳ ସଂସ୍କୃତ ସଙ୍ଗେ ସଙ୍ଗେ ବିଶୁଦ୍ଧ ଇଂରେଜୀ ଅନୁବାଦ କରି ସ୍ୱୀୟ ବକ୍ତବ୍ୟ ମନୋହରଭାବରେ ପ୍ରକାଶ କରୁଥିଲେ । ତଦୀୟ ପରିପକ୍ୱ ଜ୍ଞାନ, ଗଭୀର ସାଧନା, ନିରହଙ୍କାର ଭାବ, ଅପୂର୍ବ ବ୍ୟକ୍ତିତ୍ୱ ସଂଦର୍ଶନକରି ଶ୍ରୋତୃମଣ୍ଡଳୀ ମନ୍ତ୍ରମୁଗ୍ଧବତ୍ ଶ୍ରବଣ କରୁଥିଲେ । ସ୍ୱପ୍ନଦୃଷ୍ଟବତ୍ ବକ୍ତାଙ୍କର ସୌମ୍ୟମୂର୍ତ୍ତି ଦର୍ଶନକରି କନକଲତାର ଲୋତକଧାରା ବହିଯାଉଥିଲା । ଧନଞ୍ଜୟ କନକର ସଂସ୍କୃତ-ଚର୍ଚ୍ଚା, ବିଶେଷତଃ ଗୀତାନୁଶୀଳନ ଅବଗତ ଥିବାରୁ ଏଥିରେ ବିସ୍ମିତ ହେଲେ ନାହିଁ । କନକର କ୍ରନ୍ଦନର କାରଣ କିନ୍ତୁ ଭିନ୍ନ । ସେ ଏ ସନ୍ନ୍ୟାସୀଙ୍କୁ ରାଜେନ୍ଦ୍ର ବୋଲି ଚିହ୍ନିଥିଲା ।

ପ୍ରକୃତ ପ୍ରେମ କେବେ ବୃଥା ହୁଏ ନାହିଁ । ରାଜେନ୍ଦ୍ର ଉମାକୁ ହରାଇ ଉଦ୍‌ଭ୍ରାନ୍ତବତ୍ ଭାରତର ନାନା ତୀର୍ଥ, ନଗର, ଗିରିକନ୍ଦର ପରିଭ୍ରମଣପୂର୍ବକ ନାନା ସାଧୁ-ସନ୍ନ୍ୟାସୀଙ୍କ ସାହଚର୍ଯ୍ୟ ଲାଭକରି ପ୍ରକୃତ ଆତ୍ମୋନ୍ନତି ସାଧନ କରିଅଛନ୍ତି । ନାନା ସ୍ଥାନରେ ସମାଜହିତକାରୀ ସମ୍ପ୍ରଦାୟ ସଙ୍ଗରେ ମିଳିମିଶି ପ୍ରାଣ ମନ ସମର୍ପଣକରି ଜନହିତକର କାର୍ଯ୍ୟ ସମ୍ପାଦନ ଓ ଦରିଦ୍ରନାରାୟଣଙ୍କ ସେବାନୁଷ୍ଠାନପୂର୍ବକ ଜ୍ଞାନ, କର୍ମ ଓ ଭକ୍ତି ତ୍ରିଯୋଗ ସାଧନ କରି ପ୍ରାଣକୁ ପବିତ୍ର ଓ ହୃଦୟକୁ ଗଭୀର କରିଅଛନ୍ତି । ବାଲ୍ୟକାଳର ଗୀତାଭକ୍ତି କାଳେ ଗୀତାଧର୍ମସାଧନ ଓ ତହିଁରେ ସିଦ୍ଧିରେ ପରିଣତ ହେଲେ । ନିଜେ ସାଧକଦଳ ଗଠନକରି ମହାମଣ୍ଡଳୀର ଅଧିନାୟକ ନିର୍ବାଚିତ ହେଲେ । ସର୍ବୋପରି ସେବା ତଦୀୟ ଦଳର କର୍ତ୍ତବ୍ୟ ହେଲା । କାଶୀ, ଦ୍ୱାରକା, ହରଦ୍ୱାର, ରାମେଶ୍ୱର ପ୍ରଭୃତିରେ ତଦୀୟ ଦଳ ବିପନ୍ନସାହାଯ୍ୟ, ଦରିଦ୍ରସେବା ପ୍ରଭୃତି ନିମିତ୍ତ ଖ୍ୟାତି

ଲଭିଲେ । ବହୁକାଳ ପରେ ଶେଷରେ ପୁରୀରେ ପହଞ୍ଚିଲେ । କନକଲତା ପରିବାର ସହିତ ତାଙ୍କର ପ୍ରଭାସମିଳନ ସଦୃଶ ଆହ୍ଲାଦଜନକ ମିଳନ ହେଲା । ଯୋଗକୁ ହରିଚନ୍ଦନ ପରିବାର ମଧ୍ୟ ସେ ସମୟକୁ ପୁରୀ ଆସିଥିଲେ ।

କିନ୍ତୁ ହାୟ ! 'ଦୁର୍ଗାପ୍ରତିମ' ପଦ୍ମାବତୀଙ୍କୁ ଆଉ ରାଜେନ୍ଦ୍ର ଦେଖିଲେ ନାହିଁ । ସେ ପ୍ରିୟତମ କନିଷ୍ଠ ପୁତ୍ରର ବିଚ୍ଛେଦଦ୍ୱାରା ଦଗ୍ଧୀଭୂତା ହୋଇ କିୟତ୍‌କାଳ ପୂର୍ବେ ଇହଲୀଳା ସମ୍ବରଣ କରିଥିଲେ । ଶେଷ ମୁହୂର୍ତ୍ତରେ 'ହା ରାଜେନ୍ଦ୍ର' କହିବା ପରେ ତାଙ୍କର ଅମର ପବିତ୍ର ଆତ୍ମା ଦେହପଞ୍ଜର ପରିତ୍ୟାଗକରି ଅମରଧାମକୁ ମହାପ୍ରସ୍ଥାନ କରିଥିଲା । ଏହି ସମ୍ବାଦ ଶୁଣି 'ଦୁଃଖିନୀ ଜନନୀ' ଉଚ୍ଚାରଣକରି ଦୀର୍ଘକାଳବ୍ୟାପୀ କଠୋର ନିବୃତ୍ତିପନ୍ଥାପଥିକ କୌପୀନଧାରୀ ସେହି ବୈରାଗୀଙ୍କ ନେତ୍ରପ୍ରାନ୍ତରେ ଅଶ୍ରୁବିନ୍ଦୁ ଦେଖାଗଲା । ସେ ଗଭୀର ସମାଧିରେ ନିମଜ୍ଜିତ ହେଲେ । ତଦୀୟ ଆତ୍ମା ପରମାତ୍ମାଙ୍କଠାରେ ଜନନୀଙ୍କୁ ଲୋଡ଼ିଲା କି ? ପଦ୍ମାବତୀଙ୍କ ପ୍ରତିମୂର୍ତ୍ତି କନକଲତା ଯେତେବେଳେ ପ୍ରିୟ ସହୋଦରଙ୍କ ଶରୀର ଆଶ୍ଳେଷଣ କରୁଥିଲେ, ତେତେବେଳେ ଭିତରେ ବାହାରେ ଜନନୀଙ୍କୁ ଦେଖି ଅର୍ଦ୍ଧନିମୀଳିତଲୋଚନ ବୈରାଗୀ ଉଚ୍ଚାରଣ କଲେ, 'ମା! କି ଆରାମଦାୟୀ ତୋର ସ୍ପର୍ଶ !' ଆହା ଜଗତକୁ ପ୍ରଥମ ଆଗମନ ଓ ଜଗତରୁ ଶେଷ ମେଲାଣିବେଳେ ମା' ଜନନୀ ଜଗଦ୍ଧାତ୍ରୀ ହେ ନାରି ! ପ୍ରାଣୀକୁ ଆରାମ ଓ ଶାନ୍ତିଦେବା ନିମିତ୍ତ ତୋତେ କି କାରୁଣିକ ବିଧି ପ୍ରେରଣ କରିଅଛନ୍ତି ? ଭାରତର ନାନା ଦିଗ୍‌ଦେଶପର୍ଯ୍ୟଟକ ସନ୍ନ୍ୟାସୀ-ସମ୍ପ୍ରଦାୟ-ଲଲାମ ବିଖ୍ୟାତ ଜଗନ୍ନାଥ ଦାସଙ୍କର ଏବଂଭୂତ ବାଳକୋଚିତ ଭାବ ଦେଖି ଶିଷ୍ୟବର୍ଗ ବିସ୍ମିତ ହେଲେ ।

ଗୁଣ କେବେ ଲୁଚି ରହେ ନାହିଁ । ସନ୍ନ୍ୟାସୀଙ୍କ ଗୁଣ ମହକିଉଠିଲା । ସହରର ବିଶିଷ୍ଟତମ ଭଦ୍ରବ୍ୟକ୍ତିମାନଙ୍କ ଅନୁରୋଧରେ ଏହି ଜଗନ୍ନାଥ ଦାସ ପୁରୀରେ କିଛି ଦିନ ଅବସ୍ଥାନପୂର୍ବକ ବିବିଧ ବିଷୟରେ ବକ୍ତୃତା କରି ନାମସଂକୀର୍ତ୍ତନ, ଦରିଦ୍ରଭୋଜନ, କୁଷ୍ଠାଶ୍ରମ ସ୍ଥାପନ ପ୍ରଭୃତି କେତେକ ଅନୁଷ୍ଠାନ କରି ପୁଣି ଦେଶାଟନରେ ବହିର୍ଗତ ହେଲେ ।

ଯାଅ ସନ୍ନ୍ୟାସୀ, ଯାଅ ! ତୁମ୍ଭପରି ପରହିତରତ ସାଧୁଜନଙ୍କଦ୍ୱାରା ଦେଶ ପବିତ୍ର ଓ ଧନ୍ୟହେଉ ଏବଂ ପୃଥିବୀ ସ୍ୱର୍ଗରେ ପରିଣତ ହେଉ । ବାହାରେ

ରାଜେନ୍ଦ୍ର ଓ ଭିତରେ କନକ ସେହି ଏକ ଧର୍ମ ପାଳନ କରୁଅଛନ୍ତି । କନକ ପରିବାର ଭିତରେ ଥାଇ ବନ୍ଧୁବାନ୍ଧବ, ଅତିଥି ଅଭ୍ୟାଗତ, ସ୍ୱାମୀ, ପୁତ୍ର, ଶ୍ୱଶୁର, ଶାଶୂ, ଦାସଦାସୀ ପ୍ରଭୃତିଙ୍କ ସେବାକରୁଅଛି ଏବଂ ରାଜେନ୍ଦ୍ର ଦେଶବିଦେଶ, ପରିଚିତ-ଅପରିଚିତ, ସ୍ୱଧର୍ମୀ-ଅନ୍ୟଧର୍ମୀ, ସ୍ଥୂଳତଃ ବିଶ୍ୱପରିବାର ମଧ୍ୟରେ 'ସେବାଧର୍ମ' ପାଳନ କରୁଅଛନ୍ତି । ଏକ ଲତାରେ ଦିଓଟି ପୁଷ୍ପ ପ୍ରସ୍ଫୁଟିତ ହୋଇଥିଲେ । ଉଭୟ ବିଶ୍ୱପିତାଙ୍କ ଶ୍ରୀଚରଣସରୋଜରେ ଶୋଭା ପାଉଅଛନ୍ତି, ସୌନ୍ଦର୍ଯ୍ୟ ଓ ସୌରଭ ବିକିରଣ କରି ବିଶ୍ୱଜନଙ୍କ ମନ ମୋହିତ କରୁଅଛନ୍ତି ଏବଂ ନିଜର ସତ୍ତା ସଫଳ ସାର୍ଥକ କରୁଅଛନ୍ତି । ରାଜେନ୍ଦ୍ର ଓ କନକଲତା! ଧନ୍ୟ ତୁମ୍ଭମାନଙ୍କର ଜନକ ଜନନୀ ! ଧନ୍ୟ ତୁମ୍ଭମାନଙ୍କର ଜୀବନ !



# ନନ୍ଦକିଶୋର : ସୃଷ୍ଟି ଓ ଦୃଷ୍ଟି

ଊନବିଂଶ ଶତାବ୍ଦୀ ଓଡ଼ିଆ ସାହିତ୍ୟ ପାଇଁ ଏକ ସ୍ୱତନ୍ତ୍ର ଅନୁଭବର ଅପେକ୍ଷା ରଖେ । ୧୮୦୩ ମସିହାରେ ଇଂରେଜମାନଙ୍କଦ୍ୱାରା ଓଡ଼ିଶା ଅଧିକୃତ ହୁଏ । ଓଡ଼ିଶାର ଜନସାଧାରଣଙ୍କ ସହିତ ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପନ ନିମିତ୍ତ ଇଂରେଜମାନେ ଏ ଦେଶରେ ଇଂରାଜୀ ଶିକ୍ଷାର ପ୍ରଚଳନ ନିମିତ୍ତ ପଦକ୍ଷେପମାନ ଗ୍ରହଣ କରନ୍ତି । ୧୮୩୫ ମସିହାରେ ଲର୍ଡ ମାକ୍‌ଲେଙ୍କ ଶିକ୍ଷାନୀତି ଦ୍ୱାରା ସରକାରୀ ଚାକିରି ନିମିତ୍ତ ଇଂରାଜୀ ଶିକ୍ଷାକୁ ବାଧ୍ୟତାମୂଳକ କରାଯାଏ । ଏହି କାରଣରୁ ଓଡ଼ିଆମାନଙ୍କ ମନରେ ଇଂରାଜୀ ଶିକ୍ଷା ନିମିତ୍ତ ଏକ ପ୍ରବଣତା ସୃଷ୍ଟି ହୁଏ । ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଓଡ଼ିଶାରେ ଏକ ଇଂରାଜୀ ଶିକ୍ଷିତ ଗୋଷ୍ଠୀଙ୍କର ଆବିର୍ଭାବ ହୁଏ । ଓଡ଼ିଆ ସାହିତ୍ୟକୁ ଊନବିଂଶ ଶତାବ୍ଦୀ ଏବଂ ବିଂଶ ଶତାବ୍ଦୀ ଆଦ୍ୟପାଦରେ ଯେଉଁମାନେ ଏକ ନୂତନ ଦୃଷ୍ଟିଭଙ୍ଗୀ ଏବଂ ସ୍ୱାଦ ପ୍ରଦାନ କରିଛନ୍ତି, ସେମାନଙ୍କର ଜନ୍ମ ଏହି ଊନବିଂଶ ଶତାବ୍ଦୀରେ । ଫକୀରମୋହନ, ରାଧାନାଥ, ମଧୁସୂଦନ, ଗଙ୍ଗାଧର, ଗୌରୀଶଙ୍କର, ବିଶ୍ୱନାଥ କର, ଜଗନ୍ମୋହନ ଲାଲ, ଉମେଶ ଚନ୍ଦ୍ର ସରକାର, ରାମଶଙ୍କର ଆଦିଙ୍କ ଜନ୍ମ ଊନବିଂଶ ଶତାବ୍ଦୀର କାଳଖଣ୍ଡରେ । ବାସ୍ତବରେ ଏମାନଙ୍କର ଆବିର୍ଭାବ ଥିଲା ତତ୍‌କାଳୀନ ଓଡ଼ିଶା ପାଇଁ ଏକ ଐତିହାସିକ ଆବଶ୍ୟକତା । ଏହି ଆବଶ୍ୟକତାର ପରିପୂରଣ ନିମିତ୍ତ ଅନ୍ୟ ଜଣେ ଉଦୟମାନ ସ୍ରଷ୍ଟାଙ୍କର ଆବଶ୍ୟକତା ରହିଥିଲା, ଯାହା ନନ୍ଦକିଶୋରଙ୍କ ଆବିର୍ଭାବ ତାହା ପୂରଣ କରିବାକୁ ସମର୍ଥ ହୋଇଥିଲା ।

## ଜନ୍ମ-ଜୀବନୀ

ନନ୍ଦକିଶୋର ବଳଙ୍କ ଆବିର୍ଭାବ କୁସୁପୁରର ପ୍ରାକୃତିକ ପରିବେଶରେ ୧୮୭୫ ମସିହା ନଭେମ୍ବର ୨୨ ତାରିଖରେ । ନିଜ ଗ୍ରାମର ପ୍ରାକୃତିକ ପରିବେଶ, ପ୍ରବହମାନା ବିରୂପା ନଦୀ ଏବଂ ଲଳିତଗିରି, ରତ୍ନଗିରି ଓ ଉଦୟଗିରି ପରି ବୌଦ୍ଧକୀର୍ତ୍ତି ତାଙ୍କ ମନରେ ସ୍ୱାଭାବିକ ଭାବରେ ପଲ୍ଲୀପ୍ରତି ମୋହ ସୃଷ୍ଟି କରିଥିଲା । ବୟସର ବୃଦ୍ଧି ସହିତ ତାଙ୍କ ସାରସ୍ୱତ ପ୍ରତିଭା ବିଚ୍ଛୁରିତ ହେବାକୁ ଲାଗିଲା । ସେ ଯେଉଁ ଅଞ୍ଚଳରେ ଜନ୍ମ ନେଇଥିଲେ, ତା'ର ୨୦।୨୫ କି.ମି. ଆୟତନ ମଧ୍ୟରେ ଜନ୍ମଗ୍ରହଣ କରିଥିଲେ କର୍ମଯୋଗୀ ଗୌରୀଶଙ୍କର, ଔପନ୍ୟାସିକ-ନାଟ୍ୟକାର ରାମଶଙ୍କର ରାୟ, ନାଟ୍ୟକାର ଜଗନ୍ମୋହନ ଲାଲ, ପ୍ରାବନ୍ଧିକ ଓ ସମ୍ପାଦକ ବିଶ୍ୱନାଥ କର, ଗୀତିନାଟ୍ୟକାର ବୈଷ୍ଣବ ପାଣି ଇତ୍ୟାଦି ସ୍ରଷ୍ଟାଗଣ । ଗୋଟିଏ ସାଂସ୍କୃତିକ ଓ

ସାହିତ୍ୟିକ ପରିବେଶରେ ସେ ଜନ୍ମଗ୍ରହଣ କରିଥିବାରୁ ତାଙ୍କ ସର୍ଜନଶୀଳ ପ୍ରତିଭାକୁ ତାହା ଗଭୀର ଭାବରେ ପ୍ରଭାବିତ କରିଥିଲା ।

୧୮୭୮ ମସିହାରେ କୁସୁପୁରଠାରେ ଗୋଟିଏ ପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇଥିଲା । ନନ୍ଦକିଶୋରଙ୍କ ବାଲ୍ୟଶିକ୍ଷା ଏହିଠାରେ ଆରମ୍ଭ ହୋଇଥିଲା । ୧୮୯୦ ମସିହାରେ ଯେଉଁ ନଅ ଜଣ ପ୍ରାଥମିକ ବୃତ୍ତି ପାଇଥିଲେ, ତନ୍ମଧ୍ୟରେ ନନ୍ଦକିଶୋର ଥିଲେ ଅନ୍ୟତମ । ତତ୍‌ପରେ ଉଚ୍ଚଶିକ୍ଷା ନିମିତ୍ତ ସେ ଟାଉନ୍ ହାଇସ୍କୁଲରେ ଯୋଗ ଦେଇଥିଲେ । ଏହିଠାରେ ସେ ବାଗ୍ମୀ ବିଶ୍ୱନାଥ କରଙ୍କ ସଂସ୍ପର୍ଶରେ ଆସିଥିଲେ । ମାଇନର ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ ସେ ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ଅଧ୍ୟୟନ ପାଇଁ ପ୍ରବେଶ କରିଥିଲେ । ସେତେବେଳେ ସେହି ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ମଧୁସୂଦନ ରାଓ । ମଧୁସୂଦନ ଓ ବିଶ୍ୱନାଥ ଉଭୟ ଥିଲେ ବ୍ରାହ୍ମଧର୍ମାବଲମ୍ବୀ । ନନ୍ଦକିଶୋର ଏହି ଉଭୟଙ୍କ ଗଭୀର ସାନିଧ୍ୟରେ ଆସିଥିବାରୁ, ସେମାନଙ୍କ ପ୍ରଭାବରେ ସେ ବ୍ରାହ୍ମଧର୍ମରେ ଦୀକ୍ଷିତ ହୋଇଯିବେ– ଏହି ଭୟରେ ତାଙ୍କୁ କେନ୍ଦ୍ରାପଡ଼ା ବିଦ୍ୟାଳୟକୁ ସ୍ଥାନାନ୍ତରିତ କରାଯାଇଥିଲା । ୧୮୯୫ ମସିହାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଉଚ୍ଚଶିକ୍ଷା ନିମିତ୍ତ ରେଭେନ୍‌ସା ମହାବିଦ୍ୟାଳୟରେ ଯୋଗଦେଇ ୧୮୯୯ ମସିହାରେ କୃତିତ୍ୱର ସହିତ ବି.ଏ. ପାସ୍ କରିଥିଲେ । ସଂସ୍କୃତ, ଇଂରାଜୀ, ବଙ୍ଗଳା ଓ ହିନ୍ଦୀ ଭାଷାରେ ତାଙ୍କର ରହିଥିଲା ଗଭୀର ବ୍ୟୁତ୍ପତ୍ତି । ଛାତ୍ରାବସ୍ଥାରେ ତାଙ୍କର ବିବାହ ହୋଇଥିଲା କୋକିଳା ଦେବୀଙ୍କ ସହିତ ।

ପ୍ରଥମରୁ ନନ୍ଦକିଶୋର 'ବଳ' ସଂଜ୍ଞାଧାରୀ ନ ଥିଲେ । ପିଲାଦିନରୁ ସେ ନିଜ ମାତାଙ୍କୁ ହରାଇଥିବାରୁ ପିଉସୀ ଜାନକୀଦେଈଙ୍କ ପୋଷ୍ୟପୁତ୍ର ହୋଇଯାଇଥିଲେ ଏବଂ ତାଙ୍କ ଅନୁସାରେ ସେ 'ବଳ' ସଂଜ୍ଞାଧାରଣ କରିଥିଲେ । ମାତ୍ର ତାଙ୍କର ପିତୃଦତ୍ତ କୁଳସଂଜ୍ଞା ଥିଲା 'ଜେନା' । କୁହାଯାଏ ନନ୍ଦକିଶୋରଙ୍କ ପୂର୍ବପୁରୁଷ ଯାଦବାନନ୍ଦ ଜେନା ଓ ମାଧବାନନ୍ଦ ଜେନା ଖୋର୍ଦ୍ଧା ନିକଟସ୍ଥ ରଥିପୁରଗଡ଼ରୁ ଆସି କୁସୁପୁରରେ ବସତି ସ୍ଥାପନ କରିଥିଲେ । ସେହି ବଂଶର ଉତ୍ତରାଧିକାରୀ ହେଉଛନ୍ତି ରସାନନ୍ଦ ଜେନା ଓରଫ୍ ନନ୍ଦକିଶୋର ବଳ । ଅତୀତରେ ଏହି ବଂଶର ଦାୟାଦଗଣ ଉତ୍କଳର ସେନାବିଭାଗରେ ବିଭିନ୍ନ ପଦପଦବୀରେ ମଣ୍ଡିତ ହୋଇ ବିଶେଷ ଗୌରବ ଅର୍ଜନ କରିଥିଲେ । ନନ୍ଦକିଶୋରଙ୍କ ସମୟ ବେଳକୁ ଉତ୍କଳର ସେହି ପରମ୍ପରା ବିଲୟ ଭଜିଥିଲା; ମାତ୍ର ସେ ଓଡ଼ିଆ ସାହିତ୍ୟର ସୈନିକ ଭାବରେ ନିଜ ସାହିତ୍ୟ ସାଧନାର ପରାକ୍ରମ ପ୍ରଦର୍ଶନ କରିବାରେ ସମ୍ପୂର୍ଣ୍ଣ ସଫଳ ହୋଇଥିଲେ । ବିଧିପ୍ରଦତ୍ତ ପ୍ରତିଭା ସହିତ ସାଂସ୍କୃତିକ ପରିମଣ୍ଡଳ ଏବଂ ନିଜ ଅଞ୍ଚଳର ପ୍ରାକୃତିକ ଶୋଭାରାଶି ତାଙ୍କ

ଅନ୍ତର୍ନିହିତ ସାହିତ୍ୟ ପ୍ରତିଭାକୁ ବିଶେଷ ଭାବରେ ପ୍ରଭାବଶାଳୀ କରିପାରିଥିଲା । ୧୯୨୭ ମସିହାରେ ମଧୁମେହ ରୋଗ ହେତୁ ତାଙ୍କ ଦୃଷ୍ଟିଶକ୍ତି ହ୍ରାସ ପାଇଥିଲା । ପୁଣି ଚାକିରି କ୍ଷେତ୍ରରେ ଉପରିସ୍ଥ କର୍ମକର୍ତ୍ତାଙ୍କ ସହିତ ପଦୋନ୍ନତି ନ ମିଳିବାରୁ ମନୋମାଳିନ୍ୟ ହେବାରୁ ଚାକିରିରୁ ସ୍ୱେଚ୍ଛାକୃତ ଅବସର ନେଇ କଟକରେ ଅବସ୍ଥାନ କାଳରେ ୧୯୨୮ ଜୁଲାଇ ୧ ତାରିଖରେ ତିରୋଧାନ ହୋଇଥିଲା । ସତୀଚଉରା ଠାରେ ତାଙ୍କର ଶେଷକୃତ୍ୟ ସମ୍ପନ୍ନ ହୋଇଥିଲା । ତାଙ୍କ ଅକାଳ ମୃତ୍ୟୁ ଓଡ଼ିଆ ସାରସ୍ୱତ ଜଗତପାଇଁ ଏକ ଅପୂରଣୀୟ କ୍ଷତି ସୃଷ୍ଟି କରିଥିଲା ।

## ବୃତ୍ତିଗତ ଜୀବନ

ନନ୍ଦକିଶୋରଙ୍କ ସମଗ୍ର ବୃତ୍ତିଗତ ଜୀବନ ଅତିବାହିତ ହୋଇଥିଲା ଶିକ୍ଷା ବିଭାଗରେ । ବି.ଏ.ରେ କୃତିତ୍ୱ ସହିତ ଉତ୍ତୀର୍ଣ୍ଣ ହେବାପରେ ତାଙ୍କର ବନ୍ଧୁମାନେ ଆଇନ୍ କଲେଜ ବା ସ୍ନାତକୋତ୍ତର ଶିକ୍ଷା ନିମିତ୍ତ ଆଗ୍ରହ ପ୍ରକାଶ କରିଥିବା ସମୟରେ ନନ୍ଦକିଶୋର ଶିକ୍ଷକତା ଜୀବନକୁ ଆପଣେଇ ନେଇଥିଲେ । ୧୯୦୦-୧୯୦୩ ମସିହା ପର୍ଯ୍ୟନ୍ତ ମଧୁସୂଦନଙ୍କ ଦ୍ୱାରା ପ୍ରତିଷ୍ଠିତ ଭିକ୍ଟୋରିଆ ବିଦ୍ୟାଳୟରେ ଘରୋଇ ଶିକ୍ଷକ ଭାବରେ କାର୍ଯ୍ୟ କରିଥିଲେ । ୧୯୦୩-୦୭ ପର୍ଯ୍ୟନ୍ତ କଟକ ଜିଲ୍ଲାବୋର୍ଡ ଅଧୀନରେ ବେସରକାରୀ ଶିକ୍ଷକ ରୂପେ କାର୍ଯ୍ୟ କରିବା ପରେ ୧୯୦୭ ମସିହାରେ କଟକ ଟ୍ରେନିଂ ସ୍କୁଲରେ ସହକାରୀ ଶିକ୍ଷକ ଭାବରେ ଯୋଗ ଦେଇଥିଲେ । ବାସ୍ତବରେ ଏହିଠାରୁ ଆରମ୍ଭ ହୋଇଥିଲା ତାଙ୍କର ସରକାରୀ ଚାକିରି । ୧୯୧୧ରେ ସମ୍ବଲପୁର ଜିଲ୍ଲା ସ୍କୁଲର ପ୍ରଧାନଶିକ୍ଷକ, ୧୯୧୨ରେ ବାଲେଶ୍ୱର ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ ଓ ପରେ ପରେ ଜିଲ୍ଲା ସମୂହର ଡେପୁଟୀ ଇନ୍ସପେକ୍ଟର ଭାବରେ କାର୍ଯ୍ୟ କରିଥିଲେ । ୧୯୧୫ ମସିହାଠାରୁ କଟକ ଜିଲ୍ଲା ସ୍କୁଲ ସମୂହର ଡେପୁଟୀ ଇନ୍ସପେକ୍ଟର ଏବଂ ଓଡ଼ିଶା ଶିକ୍ଷା ବିଭାଗର ଆସିଷ୍ଟାଣ୍ଟ ଇନ୍ସପେକ୍ଟର ଭାବରେ କାର୍ଯ୍ୟକରି ୧୯୨୦ ମସିହାରୁ ପୁରୀ ଜିଲ୍ଲା ସମୂହର ଇନ୍ସପେକ୍ଟର କାର୍ଯ୍ୟ କରିଥିଲେ । ୧୯୨୬ରେ ବାଲେଶ୍ୱର ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକରୂପେ କାର୍ଯ୍ୟକରୁଥିବା ସମୟରେ ୧୯୨୭ ମସିହାରେ ନିଜର ଭଗ୍ନସ୍ୱାସ୍ଥ୍ୟ ଯୋଗୁଁ ସରକାରୀ କାର୍ଯ୍ୟରୁ ସ୍ୱେଚ୍ଛାକୃତ ଅବସର ଗ୍ରହଣ କରିଥିଲେ । ଜଣେ ଦକ୍ଷଶିକ୍ଷକ ଓ ଶିକ୍ଷା-ପ୍ରଶାସନିକ ଭାବରେ ସେ ସେତେବେଳେ ଯଥେଷ୍ଟ ସୁନାମ ଅର୍ଜନ କରିଥିଲେ । ଶିକ୍ଷାଦାନ ତାଙ୍କ ପାଇଁ ଥିଲା ଏକ ପବିତ୍ର କର୍ତ୍ତବ୍ୟ । ସେତେବେଳେ ସେ ଚାହିଥିଲେ ଅନ୍ୟାନ୍ୟ ପ୍ରଶାସନିକ ଅଧିକାରୀ ଚାକିରି ମଧ୍ୟ ପାଇପାରିଥାନ୍ତେ । ମାତ୍ର ମଧୁସୂଦନ ରାଓ ଏବଂ ବିଶ୍ୱନାଥ କରଙ୍କ ପ୍ରଭାବ ତାଙ୍କ ଉପରେ ପଡ଼ିଥିବାରୁ ଶିକ୍ଷାବିଭାଗକୁ ସେ ନିଜର କର୍ମକ୍ଷେତ୍ର

ଭାବରେ ଗ୍ରହଣ କରିନେଇଥିଲେ । ୧୯୨୩ରେ ନିଜର କୃତିତ୍ୱ ନିମିତ୍ତ ଇଂରେଜ ସରକାରଙ୍କଠାରୁ 'ରାୟସାହେବ' ଉପାଧି ଲାଭ କରିଥିଲେ ।

ଶିକ୍ଷା କେବଳ ତାଙ୍କର ବୃତ୍ତି ନ ଥିଲା, ବାସ୍ତବରେ ତାହା ଥିଲା ତାଙ୍କ ଜୀବନର ବ୍ରତ । ଶିକ୍ଷକ ଭାବରେ ସେ ଯେପରି ଅନ୍ୟମାନଙ୍କର ଆଦର୍ଶ ଥିଲେ, ଶିକ୍ଷା ପ୍ରଶାସକ ଭାବରେ ସେହିପରି ଥିଲେ କଠୋର ଶୃଙ୍ଖଳାର ଅଧିକାରୀ । ତାଙ୍କ ବ୍ୟକ୍ତିତ୍ୱ ଓ ଚେହେରା ତାଙ୍କର ସେହି ଗୁଣକୁ ଅଧିକ ଶକ୍ତିଶାଳୀ କରିଥିଲା । ଜଣେ ଆଦର୍ଶ ଶିକ୍ଷକ ଓ ଶୃଙ୍ଖଳିତ ଶିକ୍ଷା-ପ୍ରଶାସକ ଭାବରେ ସେତେବେଳେ ନନ୍ଦକିଶୋରଙ୍କ ସ୍ୱତନ୍ତ୍ର ପରିଚୟ ରହିଥିଲା । ଛାତ୍ର ଜୀବନରେ ସେ ଯେପରି ଜଣେ କୃତୀ ଛାତ୍ର ରୂପେ ନିଜର ପରିଚୟ ସୃଷ୍ଟି କରିଥିଲେ, ସେହିପରି ସେ ତାଙ୍କ ଅପୂର୍ବ ଶିକ୍ଷାଦାନ କୌଶଳ ମାଧ୍ୟମରେ ବହୁ କୃତୀ ଛାତ୍ର ସୃଷ୍ଟି କରିପାରିଥିଲେ । ଶିକ୍ଷାକ୍ଷେତ୍ରରେ ସଂସ୍କାର ଆଣିବା ନିମିତ୍ତ ଶିକ୍ଷା-ପରିଦର୍ଶକ ଭାବରେ ସେ ଅନେକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ଗ୍ରହଣ କରିଥିଲେ । ସେ ସର୍ବଦା ଶୃଙ୍ଖଳା ଓ ନୈତିକତାକୁ ଗୁରୁତ୍ୱ ପ୍ରଦାନ କରୁଥିଲେ । ସେଥିପ୍ରତି ଶିକ୍ଷାବିଭାଗର ଶିକ୍ଷକ ଓ କର୍ମଚାରୀମାନଙ୍କର ତାଙ୍କ ପ୍ରତି ଭୟମିଶ୍ରିତ ଶ୍ରଦ୍ଧା ରହିଥିଲା । ତାଙ୍କର ନିଷ୍ଠା ଓ ଦୂରଦର୍ଶିତା ତତ୍କାଳୀନ ବିହାର-ଓଡ଼ିଶା ଗଭର୍ଣ୍ଣର ସତ୍ୟେନ୍ଦ୍ର ପ୍ରସନ୍ନ ସିଂହ ଯିଏ ଲର୍ଡ ସିହ୍ନା ଭାବରେ ପରିଚିତ ଥିଲେ, ତାଙ୍କୁ ପ୍ରଭାବିତ କରିଥିବାରୁ ପୁରୀ ଗସ୍ତରେ ଆସିଥିବା ସମୟରେ ନୂତନ ଶିକ୍ଷାପଦ୍ଧତି ସମ୍ପର୍କରେ ତାଙ୍କର ମତାମତ ଚାହିଥିଲେ ଓ ସେ ଦେଇଥିବା କେତେକ ପରାମର୍ଶ ଗ୍ରହଣ କରିଥିଲେ । ତେଣୁ ଜଣେ ବିଦ୍ୱାନ୍, ଆଦର୍ଶ, ସ୍ନେହୀ ଶିକ୍ଷକ ଏବଂ ଦୂରଦର୍ଶୀ ବିଚାରନିଷ୍ଠ ଶୃଙ୍ଖଳିତ ଶିକ୍ଷା-ପ୍ରଶାସକ (ଶିକ୍ଷା ପରିଦର୍ଶକ) ଭାବରେ ନନ୍ଦକିଶୋର ବଳ ଯେଉଁ ପରିଚୟ ସୃଷ୍ଟି କରିଥିଲେ, ବାସ୍ତବରେ ତାହା ଅତ୍ୟନ୍ତ ପ୍ରଶଂସନୀୟ ।

## ସାରସ୍ୱତ ସମ୍ପର୍କ

ନନ୍ଦକିଶୋର ବଳ ଗୋଟିଏ ଲମ୍ବା ଜୀବନ ନ ପାଇଥିଲେ ମଧ୍ୟ, ସୀମିତ କାଳ ମଧ୍ୟରେ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସାନ୍ନିଧ୍ୟ ଲାଭ କରିଥିଲେ ଓ ତାଙ୍କ ସାରସ୍ୱତ ସାଧନା କ୍ଷେତ୍ରରେ ସେମାନଙ୍କର ଅବଦାନ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଥିଲା । ସମକାଳର ସାରସ୍ୱତ ସାଧକମାନଙ୍କ ମଧ୍ୟରେ ସେ ଥିଲେ ଅଧିକ ଉଚ୍ଚଶିକ୍ଷିତ; ମାତ୍ର ଉଚ୍ଚଶିକ୍ଷାର ଅହଙ୍କାର ତାଙ୍କ ପାଖରେ ନ ଥିଲା । ବରଂ ବରିଷ୍ଠ ଓ ବୟୋଜ୍ୟେଷ୍ଠ ସାଧକମାନଙ୍କୁ ସେ ଯେପରି ସମ୍ମାନ ପ୍ରଦର୍ଶନ କରୁଥିଲେ, କନିଷ୍ଠ ସାହିତ୍ୟିକମାନଙ୍କୁ ସେହିପରି ଶ୍ରଦ୍ଧା ବାଣ୍ଟୁଥିଲେ । କୈଶୋର ଜୀବନରେ ତାଙ୍କର ପ୍ରଥମ ପରିଚୟ ହୋଇଥିଲା

ବିଶ୍ୱନାଥ କରଙ୍କ ସହିତ । କଟକ ଟାଉନ୍ ସ୍କୁଲରେ ପଢ଼ିବାପାଇଁ ଯେତେବେଳେ ସେ ଆସନ୍ତି, ସେତେବେଳେ ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ବିଶ୍ୱନାଥ କର । ତାଙ୍କ ବାଗ୍ମିତା, ବ୍ୟକ୍ତିତ୍ୱ ଓ କୌଣସି ବିଷୟରେ ନିଷ୍ପତ୍ତି ନେବାର ଦୃଢ଼ତା କିଶୋର ନନ୍ଦକିଶୋରଙ୍କୁ ତାଙ୍କ ପ୍ରତି ଆକର୍ଷଣ ସୃଷ୍ଟି କରିଥିଲା । ପରବର୍ତ୍ତୀ ସମୟରେ 'ଉତ୍କଳ ସାହିତ୍ୟ' ପତ୍ରିକାର ସମ୍ପାଦକ ଭାବରେ ବିଶ୍ୱନାଥ ତାଙ୍କର ବହୁକବିତାକୁ ଏଥିରେ ସ୍ଥାନ ଦେଇଥିଲେ ଓ କେତେକ ବ୍ୟତିକ୍ରମ ପ୍ରତି ସମାଲୋଚନା ମଧ୍ୟ କରିଥିଲେ । ପଲ୍ଲୀ ଜୀବନ ପ୍ରତି ନନ୍ଦକିଶୋରଙ୍କ ଆଗ୍ରହ ସୃଷ୍ଟି କରିବା ମୂଳରେ ଯାହାଙ୍କର ବିଶିଷ୍ଟ ଅବଦାନ ରହିଛି, ସେ ହେଉଛନ୍ତି ଭକ୍ତକବି ମଧୁସୂଦନ ରାଓ । କଟକ ଟାଉନ୍ ସ୍କୁଲର ସମ୍ପାଦକ ଥିଲେ ମଧୁସୂଦନ ରାଓ, ଯେଉଁଠି ନନ୍ଦକିଶୋର ଅଧ୍ୟୟନ କରୁଥିଲେ । ମଧୁସୂଦନ ତାଙ୍କ କବିତାର ଥିଲେ ପ୍ରଶଂସକ । ପିଲାଟି ଦିନରୁ ମଧୁସୂଦନ କବିତା ପ୍ରତି ନନ୍ଦକିଶୋରଙ୍କର ଦୁର୍ବଳତା ରହିଥିଲା । ତାଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଆସିବା ଦ୍ୱାରା ନନ୍ଦକିଶୋରଙ୍କ ସଂଗୁପ୍ତ ପ୍ରତିଭା ପ୍ରକାଶୋନ୍ମୁଖୀ ହୋଇପାରିଥିଲା । ଓଡ଼ିଆ କାବ୍ୟ-କବିତାରେ ନୂତନ ସ୍ପର୍ଶ ଦେଇଥିବା ରାଧାନାଥଙ୍କ ପ୍ରତି ମଧ୍ୟ ନନ୍ଦକିଶୋରଙ୍କ ଗଭୀର ସମ୍ମାନବୋଧ ରହିଥିଲା । ଅନେକ କ୍ଷେତ୍ରରେ ରାଧାନାଥଙ୍କ ପ୍ରତିଭା ଓ କାବ୍ୟଶୈଳୀ ଦ୍ୱାରା ପ୍ରଭାବିତ ହୋଇଛନ୍ତି । ଅବଶ୍ୟ ପରବର୍ତ୍ତୀକାଳରେ ସେ ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟିରେ ସମର୍ଥ ହୋଇଥିଲେ । ସେ ରାଧାନାଥଙ୍କୁ ଯେପରି ପ୍ରଶଂସା କରିଛନ୍ତି, ସେହିପରି ରାଧାନାଥଙ୍କ ସଂସ୍କୃତି-ବିରୋଧୀ କାବ୍ୟଚେତନାକୁ ସମାଲୋଚନା କରିଛନ୍ତି । 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ 'କବି ରାଧାନାଥ ଓ ତଦୀୟ କବିତା' ଶୀର୍ଷକ ଆଲୋଚନାଟି ପାଠକଲେ ତାଙ୍କ ସମାଲୋଚନାର ଉଦ୍ଦେଶ୍ୟ ଓ ଗୁରୁତ୍ୱକୁ ଅବବୋଧ କରାଯାଇପାରେ । ଏହା ସତ୍ତ୍ୱେ ଉଭୟଙ୍କ ସାରସ୍ୱତ ସମ୍ପର୍କ ଆଦୌ ଊଣା ହୋଇ ନ ଥିଲା ।

ଗଙ୍ଗାଧରଙ୍କୁ ପ୍ରତ୍ୟକ୍ଷ ଦର୍ଶନ ପୂର୍ବରୁ ତାଙ୍କ କାବ୍ୟ-କବିତା ସହିତ ନନ୍ଦକିଶୋର ପରିଚିତ ହୋଇସାରିଥିଲେ । ୧୯୧୧ ମସିହାରେ ସେ ସମ୍ବଲପୁର ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ ଭାବରେ ବଦଳି ହୋଇ ଯାଇଥିବା ସମୟରେ ସେଠାରେ ତାଙ୍କ ସାହଚର୍ଯ୍ୟରେ ଆସିବାର ସୁଯୋଗ ପାଇଥିଲେ । 'ଅହଲ୍ୟା ସ୍ତବ', 'କୀଚକବଧ' ଓ 'ଇନ୍ଦୁମତୀ' ରଚନା ପରେ ଗଙ୍ଗାଧର ଏକପ୍ରକାର ନୀରବ ହୋଇଯାଇଥିଲେ । ନନ୍ଦକିଶୋରଙ୍କ ପ୍ରେରଣା ଓ ଉତ୍ସାହ ଦ୍ୱାରା ସେ ପୁଣି ଲେଖନୀ ଚାଳନା କରିଥିଲେ ଓ ଅସମ୍ପୂର୍ଣ୍ଣ 'ପ୍ରଣୟ ବଲ୍ଲରୀ' କାବ୍ୟ ସମ୍ପୂର୍ଣ୍ଣ କରିବା ସହିତ 'ତପସ୍ୱିନୀ' କାବ୍ୟ ରଚନା କରିଥିଲେ । ଗଙ୍ଗାଧରଙ୍କ 'କବିତା କଲ୍ଲୋଳ'ର ଭୂମିକା ନନ୍ଦକିଶୋର ଲେଖିଥିଲେ ଏବଂ ଲକ୍ଷ୍ମୀ ନାରାୟଣ ମିଶ୍ରଙ୍କ ଦ୍ୱାରା ତାହା ପ୍ରକାଶ କରାଇଥିଲେ ।

ସମ୍ବଲପୁର ଛାଡ଼ିବାପରେ ମଧ୍ୟ ଚିଠିପତ୍ର ମାଧ୍ୟମରେ ସେମାନଙ୍କର ସମ୍ପର୍କ ଜାରି ରହିଥିଲା । ଫକୀରମୋହନଙ୍କ ସହିତ ନନ୍ଦକିଶୋରଙ୍କ ଭାବଗତ ସମ୍ପର୍କ ଥିଲା ଅତ୍ୟନ୍ତ ନିବିଡ଼ । ପ୍ରକୃତରେ ସେମାନଙ୍କର ସମ୍ପର୍କ ଥିଲା ପିତା-ପୁତ୍ରଙ୍କ ପରି । ନନ୍ଦକିଶୋର ସସ୍ତ୍ରୀକ ଫକୀରମୋହନଙ୍କ ଗୃହରେ ରହିଛନ୍ତି ତାଙ୍କର ବାଲେଶ୍ୱର ଅବସ୍ଥାନ କାଳରେ । ଫକୀରମୋହନ ପୁତ୍ରଠାରୁ ବିଚ୍ଛିନ୍ନ ହୋଇ ଯେତେବେଳେ 'ଶାନ୍ତିକାନନ'ରେ ନିଃସଙ୍ଗ ଜୀବନ ଅତିବାହିତ କରୁଥିଲେ, ସେତେବେଳେ ନନ୍ଦକିଶୋର ତାଙ୍କୁ ସାନ୍ନିଧ୍ୟ ଦେଇ ତାଙ୍କ ନିଃସଙ୍ଗତା ଦୂର କରିଥିଲେ । ଶୁଣାଯାଏ, ଫକୀରମୋହନଙ୍କ ପ୍ରେରଣା ଯୋଗୁଁ ନନ୍ଦକିଶୋର 'କନକଲତା' ଉପନ୍ୟାସ ଲେଖିଥିଲେ । ଉଭୟ ସାରସ୍ୱତ ସାଧକ ସନ୍ଧ୍ୟା ସମୟରେ ଉତ୍କଳ ସାହିତ୍ୟ ସମ୍ପର୍କରେ, ତା'ର ଭବିଷ୍ୟତ ସମ୍ବନ୍ଧରେ ସକାରାତ୍ମକ ଆଲୋଚନା କରୁଥିଲେ । ନନ୍ଦକିଶୋରଙ୍କ ପଲ୍ଲୀପ୍ରାଣତା ଓ ତାଙ୍କ କବିତାକୁ ଯେପରି ଅକୁଣ୍ଠ ପ୍ରଶଂସା କରୁଥିଲେ, ନନ୍ଦକିଶୋର ମଧ୍ୟ ଫକୀରମୋହନଙ୍କ ଅଦ୍ଭୁତ ସାହିତ୍ୟ-ପ୍ରତିଭାକୁ ସମ୍ମାନ ପ୍ରଦର୍ଶନ କରୁଥିଲେ ।

ପୁରୀରେ ପୁରୀ ଜିଲ୍ଲା ସ୍କୁଲ ସମୂହର ଇନ୍‌ସପେକ୍ଟର ଭାବରେ ଯୋଗଦେବାପରେ ଉତ୍କଳମଣି ଗୋପବନ୍ଧୁଙ୍କ ସହିତ ନନ୍ଦକିଶୋରଙ୍କ ସମ୍ବନ୍ଧ ସ୍ଥାପିତ ହୋଇଥିଲା । ନନ୍ଦକିଶୋର ଗୋପବନ୍ଧୁଙ୍କ ସୃଷ୍ଟିକୁ ଯେପରି ଆଗ୍ରହର ସହିତ ପାଠ କରୁଥିଲେ, ଗୋପବନ୍ଧୁ ମଧ୍ୟ ଶିକ୍ଷା ସମ୍ପର୍କରେ ତାଙ୍କର ବିବିଧ ପରାମର୍ଶ ଲୋଡୁଥିଲେ ଓ ତାଙ୍କ କବିତା ଶ୍ରଦ୍ଧାର ସହିତ ପାଠ କରୁଥିଲେ । ସେହିପରି ପଦ୍ମଚରଣଙ୍କ ସହିତ ନନ୍ଦକିଶୋରଙ୍କ ମଧୁର ସାରସ୍ୱତ ସମ୍ପର୍କ ରହିଥିଲା । ପତ୍ର ମାଧ୍ୟମରେ ପରସ୍ପରର ସୃଷ୍ଟି ସମ୍ପର୍କରେ ସେମାନେ ମତ ବିନିମୟ କରୁଥିଲେ । ପୁରୀରେ ଥିବା ସମୟରେ ଉଭୟ ଅନେକ ସମୟରେ ସାହିତ୍ୟ ସମ୍ପର୍କରେ ଆଲୋଚନା କରୁଥିଲେ । କୁନ୍ତଳା କୁମାରୀ ସାବତଙ୍କ ସହିତ ନନ୍ଦକିଶୋରଙ୍କ ସମ୍ପର୍କ ଥିଲା ପିତା ଓ କନ୍ୟାର ସମ୍ପର୍କ । ନନ୍ଦକିଶୋରଙ୍କ ଗ୍ରାମ କୁସୁପୁରକୁ କୁନ୍ତଳାକୁମାରୀ ଯାଇଛନ୍ତି ଏବଂ ତାଙ୍କ ଆତିଥ୍ୟରେ ମୁଗ୍ଧ ହୋଇଛନ୍ତି । ନନ୍ଦକିଶୋରଙ୍କ କବିତାରୁ ସେ ପ୍ରେରଣା ପାଇଥିଲେ ଓ ତାଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ । କୁନ୍ତଳାଙ୍କୁ ନେଇ ନନ୍ଦକିଶୋର ଯେପରି କବିତା ରଚନା କରିଛନ୍ତି, ସେହିପରି ନନ୍ଦକିଶୋରଙ୍କୁ ନେଇ 'ଶ୍ରୀଯୁକ୍ତ ରାୟସାହେବ ନନ୍ଦକିଶୋର ବଳଙ୍କ ପ୍ରତି' କବିତା ଲେଖିଛନ୍ତି । ପ୍ରଥମେ କୁନ୍ତଳାକୁମାରୀ ନନ୍ଦକିଶୋରଙ୍କୁ 'ପଲ୍ଲୀକବି' ଭାବରେ ସମ୍ବୋଧନ କରିଥିଲେ ଓ ପରବର୍ତ୍ତୀ ସମୟରେ ଏହା ସମସ୍ତ ଓଡ଼ିଶାବାସୀଙ୍କ ଦ୍ୱାରା ଗୃହୀତ ହୋଇଥିଲା । କବିଙ୍କୁ କୌଣସି ସାରସ୍ୱତ ଅନୁଷ୍ଠାନ 'ପଲ୍ଲୀକବି' ଉପାଧି ଦେଇ ନାହାନ୍ତି । ରେଭେନ୍‌ସା ମହାବିଦ୍ୟାଳୟରେ ଅଧ୍ୟୟନ ସମୟରେ ସେ

କାମପାଳ ମିଶ୍ର, ଅଭିରାମ ଭଞ୍ଜ, ଗୋପାଳଚନ୍ଦ୍ର ପ୍ରହରାଜ, ରାମକୃଷ୍ଣ ବୋଷ ଆଦି ବନ୍ଧୁଙ୍କ ନିବିଡ଼ ସମ୍ପର୍କରେ ଆସିଥିଲେ । ଏହି ବନ୍ଧୁମାନଙ୍କଦ୍ୱାରା ପ୍ରତିଷ୍ଠିତ 'ଅବ୍‌ଜରଭର୍ କ୍ଲବ୍'ରେ ବିଭିନ୍ନ ସମୟରେ କବିତା ପଠନ ଏବଂ ସାହିତ୍ୟ ସମ୍ପର୍କରେ ଆଲୋଚନା ହେଉଥିଲା । ନନ୍ଦକିଶୋରଙ୍କ ବହୁ କବିତା ଏଥିରେ ପଠିତ ହୋଇଥିଲା ଏବଂ ବନ୍ଧୁମାନଙ୍କଦ୍ୱାରା ପ୍ରଶଂସା ପାଇଥିଲା ।

ନନ୍ଦକିଶୋର ତାଙ୍କ ଜୀବନକାଳ ମଧ୍ୟରେ ବହୁ ସାରସ୍ୱତ ପ୍ରତିଭା ଓ ଲେଖକମାନଙ୍କ ସାହଚର୍ଯ୍ୟରେ ଆସିଛନ୍ତି ଏବଂ ସେମାନଙ୍କଦ୍ୱାରା ପ୍ରେରିତ ହୋଇ ନିଜର ସାହିତ୍ୟ ସାଧନା କରିଛନ୍ତି । ତାଙ୍କ ଦ୍ୱାରା ପ୍ରଭାବିତ ହୋଇ ଅନେକ କବିତା ରଚନା କରି କବି ଭାବରେ ପ୍ରତିଷ୍ଠା ଲାଭ କରିଛନ୍ତି । ଏହି ଦୃଷ୍ଟିରୁ ବିଚାର କଲେ ନନ୍ଦକିଶୋରଙ୍କ ସମୟରେ ଓଡ଼ିଶାରେ ଏକ ସାରସ୍ୱତ ପରିବେଶ ସୃଷ୍ଟି ହୋଇଥିଲା, ଯାହା ତାଙ୍କ ସାହିତ୍ୟ ସାଧନା କ୍ଷେତ୍ରରେ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା ।

## ସାହିତ୍ୟ ସାଧନା

ନନ୍ଦକିଶୋର ଓଡ଼ିଆ ସାହିତ୍ୟରେ ଜଣେ କବି ଭାବରେ ପରିଚିତ ହେଲେ ହେଁ ପ୍ରବନ୍ଧ, ସମାଲୋଚନା, ଉପନ୍ୟାସ, ଗଳ୍ପ ଆଦି ମଧ୍ୟ ରଚନା କରିଛନ୍ତି । କିନ୍ତୁ ତାଙ୍କ ପ୍ରତିଭାର ସମୁଜ୍ଜ୍ୱଳ ଦୃଷ୍ଟାନ୍ତ କେବଳ କବିତା ରଚନାରେ ହିଁ ପରିଲକ୍ଷିତ ହୋଇଥାଏ । ନନ୍ଦକିଶୋରଙ୍କ ସୃଷ୍ଟିଗୁଡ଼ିକ ସେତେବେଳେ ଓଡ଼ିଶାର ସୁପ୍ରସିଦ୍ଧ ସାହିତ୍ୟ ପତ୍ରିକା 'ଉତ୍କଳ ସାହିତ୍ୟ', 'ସମ୍ବଲପୁର ହିତୈଷିଣୀ', 'ମୁକୁର', 'ଉତ୍କଳମଧୁପ' ଆଦି ପତ୍ରିକାମାନଙ୍କରେ ପ୍ରକାଶ ପାଇ ପାଠକୀୟ ଆଦୃତି ଲାଭ କରିପାରିଥିଲା । ତାଙ୍କର ଅଧିକାଂଶ ରଚନା ବିଶ୍ୱନାଥ କରଙ୍କ ସମ୍ପାଦିତ 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶ ପାଇଥିଲା । ଛାତ୍ରାବସ୍ଥାରୁ ତାଙ୍କ ସାହିତ୍ୟିକ ପ୍ରତିଭାର ଉନ୍ମେଷ ଘଟିଥିଲା । ତାଙ୍କର ପ୍ରଥମ ପ୍ରକାଶିତ ରଚନା ହେଉଛି 'କର୍ମ' ପ୍ରବନ୍ଧ; ଯାହା ୨୫.୦୨.୧୮୯୫ ମସିହାରେ 'ସମ୍ବଲପୁର ହିତୈଷିଣୀ'ରେ ପ୍ରକାଶ ପାଇଥିଲା । ୧୮୯୭ ମସିହାରେ 'ଉତ୍କଳର ପଲ୍ଲୀ ଜୀବନ' ପ୍ରବନ୍ଧ ଇଂରାଜୀ ଭାଷାରେ ଲେଖି ତାଳଚେର ପୁରସ୍କାର ଲାଭ କରିଥିଲେ । 'ଉତ୍କଳ ସାହିତ୍ୟ'ରେ 'ପୁଷ୍ପ'(ମେ,୧୮୯୭) ଏବଂ ନଭେମ୍ବର ୧୮୯୭ରେ ପ୍ରସିଦ୍ଧ ଲୋକପ୍ରିୟ କବିତା ମେଘ ବରଷିଲା ଟପର ଟପର' ପ୍ରକାଶ ପାଇଥିଲା । ପୁସ୍ତକାକାରରେ 'ପଲ୍ଲୀଚିତ୍ର' ପ୍ରକାଶ ପାଏ ୧୮୯୮ ମସିହାରେ । 'ପଲ୍ଲୀଚିତ୍ର' ସଂକଳନର କବିତାଗୁଡ଼ିକ ମୁଖ୍ୟତଃ 'ସମ୍ବଲପୁର ହିତୈଷିଣୀ', 'ଉତ୍କଳ ସାହିତ୍ୟ' ଆଦିରେ ପ୍ରକାଶ

ପାଇଥିଲା । ପଲ୍ଲୀର ଜୀବନ୍ତ ଆଲେଖ୍ୟ କବିତାଗୁଡ଼ିକୁ ରସୋଚ୍ଛଳ ଓ ଜନପ୍ରିୟ କରିଥିଲା । ପଲ୍ଲୀର ସୂକ୍ଷ୍ମାତିସୂକ୍ଷ୍ମ ବର୍ଣ୍ଣନା ଓ ଅଭିବ୍ୟକ୍ତିରେ ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ ଏହାର ବିଶେଷତ୍ୱ । ଏହି ସଂକଳନସ୍ଥ କବିତାଗୁଡ଼ିକ ତାଙ୍କୁ 'ପଲ୍ଲୀକବି'ର ଆଖ୍ୟା ଦେଇଥିଲା, ଯଦିଓ କୁନ୍ତଳାକୁମାରୀ ତାଙ୍କ କବିତାର ପଲ୍ଲୀଭାବନାରେ ମୁଗ୍ଧହୋଇ ଏପରି ଏକ ସମ୍ବୋଧନ କରିଥିଲେ । 'ନିର୍ଝରିଣୀ' ଥିଲା କବିଙ୍କ ଦ୍ୱିତୀୟ ପ୍ରକାଶିତ ଗ୍ରନ୍ଥ, ଯାହା ସମ୍ପର୍କରେ 'ଉତ୍କଳ ସାହିତ୍ୟ' ପତ୍ରିକାରେ ମଧୁସୂଦନ ରାଓ ଏକ ସୁନ୍ଦର ଆଲୋଚନା ପ୍ରକାଶ କରିଥିଲେ । ସ୍ୱଦେଶୀୟ ଭାବମାଧୁରୀରେ ପରିପୂର୍ଣ୍ଣ ସଂକଳନସ୍ଥ କବିତାଗୁଡ଼ିକ ବେଶ୍ ପାଠକୀୟ ଆଦୃତି ଲାଭ କରିଥିଲା । ରାମାୟଣର ସୀତା ବନବାସ ଘଟଣାକୁ ଅବଲମ୍ବନ କରି ନନ୍ଦକିଶୋର ରଚନା କରିଥିଲେ 'ସୀତା ବନବାସ' । ସୀତାଙ୍କ ଜୀବନର ବିଷାଦମୟ ଘଟଣା ଏଥିରେ ଚମତ୍କାର ଭାବରେ ରୂପାୟଣ ହୋଇଥିବାରୁ ବିଶ୍ୱନାଥ କର ଏହାର ପ୍ରଶଂସା କରିଥିଲେ । ୧୯୦୧ ମସିହାରେ ପ୍ରକାଶିତ 'କୃଷ୍ଣକୁମାରୀ' ତାଙ୍କର ଏକ ଐତିହାସିକ କାବ୍ୟ । ଜାତୀୟ ଚେତନାର ଉଦ୍‌ଗିରଣ ନିମିତ୍ତ କବିଙ୍କର ଏହା ଏକ ସଚେତନ ପ୍ରୟାସ । ଦେଶପାଇଁ କୃଷ୍ଣକୁମାରୀଙ୍କ ପ୍ରାଣ ବିସର୍ଜନ କାବ୍ୟଟିକୁ କରୁଣ ରସାଶ୍ରିତ କରିଛି । ୧୯୧୬ ମସିହାରେ ପ୍ରକାଶିତ 'ଶର୍ମିଷ୍ଠା' କାବ୍ୟ ନନ୍ଦକିଶୋରଙ୍କ କାବ୍ୟକଳାର ଏକ ସଫଳ ନିଦର୍ଶନ । କାବ୍ୟଟି ପ୍ରକାଶ ପାଇବାପୂର୍ବରୁ ୧୯୦୦ ମସିହାରୁ ୧୯୦୮ ମସିହା ମଧ୍ୟରେ 'ଉତ୍କଳ ସାହିତ୍ୟ'ରେ ପର୍ଯ୍ୟାୟକ୍ରମେ ପ୍ରକାଶ ପାଇଥିଲା । ମହାଭାରତ ଓ ଭାଗବତରେ ଶର୍ମିଷ୍ଠା ପ୍ରସଙ୍ଗ ବେଶ୍ ରୋଚକ ଢଙ୍ଗରେ ବର୍ଣ୍ଣିତ । ଏକ ଆଦର୍ଶ ପ୍ରେମ୍‌ର ସ୍ୱରୂପ କାବ୍ୟରେ ପ୍ରକାଶ ପାଇଛି । ବୋଧହୁଏ ରାଧାନାଥଙ୍କ ବିଜାତୀୟ ପ୍ରେମାଖ୍ୟାନ କାବ୍ୟ ସମ୍ପର୍କରେ ଏହା ଏକ ନୀରବ ପ୍ରତିବାଦ ହୋଇପାରେ । ପୌରାଣିକ କଥାବଲମ୍ବନରେ ସ୍ୱଦେଶ ପ୍ରେମର ପରିପ୍ରଚାର ଏହାର ଅନ୍ୟତମ ଲକ୍ଷ୍ୟ । ବ୍ୟକ୍ତିଗତ ସ୍ୱାର୍ଥ ଅପେକ୍ଷା ଦେଶ ଓ ଜାତିର ସ୍ୱାର୍ଥ ମହତ୍ତ୍ୱପୂର୍ଣ୍ଣ ବୋଲି ଶର୍ମିଷ୍ଠା ଚରିତ୍ରର ଉତ୍ସର୍ଗୀକୃତ ଜୀବନ ଆଧାରରେ ପ୍ରତିପାଦନ କରାଯାଇଛି । ୩୫ଟି ଖଣ୍ଡକବିତାର ସଂକଳନ 'ବସନ୍ତ କୋକିଳ' ପ୍ରକାଶ ପାଏ ୧୯୦୧ ମସିହାରେ । ଏଥିରେ ସ୍ଥାନ ପାଇଥିବା କବିତାଗୁଡ଼ିକରେ ମୁଖ୍ୟତଃ କବିଙ୍କର ବ୍ୟକ୍ତିଗତ ଜୀବନ ପ୍ରେମଚିତ୍ର ପ୍ରକାଶ ପାଇଥିଲେ ହେଁ ଆବେଦନ ଦୃଷ୍ଟିରୁ ଏହା ସାର୍ବଜନୀନ ହୋଇପାରିଛି । ଏତଦ୍‌ବ୍ୟତୀତ ଏଥିରେ ସାମାଜିକ ସଂସ୍କାର ଭାବନା ଓ କବିଙ୍କର କେତେକ ବ୍ୟକ୍ତିଗତ ସ୍ମୃତି (ଯେପରି 'ଉତ୍କଳ କବି ରାଧାନାଥ ରାୟ ବାହାଦୁର') ପ୍ରକାଶ ପାଇଛି । ୧୯୦୨ ମସିହାରେ ପ୍ରକାଶ ପାଇଥିବା 'ଚାରୁଚିତ୍ର' କବିତା ସଂକଳନରେ ବାଇଶଟି କବିତା ସ୍ଥାନ ପାଇଛି; ଯେଉଁଥିରେ

କବିଙ୍କ ସଂସ୍କାର ଭାବନା, ପ୍ରକୃତି ଚିତ୍ର, ଜାତୀୟଚେତନା, ଆଧ୍ୟାତ୍ମିକ ଭାବନା ଏବଂ ମାନବିକ ସମ୍ବେଦନଶୀଳତା ପ୍ରକାଶ ପାଇଛି । ୧୯୦୩ ମସିହାରେ ପ୍ରକାଶ ପାଏ 'ନିର୍ମାଲ୍ୟ' କବିତା ସଂକଳନ । ପୁସ୍ତକରୂପେ ପ୍ରକାଶ ପାଇବା ପୂର୍ବରୁ ଅଧିକାଂଶ କବିତା 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶ ପାଇଥିଲା । କବିଙ୍କ ଆଧ୍ୟାତ୍ମିକ ଭାବ ସମ୍ବଳିତ କବିତାଗୁଡ଼ିକ ଏଥିରେ ସ୍ଥାନ ପାଇଛି । ଏହି କବିତାଗୁଡ଼ିକରେ ମଧୁସୂଦନଙ୍କ ପ୍ରଭାବ ପରିଲକ୍ଷିତ ହୋଇଥାଏ । କବିଙ୍କର 'ଜନ୍ମଭୂମି'(ପ୍ରଥମ ଭାଗ) 'ଜନ୍ମଭୂମି' (ଦ୍ୱିତୀୟ ଭାଗ) ଯଥାକ୍ରମେ ପ୍ରକାଶ ପାଏ ୧୯୦୨ ଓ ୧୯୦୮ ମସିହାରେ । ପ୍ରଥମ ଭାଗ କବିତାରେ ଓଡ଼ିଶାର କାରୁଣ୍ୟ ଚିତ୍ରକୁ ଦୟନୀୟ ଭାବରେ ଇଂରେଜ ସରକାରଙ୍କୁ ଅବଗତ କରାଇ ତାଙ୍କ ଅନୁକମ୍ପା ହାସଲ ସହିତ ଓଡ଼ିଶାର ଦୁର୍ଗତି ମୋଚନ କରିବା ଥିଲା ମୁଖ୍ୟ ଉଦ୍ଦେଶ୍ୟ । ଦ୍ୱିତୀୟ ଭାଗ କବିତାରେ ଜାତୀୟ ଭାବନା ସହିତ ଓଡ଼ିଶାର ଅତୀତ ଗୌରବ ଓ ଯଶ ସମ୍ପର୍କରେ ଓଡ଼ିଶାର ଜନସାଧାରଣଙ୍କୁ ସଚେତନ କରାଇଦେବାର ପ୍ରୟାସ ହୋଇଛି । ଅଧିକାଂଶ କବିତା ଉଦ୍ଦେଶ୍ୟ ପ୍ରଣୋଦିତ ହୋଇଥିବାରୁ ଏହା ତା'ର କଳାଗତ ମୂଲ୍ୟ ହରାଇ ବସିଛି । 'ଉତ୍କଳ ସାହିତ୍ୟ' ଓ 'ମୁକୁର' ପତ୍ରିକାରେ ୧୯୦୫ ରୁ ୧୯୨୫ ମସିହା ମଧ୍ୟରେ ପ୍ରକାଶ ପାଇଥିବା ୩୫ଟି କବିତାକୁ ନେଇ ପ୍ରକାଶ ପାଇଛି 'ତରଙ୍ଗିଣୀ' କବିତା ସଂକଳନ । ଏଥିରେ ସଂକଳିତ କବିତାଗୁଡ଼ିକରେ କବିଙ୍କର ରୋମାଣ୍ଟିକ୍ ଚେତନା, ପ୍ରେମ ଓ ପ୍ରଣୟ ଭାବନା ସହିତ ପ୍ରକୃତି ଚେତନା, ସୌନ୍ଦର୍ଯ୍ୟ ଦୃଷ୍ଟି ତଥା ସଂସ୍କାର ଭାବନା ପ୍ରକାଶ ପାଇଛି । ସେହିପରି 'ଉତ୍କଳ ସାହିତ୍ୟ' ଓ 'ମୁକୁର' ପତ୍ରିକାରେ ୧୯୦୯-୨୫ ମଧ୍ୟରେ ପ୍ରକାଶିତ କିଛି କବିତା ସହିତ ଆଉ କେତେକ କବିତା ସଂଯୋଜିତ ହୋଇ ୫୭ଟି କବିତାକୁ ନେଇ 'ପ୍ରଭାତ ସଂଗୀତ' ନାମରେ ଗ୍ରନ୍ଥାବଳୀରେ ପ୍ରକାଶିତ । କବିତାଗୁଡ଼ିକ ବହୁବିଧ ଭାବନାକୁ ନେଇ ପ୍ରକାଶ ଲାଭକରିଛି । ଏଥିରେ ବିଭୁପ୍ରେମ, ସଂସ୍କାରଚେତନା ସହିତ ଶିଶୁଙ୍କ ଉଦ୍ଦେଶ୍ୟରେ କବିତାଗୁଡ଼ିକ ରହିଥିଲେ ହେଁ କବି ଏହାକୁ ଶିଶୁଗୀତ ରୂପେ ଗ୍ରହଣ କରିବାକୁ ନିବେଦନ କରିଛନ୍ତି । ୧୯୧୫ ମସିହାରେ ପ୍ରକାଶିତ 'ନାନାବାୟାଗୀତ' ଏକ ସାର୍ଥକ ଶିଶୁକବିତା ସଂକଳନ । କବିଙ୍କର ଏହି ଶିଶୁ ଭାବନା ପରବର୍ତ୍ତୀ ବହୁ କବିଙ୍କୁ ଶିଶୁଗୀତ ରଚନା କରିବାକୁ ପ୍ରେରଣା ଯୋଗାଇଛି । ସାମସମୟିକ କାଳରେ ରଚିତ ଶିଶୁଗୀତିକାଗୁଡ଼ିକ ମଧ୍ୟରେ ଏହି ସଂକଳନଟି ସ୍ୱାତନ୍ତ୍ର୍ୟ ଦାବି କରିଥାଏ । ଲୋକ ସଂସ୍କୃତିର ବହୁ ବିଭାବ ସହିତ ଲୋକଛନ୍ଦ, ନିଜ ଶୈଶବର ଅନୁଭୂତି, ପଲ୍ଲୀପ୍ରକୃତି ପ୍ରତି ଏକ ମୁଗ୍ଧଭାବଦୃଷ୍ଟି କବିତାଗୁଡ଼ିକୁ ସାର୍ବକାଳିକ ମୂଲ୍ୟବୋଧ ପ୍ରଦାନ କରିଛି । ୩୩ ଗୋଟି କବିତାକୁ ନେଇ ସଂକଳିତ 'ସନ୍ଧ୍ୟା ସଂଗୀତ' କବିଙ୍କର ଏକ ଅନୁପମ

ସୃଷ୍ଟି । ଏହା କବିଙ୍କ ଅନ୍ତିମ ଜୀବନର ଶେଷ ସଙ୍ଗୀତ । ଏଥିରେ ରହିଛି କବିଙ୍କର ଅତୀତର ଭାବାଲୁତା, ଶୈଶବ ସ୍ମୃତି, ଆଧ୍ୟାତ୍ମିକ ଭାବନା, ଜୀବନଦର୍ଶନ, ନଶ୍ୱର ଜୀବନଚିନ୍ତା ଓ ସୂକ୍ଷ୍ମ ଦାର୍ଶନିକ ଚିନ୍ତନ । କବିଙ୍କର କବିତାଗୁଡ଼ିକ ଉଭୟ ପରିମାଣାତ୍ମକ ଓ ଗୁଣାତ୍ମକ ଦୃଷ୍ଟିରୁ ସ୍ୱତନ୍ତ୍ର ବିଚାରବୋଧର ଅପେକ୍ଷା ରଖେ ।

କବି କେବଳ କବିତା ନୁହେଁ; ଗଦ୍ୟ ରଚନାରେ ମଧ୍ୟ ନିଜର ସ୍ୱାତନ୍ତ୍ର୍ୟ ପ୍ରତିପାଦନ କରିଛନ୍ତି । ତାଙ୍କ ସାହିତ୍ୟିକ ଜୀବନର ଆଦ୍ୟ ସ୍ଫୁରଣ ହୋଇଥିଲା ତାଳଚେର ପଦକ ପାଇଁ ଲିଖିତ ପ୍ରବନ୍ଧରୁ 'ସମ୍ବଲପୁର ହିତୈଷିଣୀ'ରେ ପ୍ରକାଶିତ । 'କର୍ମ' ପ୍ରବନ୍ଧ ହେଉଛି ଗଦ୍ୟରେ ରଚିତ ପ୍ରଥମ ପ୍ରକାଶିତ ରଚନା । ଗଦ୍ୟସାହିତ୍ୟରୁ ତାଙ୍କ ସାହିତ୍ୟିକ ଜୀବନର ଆରମ୍ଭ । ଯଦିଓ ପ୍ରବେଶିକା ପରୀକ୍ଷା ନିମିତ୍ତ କଟକ ଆସିବା ସମୟରେ ଗ୍ରାମର ଆରାଧ୍ୟା ଦେବୀଙ୍କୁ ଉଦ୍ଦେଶ୍ୟ କରି ଗୋଟିଏ କବିତା ରଚନା କରିଥିବା ସମ୍ପର୍କରେ କେତେକ ମତବ୍ୟକ୍ତ କରିଥାନ୍ତି । ମାତ୍ର ଏହାର ଅସ୍ତିତ୍ୱ ନ ଥିବାରୁ 'କର୍ମ'କୁ ତାଙ୍କ ପ୍ରଥମ ରଚନା ଭାବରେ ଗ୍ରହଣ କରାଯାଇଥାଏ । ସାମସମୟିକ କାଳରେ ତାଙ୍କର ଗଦ୍ୟରଚନାର ଶୈଳୀ ଥିଲା ସ୍ୱତନ୍ତ୍ର ଓ ଉଚ୍ଚକୋଟୀର । ତତ୍ସମ୍, ତଦ୍‌ଭବ ଓ ଦେଶଜ ଭାଷାର ଅପୂର୍ବ ସମନ୍ୱୟ ତାଙ୍କ ଗଦ୍ୟ ସୃଷ୍ଟିରେ ପରିଲକ୍ଷିତ ହୋଇଥାଏ । କଥିତ ଭାଷା ସହିତ ସାଧୁଭାଷାର ସମନ୍ୱୟ କରି ଏକ ଅପୂର୍ବ ଗଦ୍ୟଶୈଳୀ ସେ ସୃଷ୍ଟି କରିଥିଲେ । ଗଦ୍ୟରଚନା ମଧ୍ୟରେ ତାଙ୍କ ପ୍ରବନ୍ଧ, ସମାଲୋଚନା, ଗଳ୍ପ ଓ ଉପନ୍ୟାସକୁ ଗ୍ରହଣ କରାଯାଇପାରେ । ତାଙ୍କ ପ୍ରବନ୍ଧଗୁଡ଼ିକ 'ସମ୍ବଲପୁର ହିତୈଷିଣୀ', 'ମୁକୁର', 'ଉତ୍କଳ ସାହିତ୍ୟ' ଆଦି ପତ୍ରିକାରେ ପ୍ରକାଶ ପାଇଥିଲା । କର୍ମ, ବିଧବା ବିବାହ, ସଂଗ୍ରାମ ଓ ଜୀବନ, ସତୀତ୍ୱ, ଜାତି ଓ ଉନ୍ନତି, ଗୋଟିଏ ସଙ୍କଟ, ସମାଜ ସଂସ୍କାର, ଓଡ଼ିଆ ମେଣ୍ଟା, ମହାରାଜା ଚନ୍ଦ୍ରଗୁପ୍ତ ଆଦି ତାଙ୍କର ମୌଳିକ ପ୍ରବନ୍ଧ, ଯେଉଁଥିରେ କବିଙ୍କ ସଂସ୍କାର ଭାବନା, ଇତିହାସ ଚେତନା, ବିଭିନ୍ନ ସାମାଜିକ ସମସ୍ୟା ଲକ୍ଷ୍ୟ କରାଯାଇଥାଏ, କେତେକ ପ୍ରବନ୍ଧରେ ତାଙ୍କ ସୂକ୍ଷ୍ମ ଚିନ୍ତାଧାରା ଓ ବସ୍ତୁନିଷ୍ଠ ଭାବନାର ପରିପ୍ରକାଶ ହୋଇଛି । ତାଙ୍କ ସମାଲୋଚନା ମଧ୍ୟରେ ରହିଛି ଭାରତର ଭବିଷ୍ୟତ ଭାଷା, ଛାନ୍ଦମାଳା, ରାୟବାହାଦୁର ମଧୁସୂଦନ ରାଓ, ରାଧାନାଥ ଓ ତଦୀୟ କବିତା, ଉତ୍କଳ କବି ଫକୀରମୋହନ, ଉତ୍କଳସାହିତ୍ୟ ଇତ୍ୟାଦି । ଏହି ଆଲୋଚନାଗୁଡ଼ିକରେ ଲେଖକଙ୍କର ଅନ୍ତର୍ଦୃଷ୍ଟି, ତୁଳନାତ୍ମକ ବିଚାର ଦୃଷ୍ଟି, ମୌଳିକ ଚିନ୍ତନ, ବ୍ୟକ୍ତିନିଷ୍ଠ ଭାବନା ସର୍ବୋପରି ଏକ ବିସ୍ତାରିତ ଦୃଷ୍ଟିଭଙ୍ଗୀର ପରିଚୟ ମିଳିଥାଏ । 'ଲକ୍ଷ୍ମୀ' ତାଙ୍କର ଏକମାତ୍ର ଗଳ୍ପ ସୃଷ୍ଟି । ଏହି ଗଳ୍ପରଚନା ଅନ୍ତରାଳରେ ଫକୀରମୋହନଙ୍କ ପ୍ରେରଣା ରହିଛି । ଫକୀରମୋହନଙ୍କ ଠାରୁ ଶୁଣିଥିବା ଏକ ବାସ୍ତବ ଘଟଣାକୁ ସେ ଏଥିରେ ଗଳ୍ପରୂପ

ପ୍ରଦାନ କରିଛନ୍ତି । ଅର୍ଥଲୋଭୀ ବ୍ରାହ୍ମଣସମାଜ ବରର ବୟସ, ଶିକ୍ଷା ଓ ବଂଶ ମର୍ଯ୍ୟାଦାକୁ ଗୁରୁତ୍ୱ ନ ଦେଇ ନିଜ କନ୍ୟାକୁ ମୂଲ କରି ବିବାହ ଦେଉଥିବାରୁ ସେମାନଙ୍କ ଜୀବନ କିପରି ଅନ୍ଧକାରମୟ ହୋଇଉଠୁଥିଲା, ତା'ର ଚିତ୍ର ଏଥିରେ ରହିଛି । ଅବଶ୍ୟ ଗଳ୍ପକଳା ଦୃଷ୍ଟିରୁ ଏହା ସେପରି ସଫଳ ନ ହେଲେ ହେଁ ଏହାର ସାମାଜିକ ମୂଲ୍ୟ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ନନ୍ଦକିଶୋର 'କନକଲତା' ନାମରେ (୧୯୨୫) ଗୋଟିଏ ଉପନ୍ୟାସ ରଚନା କରିଥିଲେ । ସେହି ଉପନ୍ୟାସ ସମ୍ପର୍କରେ ସ୍ୱତନ୍ତ୍ର ଭାବରେ ଆଲୋଚନା କରାଯାଇଥିବାରୁ ଏଠାରେ ତା'ର ବିଶ୍ଳେଷଣ କରାଯାଉ ନାହିଁ । ବାସ୍ତବରେ ନନ୍ଦକିଶୋରଙ୍କ ବିପୁଳାୟତନ ବିଶିଷ୍ଟ ସୃଷ୍ଟି ତାଙ୍କ ସାଧନାର ନିଷ୍ଠା ଓ ପ୍ରତିବଦ୍ଧତାକୁ ପ୍ରମାଣିତ କରିଥାଏ ।

## କନକଲତା ଉପନ୍ୟାସର ପୃଷ୍ଠଭୂମି

ନନ୍ଦକିଶୋର ବଳ ଗୋଟିଏ ମାତ୍ର ଉପନ୍ୟାସ ରଚନା କରିଛନ୍ତି ଓ ତାହା ହେଉଛି କନକଲତା । ପ୍ରଥମେ ଏହି ଉପନ୍ୟାସଟି ପର୍ଯ୍ୟାୟକ୍ରମେ 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶ ପାଇଥିଲା; ମାତ୍ର ତାହା ସ୍ୱୟଂସମ୍ପୂର୍ଣ୍ଣ ହୋଇପାରି ନ ଥିଲା । ପାଠକମାନଙ୍କ ଅନୁରୋଧ ଓ କିଛି ହିତୈଷୀ ବନ୍ଧୁଙ୍କ ତାଗିଦା ଦ୍ୱାରା ଔପନ୍ୟାସିକ ଏହାକୁ ସମ୍ପୂର୍ଣ୍ଣ କରି ପ୍ରକାଶ କରିଥିଲେ ବୋଲି ସ୍ୱୀକାର କରିଛନ୍ତି । ପ୍ରଥମ ସଂସ୍କରଣର 'ବିଜ୍ଞାପନ' ଶିରୋନାମରେ ସେ ସ୍ପଷ୍ଟୀକରଣ ଦେଇ ଲେଖିଛନ୍ତି – ''ବହୁବର୍ଷ ପୂର୍ବେ 'କନକଲତା'ର ପ୍ରଥମ କତିପୟ ପରିଚ୍ଛେଦ 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶିତ ହୋଇଥିଲା । ସେତେବେଳେ ଉତ୍କଳର ବ୍ୟାସକବି ଫକୀରମୋହନ ସେନାପତି ଏବଂ 'ଉତ୍କଳ ସାହିତ୍ୟ'ର ସମ୍ପାଦକ ମହାଶୟମାନେ ତଥା ବହୁ ମାନ୍ୟଗଣ୍ୟ ପାଠକପାଠିକା ଏହାକୁ ସ୍ନେହଚକ୍ଷୁରେ ଦେଖି ମୋତେ ଅଭିନନ୍ଦନ କରିଥିଲେ; କିନ୍ତୁ କିଛି କାଳପରେ ମୁଁ ବିଦ୍ୟାଳୟ ସମୂହର ଜିଲ୍ଲା-ଇନ୍‌ସପେକ୍ଟର ଓ ବିଭାଗୀୟ ଆସିଷ୍ଟାଣ୍ଟ ଇନ୍‌ସପେକ୍ଟର ପ୍ରଭୃତି ପରିଦର୍ଶନ କର୍ମଚାରୀ ରୂପେ ନିଯୁକ୍ତ ହୁଅନ୍ତେ ମୋର ଅବକାଶ ଓ ଅନୁକୂଳ ଅବସ୍ଥାର ଅଭାବନିବନ୍ଧନ ଗଳ୍ପଟି ଅପୂର୍ଣ୍ଣ ରହିଥିଲା । କିଛିକାଳ ପୂର୍ବେ ଖୋର୍ଦ୍ଧା ସବ୍‌ଡିଭିଜନାଲ ଅଫିସର ରାୟସାହେବ ଅଜୟଚନ୍ଦ୍ର ଦାସ ମହାଶୟଙ୍କ ବସାଠାରେ ମୋ ସହିତ ସାକ୍ଷାତ୍ ସମୟରେ ଅଧ୍ୟାପକ ମି.ପ୍ରାଣକୃଷ୍ଣ ପରିଜା ଓ ମିଷ୍ଟର ଶ୍ୟାମଚରଣ ତ୍ରିପାଠୀ ମହାଶୟଦ୍ୱୟ 'କନକଲତା'ର ଅପୂର୍ଣ୍ଣତା ବିଷୟରେ ଆକ୍ଷେପ କଲେ ଏବଂ ମୁଁ ବହୁ ପାଠକପାଠିକାଙ୍କ ସନିର୍ବନ୍ଧ ଅନୁରୋଧ ପ୍ରାପ୍ତ ହେଲି । ସୁପାଟବର ଉତ୍ସାହ ଓ ଅନୁକୂଳ ମନ୍ତବ୍ୟ ଲେଖକର ରଚନାକାନନରେ ବସନ୍ତର ଦକ୍ଷିଣ-ମଳୟ ସ୍ୱରୂପ କାର୍ଯ୍ୟକରେ । ଏହି ଉପନ୍ୟାସକୁ ପୂର୍ଣ୍ଣ କରିବାର

ବାଞ୍ଛା ହୃଦୟରେ ଜାଗ୍ରତ ହେଲା । 'ଉତ୍କଳ-ସାହିତ୍ୟ'ର ସମ୍ପାଦକ ମୋର ବାଲ୍ୟଗୁରୁ ଶ୍ରୀଯୁକ୍ତ ବିଶ୍ୱନାଥ କର, ଏମ୍.ଏଲ୍.ସି. ମହାଶୟଙ୍କ ବାରମ୍ବାର ପୁଣ୍ୟ ପ୍ରବର୍ତ୍ତନା ମୋର ଏହି ସମୁଦିତ ଇଚ୍ଛାକୁ ବଳବତୀ କଲା ।। 'କନକଲତା' ଉପନ୍ୟାସ ସ୍ୱୟଂସମ୍ପୂର୍ଣ୍ଣରୂପେ ପ୍ରକାଶିତ ହେବା ଅନ୍ତରାଳରେ ଔପନ୍ୟାସିକଙ୍କ ଦ୍ୱାରା ପ୍ରଦତ୍ତ ଏହି ସ୍ୱୀକାରୋକ୍ତିର ଯେ ପ୍ରମୁଖ ଭୂମିକା ରହିଛି, ଏହାକୁ ଅସ୍ୱୀକାର କରାଯାଇ ନ ପାରେ ।

'କନକଲତା' ଉପନ୍ୟାସର ରଚନା ଆରମ୍ଭ ହୋଇଥିଲା ୧୯୧୩ ମସିହାରେ । ବିଶ୍ୱନାଥ କରଙ୍କ ସମ୍ପାଦିତ 'ଉତ୍କଳ ସାହିତ୍ୟ' ପତ୍ରିକାର ପାଞ୍ଚଟି ସଂଖ୍ୟାରେ ଏହାର ଆଠୋଟି ପରିଚ୍ଛେଦ ପ୍ରକାଶ ପାଇଥିଲା । ଅନ୍ୟାନ୍ୟ ପରିଚ୍ଛେଦଗୁଡ଼ିକ ବହୁ ପରବର୍ତ୍ତୀ ସମୟରେ ରଚିତ ହୋଇଛି ଏବଂ ୧୯୨୫ ମସିହାରେ ଉପନ୍ୟାସର କଳେବର ନେଇ ପ୍ରକାଶନର ଆଲୋକ ଦେଖିଛି । ନନ୍ଦକିଶୋର ୧୯୧୨ ମସିହାରେ ବାଲେଶ୍ୱର ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ ଭାବରେ ଅବସ୍ଥାନ କାଳରେ ଫକୀରମୋହନଙ୍କ ନିବିଡ଼ ସଂସ୍ପର୍ଶରେ ଆସିଥିଲେ । ପ୍ରତିଦିନ ସନ୍ଧ୍ୟା ସମୟରେ ଫକୀରମୋହନଙ୍କ ସହିତ ତାଙ୍କର ବେଶ୍ ଆଳାପ ଚାଲିଥିଲା । ନନ୍ଦକିଶୋର ଫକୀରମୋହନଙ୍କ ସହିତ ମଧ୍ୟ ଶାନ୍ତିକାନନରେ ରହିଥିଲେ । ଥରେ ଚାନ୍ଦବାଲି ଗସ୍ତରୁ ଫେରି 'ଆଖଣ୍ଡଳମଣି ଦର୍ଶନ' ବିଷୟକ କାହାଣୀ ଫକୀରମୋହନଙ୍କୁ ଶୁଣାଇବା ପରେ ତାହାକୁ ଏକ ଉପନ୍ୟାସ ରୂପ ପ୍ରଦାନପାଇଁ ସେ ନନ୍ଦକିଶୋରଙ୍କୁ କହିଥିଲେ । 'କନକଲତା' ଉପନ୍ୟାସ ଅନ୍ତରାଳରେ ଏହି ଇତିହାସ ରହିଥିବା ବିଷୟ ଅନେକେ ବିଶ୍ୱାସ କରିଥାନ୍ତି । ବିଶ୍ୱନାଥ କର ଏହି ଉପନ୍ୟାସକୁ ଏକ ଖାଣ୍ଟି ଓଡ଼ିଆ ଉପନ୍ୟାସ ନାମରେ ଅଭିହିତ କରିଥିଲେ ।

ଭାରତରେ ନବଯୁଗର ଶଙ୍ଖଧ୍ୱନି ପ୍ରଥମେ ଇଂରାଜୀ ଶିକ୍ଷିତ ରାଜା ରାମମୋହନ ରାୟ ଶୁଣାଇଥିଲେ । ଏହି ଦୂରଦୃଷ୍ଟିସମ୍ପନ୍ନ ମହାପୁରୁଷଙ୍କ ଜନ୍ମ ହୋଇଥିଲା ମେ ୨୨ ତାରିଖ ୧୭୭୨ ମସିହାରେ । ଭାରତରେ ପରିପୂରିତ କୁ-ସଂସ୍କାର ଓ ଅନ୍ଧବିଶ୍ୱାସ ତାଙ୍କୁ ଗଭୀର ଭାବରେ ବ୍ୟଥିତ କରିଥିଲା । ଅଗଷ୍ଟ ୨୦ ତାରିଖ ୧୮୨୮ ମସିହାରେ ସେ ପ୍ରତିଷ୍ଠା କରିଥିଲେ 'ବ୍ରାହ୍ମସମାଜ' । ଏହି ସମାଜ ମାଧ୍ୟମରେ ଭାରତୀୟ ସମାଜରୁ ବିଭିନ୍ନ କୁସଂସ୍କାରର ବିଲୋପ ନିମିତ୍ତ ସେ ସକାରାତ୍ମକ ପଦକ୍ଷେପ ଗ୍ରହଣ କରିଥିଲେ । ବିଧବା ବିବାହ ପ୍ରଚଳନ ଓ ବାଲ୍ୟବିବାହ ବିଲୋପ ପାଇଁ ସେ ଜନ ସଚେତନତା ସୃଷ୍ଟି କରିବାକୁ ପ୍ରୟାସ ଜାରି ରଖିଥିଲେ । ରକ୍ଷଣଶୀଳ ସମାଜ ତାଙ୍କୁ ସେତେବେଳେ ତୀବ୍ର ବିରୋଧ କରିଥିଲେ । ଏହା ସତ୍ତ୍ୱେ ବ୍ରାହ୍ମସମାଜ ମାଧ୍ୟମରେ ସେ ଓ ଏହାର ସଦସ୍ୟମାନେ ତାଙ୍କ ଉଦ୍ୟମରୁ ବିରତ ହୋଇ ନ ଥିଲେ ।

ପରବର୍ତ୍ତୀ ସମୟରେ ଏହାର ସଦସ୍ୟ କେଶବଚନ୍ଦ୍ର ସେନ ବିଧବା ବିବାହ ସପକ୍ଷରେ ସ୍ୱର ଉତ୍ତୋଳନ କରିଥିଲେ । ବାଲ୍ୟବିବାହ ପାଇଁ ମଧ୍ୟ ସେ ପ୍ରଚେଷ୍ଟ ଜାରି ରଖିଥିଲେ । ତାଙ୍କ ଉଦ୍ୟମ ଯୋଗୁଁ ୧୮୭୨ ମସିହାରେ ଇଂରେଜ ସରକାର ଆଇନ୍ ପ୍ରଣୟନ କରିଥିଲେ ଯେ, ପୁଅ ୧୮ବର୍ଷ ଓ ଝିଅ ୧୪ ବର୍ଷ ପୂର୍ବରୁ ବିବାହ କରିପାରିବେ ନାହିଁ । ସମାଜ ସଂସ୍କାର ପାଇଁ ବ୍ରାହ୍ମସମାଜ ଯେଉଁ ଆନ୍ଦୋଳନ ଆରମ୍ଭ କରିଥିଲା, ତା'ର ପ୍ରଭାବ କେବଳ ସମାଜରେ ନୁହେଁ; କଳାଜଗତରେ ମଧ୍ୟ ପରିଲକ୍ଷିତ ହେଲା । ସାହିତ୍ୟର ବିଭିନ୍ନ ବିଭାଗରେ ଏହି ସଂସ୍କାର ଭାବନା ପ୍ରକାଶ ଲାଭ କଲା । ବିଭିନ୍ନ ଭାରତୀୟ ସାହିତ୍ୟରେ ଏହାର ପ୍ରତିଫଳନ ଘଟିଲା । ଓଡ଼ିଆ ସାହିତ୍ୟରେ ଏହାର କେତେକ ସୂଚନା ପରିଲକ୍ଷିତ ହେଲା । ନନ୍ଦକିଶୋର ବଳଙ୍କ 'କନକଲତା' ଉପନ୍ୟାସରେ ଏହି ବିଧବା ବିବାହର ସମସ୍ୟାକୁ ଦେଖାଇ ଦିଆଯାଇଛି । ଅବଶ୍ୟ ବିଧବା ଉମାକୁ ଚେଷ୍ଟାକରି ମଧ୍ୟ ସେ ବିବାହ କରାଇପାରି ନାହାନ୍ତି । ରାଜେନ୍ଦ୍ରଙ୍କ ବୈପ୍ଳବିକ ଚିନ୍ତାଧାରା ଉପନ୍ୟାସରେ ସାକାର ହୋଇପାରି ନାହିଁ । ତେବେ 'କନକଲତା' ଉପନ୍ୟାସର ପୃଷ୍ଠଭୂମିରେ ଏହି ଘଟଣାଗୁଡ଼ିକର ଗୁରୁତ୍ୱକୁ ଅଣଦେଖା କରାଯାଇ ନ ପାରେ ।

## ଉପନ୍ୟାସର କଥାବସ୍ତୁ

ପଲ୍ଲୀର ଏକ ଶୀତସକାଳର ବର୍ଣ୍ଣନାରୁ ଉପନ୍ୟାସର ଆରମ୍ଭ । ସେହିଦିନ ହରିଚନ୍ଦନଙ୍କ ଏକମାତ୍ର କନ୍ୟା କନକଲତାର ଥିଲା ଜନ୍ମଦିନ । ହରିଚନ୍ଦନଙ୍କ ଚାରିପୁଅରେ ଗୋଟିଏ ମାତ୍ର କନ୍ୟା; ତେଣୁ ସମସ୍ତଙ୍କର ଗେହ୍ଲା ଏବଂ ସବୁଠାରୁ ବୟସରେ ସାନ ହୋଇଥିବାରୁ ସମସ୍ତଙ୍କର ପ୍ରିୟପାତ୍ରୀ । ତା'ର ଜନ୍ମଦିନ ଉପଲକ୍ଷେ ହରିଚନ୍ଦନଙ୍କ ପରିବାର ତଥା ଉଆସର ରମଣୀମାନେ ଆଖଣ୍ଡଳମଣି ଦର୍ଶନପାଇଁ ଯାଇଛନ୍ତି । ଔପନ୍ୟାସିକ ରମଣୀମାନଙ୍କର ବେଶଭୂଷାର ରୋଚକ ବର୍ଣ୍ଣନାଟିଏ ପ୍ରଦାନ କରିଛନ୍ତି । ପଡ଼ୋଶୀ କୁଟୁମ୍ବମାନେ ମଧ୍ୟ ଏହି ଯାତ୍ରାରେ ସାମିଲ ହୋଇଛନ୍ତି । ହରିଚନ୍ଦନଙ୍କ ସାନପୁଅ ରାଜେନ୍ଦ୍ର ସଂସ୍କାରପ୍ରୟାସୀ ଓ ଅନ୍ଧବିଶ୍ୱାସ ତଥା କୁସଂସ୍କାରର ବିରୋଧୀ । ତେଣୁ ଅନ୍ୟମାନଙ୍କ ସହିତ ସେ ଆଖଣ୍ଡଳମଣି ଦର୍ଶନକୁ ଯାଇ ନ ଥିଲେ । ମାତ୍ର ସେହିଦିନ ଦିଅଁଦର୍ଶନ ଉଦ୍ଦେଶ୍ୟରେ ମୋତିଝରର ଇନ୍ଦ୍ରଜିତ ପାଇକରାୟ ନିଜ ପୁତ୍ର ତଥା ପରିବାରର ଅନ୍ୟାନ୍ୟ ସଦସ୍ୟଙ୍କ ସହିତ ଆସିଥିଲେ । ଉଭୟ ପରିବାର ପରସ୍ପର ସହିତ ମିଶିବା ପରେ ସେମାନଙ୍କ ମଧ୍ୟରେ ବିଭିନ୍ନ ବିଷୟରେ ଆଳାପ ହୋଇଛି ଏବଂ ସେହିଠାରେ କନକଲତା ସହିତ ଇନ୍ଦ୍ରଜିତ ପାଇକରାୟଙ୍କ ପୁତ୍ର ଧନଞ୍ଜୟଙ୍କର ସାକ୍ଷାତ ଓ ଦୃଷ୍ଟି ବିନିମୟ ହେବାଦ୍ୱାରା ପରସ୍ପର

ମଧ୍ୟରେ ଆକର୍ଷଣ ତଥା ପ୍ରେମଭାବ ସୃଷ୍ଟି ହୋଇଛି । କନକଲତାର ମାଆ ପଦ୍ମାବତୀ ଧନଞ୍ଜୟ ଏବଂ ଧନଞ୍ଜୟଙ୍କ ମାଆ ଅନ୍ନପୂର୍ଣ୍ଣା କନକଲତାର ସ୍ୱଭାବ ଓ ଆଚରଣରେ ବିଶେଷ ଭାବରେ ପ୍ରଭାବିତ ହୋଇଛନ୍ତି । ଅନ୍ନପୂର୍ଣ୍ଣାଙ୍କ ବିଧବା କନ୍ୟା ଉମାର ମଧ୍ୟ ସୌହାର୍ଦ୍ଦ୍ୟ ସ୍ଥାପିତ ହୋଇଛି କନକଲତା ସହିତ । ପଦ୍ମାବତୀ ଅନ୍ନପୂର୍ଣ୍ଣାଙ୍କ ନିକଟରେ ଧନଞ୍ଜୟଙ୍କ ସହିତ ଝିଅ କନକଲତାର ବିବାହ ପ୍ରସ୍ତାବ ଉତ୍‌ଥାପନ କରନ୍ତି ଏବଂ ସେଥିରେ ଅନ୍ନପୂର୍ଣ୍ଣା ସ୍ୱୀକୃତି ଜଣାନ୍ତି । ବିବାହ ପ୍ରସ୍ତାବରେ ଉଭୟ ପକ୍ଷଙ୍କ ଆଲୋଚନା ସମୟରେ ଅଳଙ୍କାର, ବାସନ, ଧେନୁ, ଭୂମି ଇତ୍ୟାଦି ବିଷୟରେ ଆଲୋଚନାରେ ସମସ୍ତ ଠିକ୍ ହୋଇଗଲା । କେବଳ ଗୋଟିଏ ବିଷୟରେ ପ୍ରଧାନ ମଧ୍ୟସ୍ଥ ହରିଚନ୍ଦନଙ୍କୁ ଗୋପନରେ କିଛି କହିବାରୁ ସେ ଚିନ୍ତାଗ୍ରସ୍ତ ହୋଇଥିଲେ । ଦୁର୍ଭାଗ୍ୟକୁ ପାଇକରାଙ୍କ ମାତାଙ୍କ ପରଲୋକଗମନ ଯୋଗୁଁ ଏହି ଶୁଭ କାର୍ଯ୍ୟ ଏକ ବର୍ଷ ପର୍ଯ୍ୟନ୍ତ ସ୍ଥଗିତ ରହିଗଲା ।

ରାଜେନ୍ଦ୍ର ନିଜ ଗ୍ରାମର 'ମହାନାୟକ ସମିତି'ର ବାର୍ଷିକ ଅଧିବେଶନ ପାଇଁ ଧନଞ୍ଜୟଙ୍କୁ ସଭାପତି ନିର୍ବାଚନ କରି ଆମନ୍ତ୍ରଣ କରିଥିଲେ । ସେଠାରେ ପ୍ରଦାନ କରାଯାଇଥିବା ଆତିଥ୍ୟ, ହରିଚନ୍ଦନଙ୍କ ପରିବାରର ସ୍ନେହ ଓ ମଧୁର ସ୍ୱଭାବ, ଗ୍ରାମର ପ୍ରାକୃତିକ ପରିବେଶ ଏବଂ ବିଶେଷକରି କନକଲତାର ଜାତୀୟତାବ୍ୟଞ୍ଜକ କବିତା ଧନଞ୍ଜୟଙ୍କୁ ଯଥେଷ୍ଟ ଆକର୍ଷିତ କରିଥିଲା । ଇତି ମଧ୍ୟରେ ମାତୃକ୍ରିୟାର ଏକ ବର୍ଷ ପରେ ପୁନରାୟ ବିବାହ ସମ୍ପର୍କରେ ଆଲୋଚନା ହେବା ସମୟରେ ପାଇକରାଙ୍କ ଭାଇ ପୁରଞ୍ଜୟ ହରିଚନ୍ଦନଙ୍କ ଅଧିକାରରେ ଥିବା ଆଖଣ୍ଡଳମଣିଙ୍କ ବିଜେଆସ୍ଥାନରୁ ଚାରିପଣ ଯୌତୁକ ଦାବି କରିଥିଲେ । କନ୍ୟାପକ୍ଷର ଏ ସର୍ତ୍ତରେ ସମ୍ମତି ନ ଥିଲା । କାରଣ ହରିଚନ୍ଦନଙ୍କ ସେହି ବିଜେଆସ୍ଥାନ ଥିଲା ତାଙ୍କ ଗୌରବର କାରଣ । ଏହି ସ୍ଥାନ ପାଇଁ ପାଇକରା ବଂଶ ସହିତ ମାଲିମକଦ୍ଦମା ଲାଗି ପ୍ରିଭି କାଉନ୍‌ସିଲ୍‌ରେ ମୀମାଂସା ହୋଇ ହରିଚନ୍ଦନଙ୍କ ସପକ୍ଷରେ ଯାଇଥିଲା । ହରିଚନ୍ଦନଙ୍କ ଦୁଇ ବଡ଼ପୁଅ କନକଲତା ପାଇଁ ନୀରବ ରହିଥିଲେ; ମାତ୍ର ତୃତୀୟ ପୁତ୍ର ସମ୍ପୂର୍ଣ୍ଣ ବିରୋଧ କରିବା ସହିତ ଯେକୌଣସି ପ୍ରତିକୂଳ ପରିସ୍ଥିତି ସୃଷ୍ଟି କରିବା ନିମିତ୍ତ ପ୍ରସ୍ତୁତ ଥିଲା । ଏହି କାରଣରୁ ବିବାହ ପ୍ରସ୍ତାବ ଭାଙ୍ଗିଯାଇଥିଲା । ପାଇକରା ନିଜ ପୁତ୍ରକୁ ଅନ୍ୟ ସ୍ଥାନରେ ବିବାହ ଦେବା ପାଇଁ ପ୍ରସ୍ତୁତ ଥିବା ସମୟରେ ଧନଞ୍ଜୟ ଅଭିମାନ ଓ ବିଷାଦ ହୃଦୟରେ ପୁରୀ ଚାଲିଯାଇଥିଲା । କନକଲତା ଏହି ଦୁଃଖରେ ମ୍ରିୟମାଣ ହୋଇ ରୋଗାକ୍ରାନ୍ତ ହେବାରୁ ଶଯ୍ୟାଶାୟିନୀ ହୋଇପଡ଼ିଲା । ଶେଷରେ ରାଜେନ୍ଦ୍ର ଆସ୍ଥାନର ନିଜ ଭାଗ ଯୌତୁକରୂପେ ଦେବାକୁ ପିତାଙ୍କୁ କହିଥିଲା । କନକଲତା ପାଇଁ ଜଳବାୟୁ ପରିବର୍ତ୍ତନର ଆବଶ୍ୟକତା ଜାଣି ହରିଚନ୍ଦନ ସସ୍ତ୍ରୀକ କନକଲତାକୁ

ନେଇ ପୁରୀ ଯାଇଥିଲେ । ଦିନେ ହଠାତ୍ ପୁରୀ ସମୁଦ୍ରକୂଳରେ ସାକ୍ଷାତ ହୁଏ ଧନଞ୍ଜୟଙ୍କର ରାଜେନ୍ଦ୍ରଙ୍କ ସହିତ ଏବଂ ପରସ୍ପରକୁ କୋଳାଗ୍ରତ କରି ନିଜର ଉଭୟ ପ୍ରତି ରହିଥିବା ଅନୁରାଗ ପ୍ରକାଶ କଲେ । ପରେ କନକଲତା ଓ ଧନଞ୍ଜୟଙ୍କର ବିବାହ ସଂସାଧିତ ହୋଇଛି । ଦୁଇଟି ପରିବାର ମଧ୍ୟରେ ପୁଣି ସୌହାର୍ଦ୍ଦ୍ୟ ପ୍ରତିଷ୍ଠିତ ହେଲା । ଧନଞ୍ଜୟଙ୍କର ମଧ୍ୟ ଚାକିରି ହୋଇଗଲା ।

ବିଧବା ଉମାର ଦୁଃଖରେ ମ୍ରିୟମାଣ ହେଉଥିଲା କନକଲତା । ଉଭୟଙ୍କ ମଧ୍ୟରେ ସମ୍ପର୍କ ବେଶ୍ ନିବିଡ଼ ହୋଇପାରିଥିଲା । ରାଜେନ୍ଦ୍ର କନକଲତା ଶାଶୂଘରକୁ ଯାଇଥିବା ସମୟରେ ଉମା ସହିତ ସାକ୍ଷାତ୍ ହୋଇଥିଲା । ତା'ର ରୂପ ଏବଂ ବୈଧବ୍ୟ ଜୀବନ ପ୍ରତି ସମାଜ-ସଂସ୍କାର ପ୍ରୟାସୀ ରାଜେନ୍ଦ୍ର ଆକୃଷ୍ଟ ହୋଇପଡ଼ିଥିଲା । ବିଧବା ବିବାହ କରି ଏହି କୁସଂସ୍କାର ଲୋପ ନିମିତ୍ତ ତା'ମନରେ ସୃଷ୍ଟି ହୋଇଛି ଆବେଗ । ଉମାର ଭାଇ ଧନଞ୍ଜୟଙ୍କୁ ଉମା ସହିତ ବିବାହ ପ୍ରସ୍ତାବ ଦେବାରୁ ଧନଞ୍ଜୟ ପ୍ରଥମେ ଏଥିରେ ରାଜି ହୋଇ ନାହିଁ; ମାତ୍ର ପରେ ଏହାର ବାସ୍ତବତା ଅନୁଭବ କରି ଉଚିତ ସମୟ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ କହିଛି । ବୋଧହୁଏ ଏହି ବିଧବା ବିବାହ କରାଇବାର ସାହସ ସେତେବେଳେ ଔପନ୍ୟାସିକଙ୍କର ନ ଥିଲା । ତେଣୁ କିଛିଦିନ ପରେ ବିସୂଚିକା ରୋଗରେ ଉମା ପ୍ରାଣ ତ୍ୟାଗ କରିଛି । ଉମା ମୃତ୍ୟୁ ପଛର କାରଣ ଅନୁଭବ କରିପାରିଥିଲା ରାଜେନ୍ଦ୍ର । ଉମାର ମୃତ୍ୟୁ ମାନସିକ କ୍ଷତି କରିଥିଲା ରାଜେନ୍ଦ୍ରର । ସେଥିପାଇଁ ସେ ଗୃହତ୍ୟାଗୀ ହୋଇଛି । ହରିଚନ୍ଦନ ବହୁ ଚେଷ୍ଟା ସତ୍ତ୍ୱେ ରାଜେନ୍ଦ୍ରର କୌଣସି ସନ୍ଧାନ ପାଇପାରିଲେ ନାହିଁ ।

ଧନଞ୍ଜୟ ଚାକିରି ଛାଡ଼ି ପୁରୀରେ ଓକିଲାତି କରିବାରୁ ଏବଂ ଉମାଙ୍କର ଅକାଳ ବିୟୋଗ କନକଲତାକୁ ଗଭୀର ଆଘାତ ଦେବାରୁ ସେ ଶାଶୂଘର ତ୍ୟାଗ କରି ପୁରୀରେ ସ୍ୱାମୀ ସହିତ ଅବସ୍ଥାନ କରିଛି । ସନ୍ତାନସନ୍ତତିଙ୍କର ଜନନୀ ହୋଇ ସୁଖମୟ ଜୀବନଯାପନ କରିଛି । ହରିଚନ୍ଦନ ସପରିବାର ଆସି କନକକୁ ସଙ୍ଗୁଳି ଯାଆନ୍ତି । ଇତି ମଧ୍ୟରେ ରାଜେନ୍ଦ୍ର ଭାବନାରେ ଦୁଃଖିତା ମାତା ପଦ୍ମାବତୀ ଇହଲୀଳା ସମ୍ବରଣ କରିଛନ୍ତି । ହଠାତ୍ ଦିନେ ପୁରୀରେ ଜଣେ ସନ୍ନ୍ୟାସୀଙ୍କ ଆବିର୍ଭାବ ଘଟିଲା, ଯାହାଙ୍କର ଗୀତାର ନିଷ୍କାମଧର୍ମ ଅଭିଭାଷଣରେ ସମସ୍ତେ ଚମତ୍କୃତ ହୋଇଥିଲେ । ଧନଞ୍ଜୟ ସପରିବାର ଭାଷଣ ଶୁଣିବାକୁ ଯାଇ ଅଭିଭୂତ ହୋଇଥିଲେ । କନକଲତା ସେହି ସନ୍ନ୍ୟାସୀଙ୍କୁ ଚିହ୍ନି ପାରିଥିଲେ । ସେ ଆଉ କେହି ନ ଥିଲେ, ଥିଲେ ତା'ଭାଇ ରାଜେନ୍ଦ୍ର । ଉମାର ମୃତ୍ୟୁପରେ ରାଜେନ୍ଦ୍ର ବିଭିନ୍ନ ସ୍ଥାନ ବୁଲି ବହୁ ସାଧୁଙ୍କ ସଂସ୍ପର୍ଶରେ ଆସିଥିଲେ ଏବଂ ଜ୍ଞାନ, କର୍ମ ଓ ଭକ୍ତିର ଅଧିକାରୀ ହୋଇ ଜନସେବାରେ ନିଜକୁ ଉତ୍ସର୍ଗ କରିଥିଲେ । ଗୀତା ଓ ଅନ୍ୟାନ୍ୟ ଶାସ୍ତ୍ରରେ ଗଭୀର ବ୍ୟୁତ୍ପତ୍ତିଲାଭ କରି ବିଭିନ୍ନ

ସ୍ଥାନରେ ଜନସେବା କରି ଶେଷରେ ସେ ପୁରୀରେ ପହଞ୍ଚିଥିଲେ ଏବଂ ସେଠାରେ ସାକ୍ଷାତ ହୋଇଥିଲା ଭଉଣୀ କନକଲତା ସହିତ । ମାତାଙ୍କ ମୃତ୍ୟୁ ସମ୍ବାଦରେ ଗଭୀର ଦୁଃଖିତ ହୋଇଥିଲେ । ପରେ ସେଠାରେ କିଛି ଜନହିତକାରୀ କାର୍ଯ୍ୟକରି ଦେଶାଟନରେ ଚାଲିଗଲେ । ତାଙ୍କ କାର୍ଯ୍ୟଦ୍ୱାରା ଗଭୀର ଭାବରେ ପ୍ରଭାବିତ ହୋଇ ଧନଞ୍ଜୟ ଓ କନକଲତା ରାଜେନ୍ଦ୍ରଙ୍କ ଧର୍ମ (ସେବାଧର୍ମ) ସେହିଠାରେ ରହି ପାଳନ କରିବାକୁ ଲାଗିଲେ । ତାଙ୍କ ସେବାଧର୍ମ ଦ୍ୱାରା ସେମାନେ ବହୁଭାବରେ ଲୋକମାନଙ୍କଦ୍ୱାରା ପ୍ରଶଂସିତ ହେଲେ । ଉପନ୍ୟାସର ପରିସମାପ୍ତି ଏହିଠାରେ ହୋଇଛି । ରାଜେନ୍ଦ୍ର, ଧନଞ୍ଜୟ ଏବଂ କନକଲତାକୁ ଔପନ୍ୟାସିକ ଏକ ଏକ ଆଦର୍ଶ ଚରିତ୍ରଭାବେ ଗଢ଼ି ତୋଳିବାରେ ସମର୍ଥ ହୋଇଛନ୍ତି ।

## ଚରିତ୍ର ଚିତ୍ରଣ

କନକଲତା ଉପନ୍ୟାସରେ ଅନେକ ଚରିତ୍ରଙ୍କର ସମାବେଶ ଘଟିଛି । ଏହା ମଧ୍ୟରେ ଅଛନ୍ତି ଉଭୟ ମୁଖ୍ୟଚରିତ୍ର ଓ ଗୌଣଚରିତ୍ର । ଉପନ୍ୟାସର କଥାବସ୍ତୁ ହରିଚନ୍ଦନ ଓ ଇନ୍ଦ୍ରଜିତ ପାଇକରା– ଦୁଇଟି ପରିବାରକୁ ନେଇ ଗଢ଼ିଉଠିଛି । ମୁଖ୍ୟତଃ କନକଲତା, ଧନଞ୍ଜୟ, ରାଜେନ୍ଦ୍ର– ଉପନ୍ୟାସର ପ୍ରଥମରୁ ପରିସମାପ୍ତି ପର୍ଯ୍ୟନ୍ତ ନିଜର ଅସ୍ତିତ୍ୱ ବଜାୟ ରଖିପାରିଛନ୍ତି । ଏତଦ୍‌ବ୍ୟତୀତ ହରିଚନ୍ଦନ ଓ ତାଙ୍କ ପତ୍ନୀ ପଦ୍ମାବତୀ; ପାଇକରା ଓ ତାଙ୍କ ପତ୍ନୀ ଅନ୍ନପୂର୍ଣ୍ଣା ଏବଂ ବିଧବାକନ୍ୟା ଉମା, ପାଇକରାଙ୍କ ବିଧବା ଭଉଣୀ ତୁଳସୀ ଦେଈ, ପାଇକରାଙ୍କ ଭାଇ ପୁରଞ୍ଜୟ; ହରିଚନ୍ଦନଙ୍କ ରାଜେନ୍ଦ୍ର ବ୍ୟତୀତ ଅନ୍ୟ ତିନିପୁତ୍ର ଇନ୍ଦ୍ରମାଧବ, ଚନ୍ଦ୍ରମାଧବ, ବୀରେନ୍ଦ୍ର; ତିନିଜଣ ପୁତ୍ରବଧୂ ସାବିତ୍ରୀ, ଦମୟନ୍ତୀ, ଶାରଦା ଏବଂ ତତ୍‌ସହିତ ଅଛନ୍ତି କୁନ୍ତୀମା', ପାଟ, ଚମ୍ପା, ଅଭିରାମ ଓରଫ ଟୁଆଁବାବୁ, ରତ୍ନମଞ୍ଜରୀ, ଯୋଗୀ, ମିଶ୍ରେ, ହରିଆ, ତିଆଡ଼ୀଏ, ମାଳତୀ, ସାଆନ୍ତମା', ମଧ୍ୟସ୍ଥ, ଘନଶ୍ୟାମ, ଅନନ୍ତା ଆଦି ଚରିତ୍ରଗଣ ପରିଲକ୍ଷିତ ହୋଇଥାନ୍ତି । ମାତ୍ର ଏମାନଙ୍କର ଭୂମିକା ଉପନ୍ୟାସରେ ଅତ୍ୟନ୍ତ ଗୌଣ । ଅନେକ ଚରିତ୍ରଙ୍କର ନାମ ମାତ୍ର ଉଚ୍ଚାରିତ ହୋଇଛି । କେତେକ ଚରିତ୍ର ଅଳ୍ପ କେତୋଟି ବାକ୍ୟରେ ନିଜର ଭୂମିକା ଶେଷ କରିଦେଇଛନ୍ତି । ଆଉ କିଛି ଚରିତ୍ର ଗୋଟିଏ, ଦୁଇଟି ବା ତିନୋଟି ପରିଚ୍ଛେଦ ମଧ୍ୟରେ ଆସି ଅତ୍ୟନ୍ତ ଗୌଣ ଭୂମିକା ନିର୍ବାହ କରିଛନ୍ତି ।

ବାସ୍ତବରେ 'କନକଲତା' ଉପନ୍ୟାସରେ କନକଲତା, ଧନଞ୍ଜୟ ଓ ରାଜେନ୍ଦ୍ର ହେଉଛନ୍ତି ମୁଖ୍ୟଚରିତ୍ର । କନକଲତା ବିଶେଷ ପାଠ ପଢ଼ି ନ ଥିଲେ ହେଁ ହାତ ପାହାନ୍ତାରେ ଥିବା ସମସ୍ତ ଶିକ୍ଷା ଅନ୍ତଃକରଣରେ ଗ୍ରହଣ କରିଛନ୍ତି

ଏବଂ ତା'ର ଯଥାର୍ଥ ଉପଯୋଗ ମଧ୍ୟ କରିଛନ୍ତି । ହରିଚନ୍ଦନଙ୍କ ଘରର ଅଲିଅଳ କନ୍ୟା, ଭାଇମାନଙ୍କର ଗେହ୍ଲା ଭଉଣୀ ଏବଂ ଭାଉଜମାନଙ୍କର ସ୍ନେହର ନଣନ୍ଦ । ତା'ର କବିପ୍ରତିଭା ରହିଛି । ଉପନ୍ୟାସରେ 'ମହାନାୟକ ସମିତି'ର ବାର୍ଷିକ ଅଧିବେଶନରେ ତା'ଦ୍ୱାରା ଲିଖିତ 'ପଦ୍ମାବତୀ ପରିଣୟ' ନାମକ କବିତା ଦୁଇଜଣ ବାଳିକାଙ୍କଦ୍ୱାରା ଗାନ କରାଯାଇଥିଲା ଏବଂ କବିତାଟି ସମସ୍ତଙ୍କର ପ୍ରଶଂସାଭାଜନ ହୋଇଥିଲା । ତା' ଜନ୍ମଦିନରେ ଆଖଣ୍ଡଳମଣି ଦର୍ଶନ ଉଦ୍ଦେଶ୍ୟରେ ଯାଇଥିବା ସମୟରେ କିଛି ସମୟପାଇଁ ଧନଞ୍ଜୟଙ୍କ ସହିତ ସାକ୍ଷାତ୍ ହୋଇଥିଲା ଏବଂ ପ୍ରଥମ ଦୃଷ୍ଟି ବିନିମୟରେ ପରସ୍ପର ଉଭୟଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ପରବର୍ତ୍ତୀକାଳରେ ବିବାହ ପ୍ରସ୍ତାବ ଆସିବାରୁ ଏବଂ ଘରେ ସେ ବିଷୟରେ ଆଲୋଚନା ହେବାରୁ କନକଲତା ଦ୍ୱନ୍ଦ୍ୱରେ ପଡ଼ିଛନ୍ତି; ପ୍ରକୃତରେ କାହା ସହିତ ବିବାହ ପ୍ରସ୍ତାବ ପଡ଼ିଛି ସଠିକ୍ ଭାବରେ ଜାଣି ନ ଥିବାରୁ । ମାତ୍ର ଧନଞ୍ଜୟଙ୍କ ସହିତ ପ୍ରସ୍ତାବ ପଡ଼ିଥିବା ଜାଣିବା ପରେ ସେ ଖୁସି ଏବଂ ଲଜ୍ଜାରେ ଜଡ଼ସଡ଼ ହୋଇଛନ୍ତି । ପ୍ରସ୍ତାବ ସମ୍ପର୍କରେ ଆଲୋଚନା ବେଳେ ପାଇକରାୟଙ୍କ ଭାଇ ଆଖଣ୍ଡଳମଣିଙ୍କ ବିଜେଆସ୍ଥାନରୁ ଚାରିପଣ ଯୌତୁକ ଦାବି କରିବାରୁ ପ୍ରସ୍ତାବ ଭାଙ୍ଗିଯାଇଥିଲା ଓ ଯାହାଦ୍ୱାରା କନକଲତା ମାନସିକ ଆଘାତ ପାଇ ଶଯ୍ୟାଶାୟୀ ହୋଇପଡ଼ିଥିଲେ । ଡାକ୍ତରଙ୍କ ପରାମର୍ଶ ଅନୁଯାୟୀ ସ୍ୱାସ୍ଥ୍ୟ ପରିବର୍ତ୍ତନ ଉଦ୍ଦେଶ୍ୟରେ ପୁରୀ ଯାଇଥିବା ସମୟରେ ବିଷାଦିତ ଧନଞ୍ଜୟ (ବିବାହ ଭାଙ୍ଗିଯାଇଥିବା କାରଣରୁ ସେ ଅଭିମାନରେ ଗୃହତ୍ୟାଗ କରି ପୁରୀ ଚାଲିଆସିଥିଲେ) ସହିତ ସାକ୍ଷାତ୍ ହୋଇଥିଲା ଏବଂ ସମ୍ପର୍କ ହୋଇଥିଲା ଅଧିକ ଦୃଢ଼ୀଭୂତ । ରାଜେନ୍ଦ୍ର ନିଜ ଭାଗର ଚାରିପଣ ପାଇକରାୟଙ୍କ ନାମରେ ଲେଖିଦେବାର ପ୍ରତିଶ୍ରୁତି ଦେବାରୁ ବିବାହକାର୍ଯ୍ୟ ସମାପନ ହୋଇଥିଲା । ସମବୟସୀ ନଣନ୍ଦ ବିଧବା ଉମାର ଦୁଃଖ କନକଲତାକୁ ବିଶେଷ ବ୍ୟଥିତ କରିଥିବାରୁ ନିଜେ ଭଲ ଶାଢ଼ି ଓ ଅଳଙ୍କାର ପିନ୍ଧୁ ନ ଥିଲେ ଏବଂ ସବୁବେଳେ ଉମାକୁ ଖୁସି କରିବାକୁ ପ୍ରଯତ୍ନ ଜାରି ରଖିଥିଲେ । ଏଥିରୁ ତା'ର ସମ୍ବେଦନଶୀଳ ହୃଦୟର ପରିଚୟ ମିଳେ । ଭଲ ପତ୍ନୀ, ଭଲ ଭାଉଜ ଏବଂ ଭଲ ବୋହୂର ପରିଚୟ ଦେଇ ସେ ସମସ୍ତଙ୍କର ପ୍ରିୟଭାଜନ ହୋଇପାରିଥିଲେ । ଉମାର ବିବାହ ସପକ୍ଷରେ ମତ ଦେଇଥିଲେ ଏବଂ ତା'ର ଅକାଳବିୟୋଗ ବ୍ୟଥିତ କରିବାରୁ ଶାଶୂଘର ଛାଡ଼ି ସ୍ୱାମୀ ସହିତ ପୁରୀରେ ଅବସ୍ଥାନ କରିଥିଲେ । ଭାଇ ରାଜେନ୍ଦ୍ର ଉମା ବିରହରେ ସନ୍ନ୍ୟାସ ଦୀକ୍ଷା ନେଇଥିଲେ ଏବଂ ଦୀର୍ଘଦିନ ପରେ ପୁରୀରେ ସାକ୍ଷାତ୍ ହେବାଦ୍ୱାରା ଭାଇଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଲୋକଙ୍କ ସେବା ଏବଂ ସହାୟତା ପାଇଁ ନିଜକୁ ସମ୍ପୂର୍ଣ୍ଣ ଉତ୍ସର୍ଗ କରିଥିଲେ । ବିଭିନ୍ନ ଦୃଷ୍ଟିରୁ ବିଚାରକଲେ କନକଲତା ଏକ ଆଦର୍ଶ ଚରିତ୍ର ରୂପେ ଉପନ୍ୟାସରେ ନିଜର ବ୍ୟକ୍ତିତ୍ୱ ପ୍ରତିଷ୍ଠା କରିବାରେ ସମର୍ଥ ହୋଇଛନ୍ତି ।

ଧନଞ୍ଜୟ ପାଇକରାୟଙ୍କ ଏକମାତ୍ର ପୁତ୍ରସନ୍ତାନ ଏବଂ ଜଣେ ଆଦର୍ଶବାଦୀ ଯୁବକ । ସେ ଶିକ୍ଷାର ମର୍ଯ୍ୟାଦା ବୁଝନ୍ତି । ଉଚ୍ଚଶିକ୍ଷିତ ହେବା ସତ୍ତ୍ୱେ ସାଧାରଣ ମଣିଷଙ୍କ ପ୍ରତି ବେଶ୍ ସମ୍ବେଦନଶୀଳ । ପରମ୍ପରା ପ୍ରତି ଶ୍ରଦ୍ଧାଶୀଳ; ମାତ୍ର ଅନ୍ୟାୟ ଓ ଅନୀତିର ପ୍ରଶ୍ରୟ ନିଅନ୍ତି ନାହିଁ । କନକଲତାକୁ ପ୍ରଥମେ ଆଖଣ୍ଡଳମଣି ମନ୍ଦିରରେ ଏବଂ ପରେ ତା'ର କବିତା ଶୁଣି ତା'ପ୍ରତି ଆକର୍ଷିତ ହୋଇଛନ୍ତି । ହରିଚନ୍ଦନଙ୍କ ପରିବାରର ସଂସ୍କାର ତାଙ୍କୁ ପ୍ରଭାବିତ କରିଛି । ପଲ୍ଲୀଗ୍ରାମର ଦୃଶ୍ୟ ତାଙ୍କ ଭାବୁକମନକୁ କରିଛି ତନ୍ଦ୍ରାଚ୍ଛନ୍ନ । ନିଜ ଦାଦାଙ୍କ ଅନ୍ୟାୟ ଯୌତୁକ ଦାବି ଯୋଗୁଁ କନକଲତାଙ୍କ ସହିତ ବିବାହ ପ୍ରସ୍ତାବ ଭାଙ୍ଗିଯିବାରୁ ତାଙ୍କ ସରଳ ମନରେ ଗଭୀର ବ୍ୟଥା ସୃଷ୍ଟି ହୋଇଛି ଏବଂ ଦୁଃଖରେ ସେ ଘରଛାଡ଼ି ପୁରୀ ଚାଲିଯାଇଛନ୍ତି । କିଛିଦିନ ପରେ ପୁରୀରେ ହରିଚନ୍ଦନ ପରିବାର ସହିତ ସାକ୍ଷାତ୍ ଏବଂ କନକଲତାଙ୍କ ସ୍ୱାସ୍ଥ୍ୟାବସ୍ଥା ତାଙ୍କୁ ଆଘାତ ଦେଇଛି । ନିଜ ପରିବାରଙ୍କ ଅନ୍ୟାୟ ଯୌତୁକ ଦାବି ପାଇଁ ସେ କ୍ଷମା ପ୍ରାର୍ଥନା କରିଛନ୍ତି । ରାଜେନ୍ଦ୍ରଙ୍କ ମହାନତା ଯୋଗୁଁ କନକଲତା ସହିତ ବିବାହ ହେବା ପରେ ସୁଖମୟ ଦାମ୍ପତ୍ୟ ଜୀବନ ଅତିବାହିତ କରିଛନ୍ତି । ପତ୍ନୀଙ୍କ ସହିତ ମଧୁର ସମ୍ପର୍କ ଏବଂ ପତ୍ନୀଙ୍କର ଆଦର୍ଶ ତଥା ସୋହାଗପଣ ତାଙ୍କୁ ବିମୋହିତ କରିଛି । ପରମ୍ପରା ପ୍ରତି ଶ୍ରଦ୍ଧାଶୀଳ ହୋଇଥିବାରୁ ପ୍ରଥମେ ବିଧବାଭଉଣୀ 'ଉମା'ର ବିବାହ ପ୍ରସ୍ତାବରେ ଅସମ୍ମତ ହୋଇଛନ୍ତି ଏବଂ ପରେ ବାସ୍ତବତାକୁ ଅନୁଭବ କରି ସେ ସମ୍ମତି ପ୍ରକାଶ କରିଛନ୍ତି । 'ଉମା'ର ଅଚାନକ ବିୟୋଗ ତାଙ୍କୁ ଗଭୀର ଭାବରେ ମର୍ମାହତ କରିଛି । ପୁରୀରେ ସପରିବାର ଜୀବନ ଅତିବାହିତ କରୁଥିବା ସମୟରେ ଦୀର୍ଘଦିନରୁ ନିଖୋଜ ଆଦର୍ଶ ଓ ସଂସ୍କାରକାମୀ ରାଜେନ୍ଦ୍ରଙ୍କ ଆବିର୍ଭାବ ତାଙ୍କୁ ପୁଲକିତ କରିଛି । ତାଙ୍କ ଆଦର୍ଶରେ ନିଜ ପତ୍ନୀ ସହିତ ସେ ସମାଜସେବାକୁ ଜୀବନର ବ୍ରତଭାବରେ ଗ୍ରହଣ କରିଛନ୍ତି । ଜଣେ ଆଦର୍ଶ ସ୍ୱାମୀ, ସ୍ନେହଶୀଳ ପିତା, ବାଧ୍ୟସନ୍ତାନ ଏବଂ ପରମ୍ପରା ତଥା ସଂସ୍କାରକାମୀ ବ୍ୟକ୍ତି ଭାବରେ ଉପନ୍ୟାସରେ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛନ୍ତି ।

ରାଜେନ୍ଦ୍ର ଜଣେ ବିପ୍ଳବୀ, ସମ୍ବେଦନଶୀଳ, ସଂସ୍କାରପ୍ରୟାସୀ ଶିକ୍ଷିତ ଯୁବକ ଭାବରେ ଉପନ୍ୟାସରେ ନିଜର ସ୍ୱାତନ୍ତ୍ର୍ୟ ପ୍ରତିପାଦନ କରିପାରିଛନ୍ତି । କୁସଂସ୍କାର, ଅନ୍ଧବିଶ୍ୱାସ ଏବଂ ରୁଗ୍ଣ ପରମ୍ପରା ପ୍ରତି ସେ ସତତ ପ୍ରତିକ୍ରିୟାଶୀଳ । ତେଣୁ ପାଇକରାୟଙ୍କ ଯୌତୁକ ଦାବି ଏବଂ ନିଜ ପରିବାରର ଅଯଥା ଅଭିମାନ ତାଙ୍କ ଦ୍ୱାରା ଗ୍ରହଣୀୟ ହୋଇପାରି ନାହିଁ । ମାତ୍ର ଜଣେ ସ୍ନେହୀ ଭାଇ ଭାବରେ କନକଲତା ପାଇଁ ନିଜ ଭାଗକୁ ଯୌତୁକରୂପେ ଦେବାକୁ ପ୍ରତିଶ୍ରୁତି ଦେଇ ଭାଙ୍ଗିଯାଉଥିବା ବିବାହ ପ୍ରସ୍ତାବକୁ ଯୋଡ଼ିବାରେ ସମର୍ଥ ହୋଇଛନ୍ତି । ସାମାଜିକ ସ୍ଥିତାବସ୍ଥା ପ୍ରତି

ପ୍ରତିକ୍ରିୟାଶୀଳ ହୋଇଥିବାରୁ ମନ୍ଦିରଦର୍ଶନ କିମ୍ବା ପୂଜାପାର୍ବଣର ଅଯଥା ମାନସିକ ଦୁର୍ବଳତାକୁ ସେ ଗ୍ରହଣ କରିପାରନ୍ତି ନାହିଁ । ସେଥିପାଇଁ ନିଜ ନିଜ କୁଳଗୁରୁଙ୍କ ମୁହଁରେ ଜବାବ ଦିଅନ୍ତି । ନିଜ ଘରେ କାର୍ଯ୍ୟ କରୁଥିବା ଚମ୍ପାର ବୈଧବ୍ୟ ଜୀବନ ପ୍ରତି ସେ ଥିଲେ ସମ୍ବେଦନଶୀଳ । କନକଲତାର ବିବାହ ପରେ ତା' ଶାଶୂଘରକୁ ଯାଇଥିବା ସମୟରେ ସେଠାରେ ସୁନ୍ଦରୀ ବାଲ୍ୟବିଧବା ଉମାର ଦୁଃଖଦ ଜୀବନ ତାଙ୍କୁ ଗଭୀର ବ୍ୟଥା ଦେଇଥିବାରୁ ତାକୁ ବିବାହ ନିମିତ୍ତ ଦୃଢ଼ ନିଷ୍ପତ୍ତି ନେଇଛନ୍ତି; ମାତ୍ର ଉମାର ଅଚାନକ ମୃତ୍ୟୁରେ ମ୍ରିୟମାଣ ହୋଇ ସଂସାରତ୍ୟାଗୀ ହୋଇଛନ୍ତି ଏବଂ ଶେଷରେ ସନ୍ନ୍ୟାସ ଧର୍ମ ଗ୍ରହଣ କରି ଗୀତାର ମହତ୍ତ୍ୱ ପ୍ରଚାର ସହିତ ସାମାଜିକ କର୍ମରେ ନିଜକୁ ସମ୍ପୂର୍ଣ୍ଣ ଉତ୍ସର୍ଗ କରିଛନ୍ତି । ସନ୍ନ୍ୟାସ ନେବା ପୂର୍ବରୁ ମଧ୍ୟ ଗ୍ରାମର ବିକାଶ ତଥା ପଲ୍ଲୀବାସୀଙ୍କ ଅନ୍ଧ-କୁସଂସ୍କାର ଦୂର କରିବାକୁ ସକାରାତ୍ମକ ପଦକ୍ଷେପ ଗ୍ରହଣ କରିଛନ୍ତି । ଜଣେ ଆଦର୍ଶ ସମାଜସେବୀ ଓ ବାସ୍ତବବାଦୀ ମଣିଷ ଭାବରେ ସେ ଉପନ୍ୟାସରେ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛନ୍ତି ।

ପଦ୍ମାବତୀ ଏବଂ ଅନ୍ନପୂର୍ଣ୍ଣା– ଉଭୟେ ଉପନ୍ୟାସରେ ଦୁଇଟି ଆଦର୍ଶ ନାରୀ ଭାବରେ ଦେଖାଦେଇଛନ୍ତି । ସ୍ନେହଶୀଳା ମାତା ଏବଂ ପରିବାରର ସମ୍ବେଦନଶୀଳା କର୍ତ୍ତ୍ରୀ ଭାବରେ ନିଜର ପରିଚୟ ପ୍ରମାଣିତ କରିଛନ୍ତି । ମାତ୍ର ପଦ୍ମାବତୀଙ୍କ ସ୍ୱାମୀ ସହିତ ଯେପରି ମଧୁର ସମ୍ପର୍କ ଏବଂ ପରିବାର ଉପରେ ପ୍ରାଧାନ୍ୟ ରହିଛି, ଅନ୍ନପୂର୍ଣ୍ଣାଙ୍କର ତାହା ହୋଇପାରି ନାହିଁ । ବିଧବା ନଣନ୍ଦ ତୁଳସୀଦେଈ ନିକଟରେ ହୀନପ୍ରଭ ଏବଂ ପାଇକରାୟଙ୍କ ନିକଟରେ ତାଙ୍କ ଅସ୍ତିତ୍ୱ ବେଶ୍ ଗୁରୁତ୍ୱ ରଖେ ନାହିଁ । ନିଜର ଏକମାତ୍ର କନ୍ୟା ଉମାର ବୈଧବ୍ୟ ତାଙ୍କୁ ଯେପରି ଦୁଃଖ ଦେଇଛି, ପୁତ୍ର ଧନଞ୍ଜୟଙ୍କ ଅଯଥା ଯୌତୁକ ପାଇଁ ବିବାହ ପ୍ରସ୍ତାବ ଭାଙ୍ଗିଯିବା ଏବଂ ସ୍ନେହାଧିକ ପୁତ୍ରର ଗୃହତ୍ୟାଗ ତାଙ୍କୁ ସେହିପରି ମର୍ମାନ୍ତିକ ଯନ୍ତ୍ରଣା ଦେଇଛି । ନିଜର କର୍ତ୍ତୃତ୍ୱ ନ ଥିବାରୁ ସେ କେବଳ ଅଶ୍ରୁବିସର୍ଜନ କରି ନିଜ ଅସହାୟତାକୁ ପ୍ରକାଶ କରିଛନ୍ତି । ମାତ୍ର ପଦ୍ମାବତୀଙ୍କ ପରିବାରରେ ସ୍ୱତନ୍ତ୍ର ଗୁରୁତ୍ୱ ରହିଛି । କନ୍ୟା ବିବାହରେ ପ୍ରତିବନ୍ଧକ ଏବଂ ରାଜେନ୍ଦ୍ରଙ୍କ ନିଜ ଭାଗ ଯୌତୁକ ଦେବାକୁ ସମ୍ମତ ପ୍ରଦାନ ତାଙ୍କୁ ବେଶ୍ ପୁଲକିତ କରିଛି । କନ୍ୟାର ପ୍ରଥମ ବିବାହ ପ୍ରସ୍ତାବ ଭାଙ୍ଗିଯିବା ଦ୍ୱାରା ଏବଂ କନକଲତାର ସେଥିପାଇଁ ସ୍ୱାସ୍ଥ୍ୟହାନି ଘଟିବା କାରଣରୁ ସେ ନିଜକୁ ଅତ୍ୟନ୍ତ ଦୁଃଖୀ ମନେକରିଛନ୍ତି । ପରିବାର ସଦସ୍ୟ ତଥା ଅନ୍ୟାନ୍ୟ ପରିଜନ ଏବଂ ଚାକର-ଚାକରାଣୀଙ୍କ ପ୍ରତି ସେ ଅତ୍ୟନ୍ତ ସମ୍ବେଦନଶୀଳ । ନିଜର ଦାୟିତ୍ୱ ଚମତ୍କାର ଭାବରେ ନିର୍ବାହ କରିଛନ୍ତି । ଜଣେ ସ୍ନେହଶୀଳା ମାତା ଭାବରେ ପୁତ୍ର ରାଜେନ୍ଦ୍ରଙ୍କ ଗୃହତ୍ୟାଗ ତାଙ୍କୁ ଏପରି ମାନସିକ ଯନ୍ତ୍ରଣା ଦେଇଛି ଯେ, ଯେଉଁଥିପାଇଁ ସେ

ଅକାଳରେ ପୁତ୍ର ଚିନ୍ତାରେ ଇହଲୀଳା ସମ୍ବରଣ କରିଛନ୍ତି । ଜଣେ ଆଦର୍ଶ ପତ୍ନୀ, ସ୍ନେହଶୀଳା ମାତା, ଦାୟିତ୍ୱବାନ୍ ଗୃହକର୍ତ୍ତ୍ରୀ ଭାବରେ ପଦ୍ମାବତୀ ଉପନ୍ୟାସରେ ନିଜସ୍ୱ ପରିଚୟ ସୃଷ୍ଟି କରିପାରିଛନ୍ତି ।

ଉପନ୍ୟାସରେ ଉମା ଏବଂ ତା'ପିଉସୀ ତୁଳସୀଦେଇ–ଦୁଇଜଣ ବାଲ୍ୟବିଧବା ରୂପେ ଦେଖାଦେଇଛନ୍ତି । ସ୍ୱପ୍ନ ଦେଖିବା ପୂର୍ବରୁ ସେମାନଙ୍କର ସ୍ୱପ୍ନଭଙ୍ଗ ହୋଇଛି । ତୁଳସୀଦେଇ ବୈଧବ୍ୟପରେ ପାଇକରାୟ ପରିବାରରେ ରହି ନିଜ ଭାଇଙ୍କ ସଂସାରକୁ ଆପଣାର କରିନେଇଛି । ପରମ୍ପରାକୁ ସମ୍ମାନ ଦେଇ ବିଧବା ବିବାହ ପ୍ରତି ନକାରାତ୍ମକ ଆଭିମୁଖ୍ୟ ଗ୍ରହଣ କରିଛନ୍ତି । ସ୍ୱପ୍ନଭଙ୍ଗ ଯୋଗୁଁ ବେଳେବେଳେ କର୍କଶ ଭାଷା ପ୍ରୟୋଗ କରି ଅନ୍ୟମାନଙ୍କୁ କ୍ଷତବିକ୍ଷତ କରିଛନ୍ତି । ପରିବାରରେ ନିଜର ଗୁରୁତ୍ୱ ଜାହିର କରି ପ୍ରତ୍ୟେକ କ୍ଷେତ୍ରରେ ନିଜ ମତ ପ୍ରତିଷ୍ଠା କରିଛନ୍ତି । ବିଧବା ଉମାର ବିବାହକୁ ସମ୍ପୂର୍ଣ୍ଣ ଭାବରେ ବିରୋଧ କରିଛନ୍ତି ଏବଂ ତା'ର ମୃତ୍ୟୁ ପାଇଁ ଏକପ୍ରକାର କାରଣ ସାଜିଛନ୍ତି । ଭାଇ ଏବଂ ଅନ୍ୟମାନଙ୍କର ତା' ବିଚାରପ୍ରତି ସମ୍ମାନ ଓ ସମର୍ଥନ ଥିବାରୁ ନିଜ ମତକୁ ଅନ୍ୟମାନଙ୍କ ଉପରେ ଲଦିଦେବାର ସାମର୍ଥ୍ୟ ହାସଲ କରିଛନ୍ତି ଏବଂ ଶେଷରେ ବିସୂଚିକା ରୋଗରେ ଅସହାୟ ଭାବେ ମୃତ୍ୟୁବରଣ କରିଛନ୍ତି । ଉମା ସୁନ୍ଦରୀ, ସ୍ନେହଶୀଳା ଏବଂ ସମ୍ବେଦନଶୀଳା । କନକଲତାଙ୍କ ସହିତ ପ୍ରଥମ ସାକ୍ଷାତ୍‌ରୁ ତା'ପ୍ରତି ଆକର୍ଷିତା । ସେଥିପାଇଁ ନିଜ ଭାଇଙ୍କ ପ୍ରତି କନକଲତା ସମ୍ପୂର୍ଣ୍ଣ ଯୋଗ୍ୟା ବୋଲି ସେ ଅନ୍ୟମାନଙ୍କ ସହିତ ଯୁକ୍ତି କରିଛି । ସମବୟସୀ, ସୁନ୍ଦରୀ କନକଲତା ଖୁସିରେ ନିଜେ ଖୁସି ହୋଇଛି । ନିଜର ବିଧବା ଜୀବନର ଦୁଃଖକୁ ସେ କେବେ ଅନ୍ୟମାନଙ୍କ ସହିତ ବାଣ୍ଟିବାକୁ ଚାହି ନାହାନ୍ତି । ରାଜେନ୍ଦ୍ରଙ୍କୁ ଦେଖିବାପରେ ଓ ତାଙ୍କ ସମ୍ବେଦନଶୀଳ ସଂସ୍କାର ମନର ପରିଚୟ ପାଇ ସେ ତାଙ୍କ ପ୍ରତି ଆକୃଷ୍ଟ ହୋଇଛନ୍ତି । ଦ୍ୱିତୀୟ ଥର ସ୍ୱପ୍ନ ଦେଖିବା ପୂର୍ବରୁ ସ୍ୱପ୍ନଭଙ୍ଗର ଶିକାର ହୋଇ ଅକାଳରେ ବିସୂଚିକା ରୋଗରେ ପ୍ରାଣ ବିସର୍ଜନ ଦେଇଛନ୍ତି । ବାସ୍ତବରେ ଉମାର ଜୀବନ କାରୁଣ୍ୟର ଏକ ମହାକାବ୍ୟ ।

ଇନ୍ଦ୍ରଜିତ୍ ପାଇକରାୟ ଏବଂ ହରିଚନ୍ଦନ–ଦୁଇ ପରିବାରର ମୁଖ୍ୟ । ମାତ୍ର ହରିଚନ୍ଦନଙ୍କ ପରିବାରର ଗୌରବ ପାଇକରାୟ ପରିବାରରେ ପରିଲକ୍ଷିତ ହୋଇ ନାହିଁ । ଗୋଟିଏ ଅହଙ୍କାରକୁ ନେଇ ଇନ୍ଦ୍ରଜିତ୍ ପାଇକରାୟ ବଞ୍ଚନ୍ତି । ଯୌତୁକ ତାଙ୍କ ପାଇଁ ଗୁରୁତ୍ୱପୂର୍ଣ୍ଣ; ନିଜ ପୁତ୍ରର ସୁଖ ନୁହେଁ । ନିଜର ଅଯଥା ଯୌତୁକ ଦାବି ଯୋଗୁଁ ବିବାହ ଭାଙ୍ଗିଯିବାରୁ ସେ ଅନ୍ୟସ୍ଥାନରେ ବିବାହ ସମ୍ପର୍କ ସ୍ଥିର କରିଛନ୍ତି । ଧନଞ୍ଜୟଙ୍କ ଗୃହତ୍ୟାଗ ଯୋଗୁଁ ତାହା ସମ୍ଭବ ହୋଇପାରି ନାହିଁ ଏବଂ ଶେଷରେ ନିଜର ଭୁଲ୍ ବୁଝିପାରିଛନ୍ତି । ପରିବାରରେ ସ୍ୱାମୀ-ସ୍ତ୍ରୀଙ୍କ ଆପୋସ

ବୁଝାମଣା ପରିବାରରେ ଶାନ୍ତି ଆଣିଥାଏ । ଅଥଚ ପାଇକରାୟ ନିଜ ପତ୍ନୀଙ୍କୁ ଗୁରୁତ୍ୱ ଦିଅନ୍ତି ନାହିଁ । ନିଜର ଅହଂକାରକୁ ନେଇ ବଞ୍ଚିଥିବାରୁ ପାରିବାରିକ ଯେଉଁ ସୌହାର୍ଦ୍ଦ୍ୟ ରହିବା କଥା, ତାହା ରହିପାରି ନାହିଁ; ମାତ୍ର ହରିଚନ୍ଦନ ଜଣେ ଆଦର୍ଶ ସ୍ୱାମୀ, ପିତା ଏବଂ ପରିବାରର ମୁଖ୍ୟ ଭାବରେ ନିଜର ପରିଚୟ ଦେଇଥିବାରୁ ତାଙ୍କ ପାରିବାରିକ ସମ୍ପର୍କ ଏକ ମଧୁର ଡୋରିରେ ବନ୍ଧା ହୋଇ ରହିଛି । ପାଇକରାୟଙ୍କ ଅମୂଳକ ଯୌତୁକ ଦାବି ସତ୍ତ୍ୱେ ସେ ହଠାତ୍ ପ୍ରତିକ୍ରିୟାଶୀଳ ହୋଇ ନାହାନ୍ତି । ନିଜ କନ୍ୟାର ମାନସିକ ସନ୍ତୁଳନ ହରାଇବା ତାଙ୍କୁ ବ୍ୟଥା ଦେଇଛି ଏବଂ କନ୍ୟାର ସ୍ୱାସ୍ଥ୍ୟ ପରିବର୍ତ୍ତନ ପାଇଁ ସେ ତାକୁ ପୁରୀକୁ ନେଇଛନ୍ତି । ଧନଞ୍ଜୟଙ୍କ ମାନସିକ ଅସନ୍ତୁଳନ ମଧ୍ୟ ତାଙ୍କୁ ଦୁଃଖ ଦେଇଛି । ରାଜେନ୍ଦ୍ରଙ୍କ ମହନୀୟତାରେ ସେ ମୁଗ୍ଧ ଓ ଖୁସି ହୋଇଛନ୍ତି । ଗୋଟିଏ ପରିବାରକୁ କିପରି ସ୍ନେହରଜ୍ଜୁରେ ବାନ୍ଧିବାକୁ ପଡ଼େ ସେହି କଳା ଜଣାଥିବାରୁ ପରିବାରର ଚରିତ୍ରଗତ ବିବିଧତା ସତ୍ତ୍ୱେ ପରିବାରରେ କୌଣସି ମତାନ୍ତର ଓ ମନାନ୍ତର ସୃଷ୍ଟି ହୋଇ ନାହିଁ । ଜଣେ ଆଦର୍ଶବାଦୀ ଚରିତ୍ର ଭାବରେ ହରିଚନ୍ଦନ ଉପନ୍ୟାସରେ ଦେଖାଦେଇଛନ୍ତି । ଏତଦ୍‌ବ୍ୟତୀତ ଅନ୍ୟ ଯେଉଁ ଚରିତ୍ରଗଣ ଉପନ୍ୟାସରେ ଆସିଛନ୍ତି, ସେମାନେ ଗୁରୁତ୍ୱହୀନ ଏବଂ ଉପନ୍ୟାସରେ ସେମାନଙ୍କର ବିଶେଷ କିଛି ଗୁରୁତ୍ୱପୂର୍ଣ୍ଣ ଭୂମିକା ନ ଥିବାରୁ ଏଠାରେ ତା'ର ଆଲୋଚନା କରାଗଲା ନାହିଁ ।

## ଉପନ୍ୟାସର ନାମକରଣଗତ ତାତ୍ପର୍ଯ୍ୟ

ଯେକୌଣସି ସାହିତ୍ୟ ସୃଷ୍ଟିର ଗୌରବ ସୃଷ୍ଟିର ନାମକରଣ ଉପରେ ନିର୍ଭର କରିଥାଏ । ସୃଷ୍ଟିର ବିଷୟ ବା ଚରିତ୍ରମାନଙ୍କର ବିଶେଷତ୍ୱ ଆଧାରରେ ସ୍ରଷ୍ଟା ନାମକରଣ କରିଥାନ୍ତି । ନାମକରଣର ପ୍ରାସଙ୍ଗିକତା ନ ଥିଲେ ସୃଷ୍ଟିର ଗୌରବହାନି ହୋଇଥାଏ । ବାସ୍ତବ ଜଗତରେ 'ନାମ' କେବଳ ମାତ୍ର ସଙ୍କେତଟିଏ । ଏହି ନାମ ସହିତ ବ୍ୟକ୍ତିର ବ୍ୟକ୍ତିତ୍ୱର କୌଣସି ସମ୍ପର୍କ ନ ଥାଏ । ମାତ୍ର ସୃଷ୍ଟିର ନାମକରଣ ସହିତ ତା'ର ଚରିତ୍ର ଓ ବିଷୟ ନିବିଡ଼ ଭାବରେ ଜଡ଼ିତ । ଏହି ଦୃଷ୍ଟିରୁ 'କନକଲତା' ଉପନ୍ୟାସର ନାମକରଣଗତ ଔଚିତ୍ୟ ବିଚାର୍ଯ୍ୟ ।

'କନକଲତା' ଉପନ୍ୟାସର ନାମକରଣ ଉପନ୍ୟାସର ଅନ୍ୟତମ ମୁଖ୍ୟଚରିତ୍ର ବା ନାୟିକା କନକଲତା ନାମ ଅନୁଯାୟୀ କରାଯାଇଛି । ଉପନ୍ୟାସର ବିଷୟବସ୍ତୁର ଆରମ୍ଭ ହୋଇଛି କନକଲତା ଜନ୍ମଦିବସରୁ । କନକଲତା ଏକାଧାରରେ ଉପନ୍ୟାସରେ ଜଣେ ସୁନ୍ଦର କନ୍ୟା, ଆଦର୍ଶ କୁଳବଧୂ, ଅନୁରାଗିଣୀ ପତ୍ନୀ, ସମ୍ବେଦନଶୀଳ ଭାଉଜ, ସ୍ନେହୀ ଭଗ୍ନୀ, ଉଦାର-

ବିନମ୍ର-ମହାନ୍‌ହୃଦୟା ବ୍ୟକ୍ତିତ୍ୱଧାରିଣୀ । ବିଧବା ଚମ୍ପା ପ୍ରତି ସେ ଯେପରି ଉଦାରହୃଦୟା ନିଜ ବିଧବା ନଣନ୍ଦ ଉମା ପ୍ରତି ସେହିପରି ସହାନୁଭୂତିଶୀଳା । କନକଲତା ଜନ୍ମଦିନରେ ସମସ୍ତେ ଆନନ୍ଦମୁଖର ଥିବା ସମୟରେ ବିଧବା ଚମ୍ପାର ଦୁଃଖ କନକଲତା ବୁଝିପାରିଥିବାରୁ ଏକାନ୍ତରେ ତାକୁ ଡୁନି ଡୁନି କରି କହିଥିଲା– "ଚମ୍ପା, ଚାଲ ଠାକୁର ପାଖକୁ ଯିବୁ । ଗାଧୋଇପଡ଼ି ଆ, ମୁଁ ଲୁଗାଦେବି । ମୋର ବଳକା ଲୁଗା ଅଛି ।" ଏଥିରୁ ବିଧବା ଚମ୍ପା ପ୍ରତି ତା' ହୃଦୟରେ ଥିବା ସହାନୁଭୂତି ବେଶ୍ ବାରି ହୋଇପଡ଼େ ।

ଜଣେ ପ୍ରେମନିବେଦିତା ଶୁଦ୍ଧ ପ୍ରେମିକାପଣ ତା' ହୃଦୟରେ ଭରି ରହିଥିଲା । ଆଖଣ୍ଡଳମଣିଙ୍କ ନିକଟରେ ଧନଞ୍ଜୟଙ୍କୁ ଦେଖିବାପରେ ତା'ବ୍ୟକ୍ତିତ୍ୱ ପ୍ରତି ଆକୃଷ୍ଟ ହୋଇପଡ଼ିବା ସହିତ ମନ ମଧ୍ୟରେ ଧନଞ୍ଜୟଙ୍କ ପ୍ରତି ପ୍ରେମ ଭାବନାଟି ବଦ୍ଧମୂଳ ହୋଇପଡ଼ିଛି । ନିଜ ମା' ପଦ୍ମାବତୀଙ୍କ ଧନଞ୍ଜୟଙ୍କ ପ୍ରତି ସ୍ନେହ ଓ ଆଦରଭାବରୁ ମା'ର ସ୍ୱୀକୃତି ଜାଣିପାରିବାରୁ ସେହି ଭାବନା ଅଧିକ ଶକ୍ତିଶାଳୀ ହୋଇଉଠିଛି । ଯେଉଁଦିନ ପାଇକରାଙ୍କ ଗାଁରୁ ଭଲଲୋକ ବିବାହ ସମ୍ପର୍କରେ କଥାବାର୍ତ୍ତା କରିବାକୁ ହରିଚନ୍ଦନଙ୍କ ଘରକୁ ଆସିଥିଲେ, ପ୍ରଥମରୁ କନକଲତା ତାହା ଜାଣି ନ ଥିବାରୁ ତା'ମନରେ ସନ୍ଦେହ, ଉତ୍କଣ୍ଠା ଓ ଦୁଃଖ ସମଭାବରେ ତାକୁ ଅଥୟ କରୁଥିଲା । ତା' ମନରେ ଧାରଣାଟିଏ ସୃଷ୍ଟି ହୋଇଥିଲା – "କାହା ସାଙ୍ଗରେ କଥା ପଡ଼ିଛି ? କାହାକୁ ପଚାରିବି ? କିଏ କହିବ ? କେତେ ଜାଗାରୁ ତ ଭଲଲୋକ ଆସୁଛନ୍ତି– କାଳେ ଅନ୍ୟ କେଉଁଠି ଘଟିବ । ମୋର ଦଶା କ'ଣ ହେବ ? ସଂସାର ସଉଦା ଏହିଠାରୁ ସରିବ ସିନା !" ମାତ୍ର ଯେତେବେଳେ ପାଟ ପାଇକରା ଗାଁରୁ ଲୋକମାନେ ଆସୁଥିବାର ସମ୍ବାଦ ଦେଲା, ସେତେବେଳେ କନକ ବିଚାରୀ ଲାଜରେ ସାଙ୍କୁଡ଼ି ଯାଇ କାନ୍ଥ ଆଡ଼କୁ ମୁହଁ କରି ଠିଆହେଲା । କି ଆଶ୍ଚର୍ଯ୍ୟ ! ମନ ଯାହା ଏତେ ଦିନ ଲୋଡୁଥିଲା, ଯାହା ଯୋଗୁଁ ଅନ୍ନଜଳ ରୁଚୁ ନ ଥିଲା, ସେହି ଅଭିପ୍ରେତ ମୁହୂର୍ତ୍ତ ନିକଟତର ହେଲାରୁ ହୃଦୟ ଏପରି ଅସ୍ଥିର ହେଉଛି କାହିଁକି ? ପରିବାରର ସଂସ୍କାର ମଧ୍ୟରେ ଜୀବନ ବିତାଇଥିବାରୁ କନକଲତା ହୃଦୟର ବ୍ୟାକୁଳତା ସତ୍ତ୍ୱେ ନିଜ ଭାବନା ଅନ୍ୟ ନିକଟରେ ପ୍ରକାଶ କରିବାକୁ କୁଣ୍ଠିତା ହୋଇଛି । ପରିବାରର ଆଦର୍ଶକୁ ସେ କେବେ ଜଳାଞ୍ଜଳି ଦେବାକୁ ଚେଷ୍ଟା କରି ନାହିଁ । ପୁଣି ଧନଞ୍ଜୟଙ୍କ ଦ୍ୱାରା ତା'କବିତାର ପ୍ରଶଂସା ଶୁଣି ଲଜ୍ଜାରେ ଜଡ଼ସଡ଼ ହୋଇଯାଇଥିଲା । 'ଅଙ୍କୁରିତ ପ୍ରେମଲତାଟି ସତେ ଯେପରି ସେଦିନ ଫୁଲରେ ଭରିଯାଇଥିଲା । ନିଜ ଆଶା ସ୍ୱପ୍ନର ସୌଧରେ ବିଚରଣ

କରୁଥିବା ସମୟରେ ହଠାତ୍ ପାଇକରା ଘରର ଅନୌଚିତ୍ୟ ଯୌତୁକ ଦାବି ତା' କଅଁଳ ମନରେ ମହାବାତ୍ୟା ସୃଷ୍ଟି କରିଥିଲା । ଏପରି ଏକ ଅପ୍ରତ୍ୟାଶିତ ଘଟଣା ତାକୁ ବିମୂଢ଼ କରିଦେଲା । ବିବାହ ଭାଙ୍ଗିଯିବାର ମାନସିକ ଆଘାତ ତା'ର ସରଳ ହୃଦୟ ଗ୍ରହଣ କରିପାରି ନ ଥିଲା । ''କନକଲତା କୃଷ୍ଣପକ୍ଷର ଶଶିକଳା ପରି ଅନୁଦିନ ମଳିନା ହୋଇଗଲା । ଶିଶିରପାତରେ ମୃଣାଳଲତାପ୍ରାୟ ଦିନକୁ ଦିନ ଝାଉଁଳିଗଲା । ଶେଷରେ ଉତ୍କଟ ଜ୍ୱର ଓ ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ଶଯ୍ୟାଶାୟିନୀ ହେଲା ।'' ବିରହିଣୀ ନାରୀର ସମସ୍ତ ଲକ୍ଷଣରେ ଆକ୍ରାନ୍ତ ହେବାରୁ ଡାକ୍ତର ଅର୍ଜୁନବାବୁଙ୍କ ପରାମର୍ଶକ୍ରମେ ତାକୁ ପୁରୀକୁ ନିଆଯାଇଛି । ପୁରୀ ସମୁଦ୍ର କୂଳରେ ବିରହୀ ବିଷାଦିତ ଧନଞ୍ଜୟଙ୍କ ଅବସ୍ଥା ଓ ଭଗ୍ନ ସ୍ୱାସ୍ଥ୍ୟ ଦେଖି କନକଲତା ଦୁଃଖାଭିଭୂତା ହୋଇପଡ଼ିଛି । ତା'ମନର ପ୍ରତିକ୍ରିୟା ବର୍ଣ୍ଣନା କରି ଔପନ୍ୟାସିକ ଲେଖିଛନ୍ତି ''ରୂପର କି ପରିବର୍ତ୍ତନ ! ଏହାଙ୍କ ମନରେ କି ଏହିପରି ଦୁଃଖକୀଟ ପ୍ରବେଶ କରିଅଛି ! ମୋ ଛାର ପାଇଁ ଏତେ କଷଣ ସହିଲେ !'' ଜଣେ ସମର୍ପିତା ନିଷ୍ଠାବତୀ ପ୍ରଣୟିନୀ ଭାବରେ କନକଲତା ପାଠକର ଶ୍ରଦ୍ଧେୟ ଦୃଷ୍ଟି ଆକର୍ଷଣ କରେ ।

ବିବାହ ପରେ କେବଳ ଜଣେ ସହଧର୍ମିଣୀ ଭାବରେ ନୁହେଁ; ସହକର୍ମିଣୀ ଓ ଉପଯୁକ୍ତ କୁଳବଧୂ ରୂପେ ନିଷ୍ଠାର ସହିତ ନିଜର କର୍ତ୍ତବ୍ୟ ସମ୍ପାଦନ କରିଛି କନକଲତା । ବିବାହ ପରେ ହଠାତ୍ ଧନଞ୍ଜୟଙ୍କ ଚାକିରି ଲାଭ ଏବଂ ଚାକିରିର ପରାଧୀନତା ଭାବି ଇତସ୍ତତଃ ହେଉଥିବା ସମୟରେ ଉଚିତ ସହଧର୍ମିଣୀର ଭୂମିକା ନେଇ ପରାମର୍ଶ ଦେଇ କହିଛି – ''କୌଣସି କାର୍ଯ୍ୟ ବା ଜୀବିକା ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ବା ପୂର୍ଣ୍ଣ ଦୋଷଯୁକ୍ତ ନୁହେଁ । ଓକିଲାତିର ଅସ୍ଥିରତା ପରମୁଖାପେକ୍ଷିତା, ସାକ୍ଷ୍ୟ ପ୍ରସ୍ତୁତ କରିବା ରୂପ ପ୍ରଲୋଭନାଦି ପରି ଚାକିରିର ପରାଧୀନତା, ସ୍ଥାନ ପରିବର୍ତ୍ତନ ପ୍ରଭୃତି ଅସୁବିଧା ଓ ବିବିଧ ପ୍ରଲୋଭନ ମଧ୍ୟ ଅଛି, ସମ୍ପୂର୍ଣ୍ଣ ନିର୍ଦ୍ଦୋଷ କେହି ନୁହେଁ । ପରନ୍ତୁ ଆଇନ୍ ବ୍ୟବସାୟଦ୍ୱାରା ବିପନ୍ନର ସହାୟତା, ସ୍ୱଦେଶର ଉନ୍ନତି, ଏକସ୍ଥାନରେ ରହିବା ସୁବିଧାଜନିତ କାୟମନର ସ୍ଥିରତା ଓ ଶାନ୍ତି ଲୋଭନୀୟ ଅଟେ । ''ଶାଶୂଘରେ ବୋହୂର ଉପଯୁକ୍ତ କର୍ତ୍ତବ୍ୟ ସଂସାଧନ କରିଛି କନକଲତା । ଶାଶୂ ଓ ଶଶୁରଙ୍କ ମଧ୍ୟରେ ରହିଥିବା ମାନସିକ ଦୂରତା ଦୂରକରାଇବାରୁ ସେମାନେ ଆଦର୍ଶ ଦାମ୍ପତ୍ୟ ଓ ପ୍ରେମମୟ ଜୀବନଯାପନ କରିଛନ୍ତି । ଜଣେ ଆଦର୍ଶ, ସମ୍ବେଦନଶୀଳ, ସମମର୍ମୀ ଭାଉଜ ଭାବରେ କନକଲତା ନିଜର କର୍ତ୍ତବ୍ୟ ସମ୍ପାଦନ କରିଛି । ଉମା ତା'ର ସମବୟସୀ । ମାତ୍ର ବିଧବା ହୋଇଥିବାରୁ ସରଳ ପୋଷାକ,

ଅଳଙ୍କାରବର୍ଜିତ ଓ କଠୋର ଜୀବନଚର୍ଯ୍ୟାକୁ ଗ୍ରହଣ କରିନେଇଥିବାରୁ କନକଲତା ନିଜେ ଭଲଭଲ ପୋଷାକ ବା ଅଳଙ୍କାର ପିନ୍ଧେ ନାହିଁ, ଭାଗବତ, ରାମାୟଣ, ମହାଭାରତ ଆଦି ସଦ୍‌ଗ୍ରନ୍ଥ ଦୁହେଁ ପଢ଼ନ୍ତି × × × ଉମା କନକଲତାକୁ ଦେବକନ୍ୟା ରୂପେ ମଣେ ଓ ନିଜର ବିଷାଦମୟ ଜୀବନର ଦୁଃଖଭାର ଲଘୁ କରିବାକୁ ସ୍ୱର୍ଗରୁ ଆସିଥିବା ଦେବଦୂତ ରୂପେ ମନେ ମନେ ପୂଜା କରେ ।'' ଉମାର ଦୁଃଖ ଦୂର ପାଇଁ ରାଜେନ୍ଦ୍ରଙ୍କ ଉମା ପ୍ରତି ପ୍ରେମଭାବ ଜାଣି କନକଲତା ଭାଇର ପ୍ରସ୍ତାବ ସହିତ ଏକମତ ହୋଇ ଆନନ୍ଦ ପ୍ରକାଶ କରିଛି । ମାତ୍ର ଉମାର ଅପ୍ରତ୍ୟାଶିତ ଦୁଃଖଦ ମୃତ୍ୟୁ କନକଲତାକୁ ଗଭୀର ଯନ୍ତ୍ରଣା ଦେବାରୁ ନରକପୁରୀ ସଦୃଶ ସେହି ପାପପୁରୀ ତ୍ୟାଗ କରି ସ୍ୱାମୀ ସହିତ ପୁରୀ ଚାଲିଯାଇଛି । କନକଲତା ସାହଚର୍ଯ୍ୟରେ ଧନଞ୍ଜୟର ଧନ, ମାନ ଓ ଖ୍ୟାତି ବୃଦ୍ଧିପାଇଛି । ସତ୍‌କାର୍ଯ୍ୟରେ ସ୍ୱାମୀଙ୍କ ଅର୍ଥ ବ୍ୟୟ କରି ଉଭୟେ ଆନନ୍ଦ ଲାଭକଲେ । ଆଦର୍ଶ ଗୃହିଣୀ ଓ ମାତା ରୂପେ ଉଭୟ କାର୍ଯ୍ୟକୁ ସମାନ ଗୁରୁତ୍ୱ ଦେଇ ପରିବାରକୁ ଚଳାଇଥିବାରୁ ତା'ର ପୁଅ ଏବଂ ଝିଅ ଯୋଗ୍ୟ ହୋଇ ନିଜର ବାପା-ମା'ଙ୍କ ଯଶ ବୃଦ୍ଧି କରିଛନ୍ତି । ନିଜ ଭାଇଙ୍କ ଅନ୍ତର୍ଦ୍ଧାନ କନକଲତାକୁ ବ୍ୟଥାତୁରା କରିଛି । ଭାଇର ସମାଜ-ସଂସ୍କାର ଭାବନାଦ୍ୱାରା ପ୍ରଭାବିତ ହୋଇ ଜନମଙ୍ଗଳ କାର୍ଯ୍ୟରେ କୁଣ୍ଠାପ୍ରକାଶ କରି ନାହିଁ । ସନ୍ନ୍ୟାସୀ ରାଜେନ୍ଦ୍ରଙ୍କ ପୁରୀ ଆଗମନ ଏବଂ ତାଙ୍କର ଧାର୍ମିକ ଭାବନା ଓ ସମାଜସେବା କନକକୁ ବହୁଭାବରେ ପ୍ରଭାବିତ କରିଛି, ''କନକ ପରିବାର ଭିତରେ ଥାଇ ବନ୍ଧୁବାନ୍ଧବ, ଅତିଥି ଅଭ୍ୟାଗତ, ସ୍ୱାମୀ, ପୁତ୍ର, ଶ୍ୱଶୁର ଶାଶୂ, ଦାସଦାସୀ ପ୍ରଭୃତିଙ୍କ ସେବା କରୁଅଛି'' ଏବଂ ସେବାଧର୍ମରେ ଜୀବନ ଅତିବାହିତ କରି ଜଣେ ଆଦର୍ଶ ଉତ୍କଳୀୟ ନାରୀର ଯଥୋଚିତ ପରିଚୟ ପ୍ରଦାନ କରିଛି । ଉପନ୍ୟାସରେ ପ୍ରଥମରୁ ଶେଷପର୍ଯ୍ୟନ୍ତ କନକଲତା ଏକ ମୁଖ୍ୟ ଭୂମିକା ନିର୍ବାହ କରି ଏକ ଆଦର୍ଶ ଭାରତୀୟ ନାରୀର ସମସ୍ତ ଗୁଣ ପ୍ରକାଶ କରିଥିବାରୁ ଉପନ୍ୟାସର ନାମକରଣ 'କନକଲତା' ହେବା ଯଥାର୍ଥ ମନେ ହୋଇଥାଏ ।

## କନକଲତା ଉପନ୍ୟାସରେ ଲୋକ-ଉପାଦାନ

ନନ୍ଦକିଶୋର ପଲ୍ଲୀକବି ଭାବରେ ସୁଖ୍ୟାତ । ପଲ୍ଲୀର ସୁଖ-ଦୁଃଖ, ହସ-କାନ୍ଦ ଓ ପଲ୍ଲୀଜୀବନର ବହୁବିଧ ଉପାଦାନ ତାଙ୍କ ସୃଷ୍ଟିରେ ଚମତ୍କାର ରୂପ ପ୍ରଦାନ କରିଛନ୍ତି । ପଲ୍ଲୀ ମଣିଷଙ୍କ ମନ ଓ ଭାବନାକୁ ସେ ଯେପରି ବୁଝିଥିଲେ, ତା'ର ତୁଳନା ନାହିଁ । ପଲ୍ଲୀର ଭାବଜଗତ ସହିତ ସେ ଓତପ୍ରୋତ ଭାବରେ ଜଡ଼ିତ ଥିଲେ । ପଲ୍ଲୀ ମଣିଷର ଦୈନନ୍ଦିନ କଥାବାର୍ତ୍ତା, ସେମାନଙ୍କର

ବିଶ୍ୱାସ ଏବଂ ପ୍ରତିଦିନ କଥାବାର୍ତ୍ତାରେ ବ୍ୟବହାର କରୁଥିବା ଢଗ-ଢମାଳି, ପ୍ରବାଦ-ପ୍ରବଚନଗୁଡ଼ିକ ଚମତ୍କାର ଢଙ୍ଗରେ ରୂପାୟଣ କରିଛନ୍ତି ତାଙ୍କ ସୃଷ୍ଟିରେ । ଏହି ଢଗ-ଢମାଳି ଓ ପ୍ରବାଦ-ପ୍ରବଚନଗୁଡ଼ିକ ହେଉଛି ପଲ୍ଲୀବାସୀଙ୍କ ପାଇଁ ଅଲିଖିତ ସମ୍ବିଧାନ । ଉପନ୍ୟାସର କଥାବସ୍ତୁ ଓ ପ୍ରସଙ୍ଗ ସହିତ ଏଗୁଡ଼ିକ ସେ ଏପରି ଭାବରେ ସଂଯୋଜିତ କରିଛନ୍ତି, ଯାହା ଉପନ୍ୟାସର ଭାବବସ୍ତୁ ସହିତ ତାହା ଅଙ୍ଗାଙ୍ଗୀ ଭାବେ ଜଡ଼ିତ ହୋଇଯାଇଛି । ସେଗୁଡ଼ିକ ବାଦ୍ ଦେଇ ଉପନ୍ୟାସ କଥାବସ୍ତୁର ବିକାଶ ଓ ଗତିଶୀଳତାକୁ କଳ୍ପନା କରାଯାଇ ନ ପାରେ । ଉପନ୍ୟାସରେ ବ୍ୟବହୃତ ସେହି ଲୋକୋକ୍ତିଗୁଡ଼ିକ ସମ୍ପର୍କରେ ଏଠାରେ ସୂଚନା ଦିଆଯାଇଛି –

୧. ତୁ ତ ଗୁହାରି କରୁଛୁ ଯାହାକୁ, ମୁଁ ତ କୁଆଇଁ କରିଛି ତାହାକୁ ।
୨. ବାଘ ନ ଦେଖିଲେ ବିରାଡ଼ି ଦେଖ, ଖଣ୍ଡ ନ ଦେଖିଲେ ବଣିଆ ଦେଖ ।
୩. ବ୍ରାହ୍ମଣ ରାଜା ଖଣ୍ଡ ପରଜା, ଡହ ଡହ ଆମ୍ବିଳ ଶୀତଳ ଭଜା–
ସଖି, ଏ ବଡ଼ ମନ୍ଦ ।
୪. ଚାଲିଲା ଶଗଡ଼ରେ ହାତ ଦେବା ।
୫. ତୁଳସୀ ଦୁଇ ପତ୍ରରୁ ବାସେ, ବିଛୁଆତି ଦୁଇ ପତ୍ରରୁ କୁଣ୍ଡେଇ ହୁଏ ।
୬. ଅଦା ବେପାରିର ଜାହାଜ ମୂଲ ।
୭. ଶିଳଶିଳୁପା ତ ଗଗନେ ଉଡୁଛି, ଶିମିଳି ତୂଳା କହୁଛି ମତେ ରଖ ।
୮. ମନ ତତ୍ତ୍ୱ କଲେ ଗଡ଼ିଆ ଗଙ୍ଗା ।
୯. ଗଙ୍ଗା ଯିବୁ ଯେତିକି, ଫଳ ପାଇବୁ ସେତିକି ।
୧୦. ପୋଡ଼ିଗଲା ତିଅଣରେ ସୁଆଦ ଅଛି ?
୧୧. ଜଗନ୍ନାଥଙ୍କର ବଡ଼େଇ, କାହାକୁ ଦିଅନ୍ତି ପାଟ ପୀତାମ୍ବରୀ, କାହାକୁ ଦିଅନ୍ତି ଗଡ଼େଇ ।
୧୨. ଶିରୋନାସ୍ତି ଶିରଃ ପୀଡ଼ା ।
୧୨. ଖାଇଲା ପୁଅ ଝିଅ ରଙ୍କ ।
୧୩. ଜଡ଼ାତେଲ, ମେଣ୍ଢାବାଳ ।
୧୪. ଯା ମନ ଯାହାକୁ ରସେ, ତା'ପରି ତାକୁ ଆନ ନ ଦିଶେ ।
୧୫. ଆଜ ହୁଁ ଏଡ଼େ, ପାଣି ପଡ଼ିଲେ ହବୁ କେଡ଼େ ।
୧୬. କିମ୍ଭୀର ନେଇ ନଈ ମଝିରେ କଲାଣି, ମନ ଘର ଧରି ନାହିଁ ।
୧୭. ଦାଣ୍ଡକୁ ସୁନ୍ଦର ଗୋରୁ, ଘରକୁ ସୁନ୍ଦର ଜୋରୁ ।
୧୮. କନ୍ୟାଦାୟ ମହାଦାୟ ।
୧୯. ମୁଁ କାନ୍ଦୁଥାଏଁ ନାନୀ ପାଇଁ, ନାନୀ ଆଖିରେ ଲୁହ ଟୋପାଏ ନାହିଁ ।

୨୦. ବନ ପୋଡ଼ିଗଲେ ସମସ୍ତେ ଜାଣନ୍ତି, ମନ ପୋଡ଼ିଗଲେ କେହି ନ ଜାଣେ ।
୨୧. ନଈକେ ବାଙ୍କ୍ ଦେଶକେ ଫାଙ୍କ୍ ।
୨୨. ଝିଅକୁ ମାରି ବୋହୂକୁ ଶିଖାଇବା ।
୨୩. ଶ୍ରେୟାଂସି ବହୁ ବିଘ୍ନାନି ।
୨୪. ଦୁଃଖେ ଅର୍ଜିତ ଯେତେ ଧନ, ସେ ନୋହେ ସୁଖେ ପ୍ରୟୋଜନ ।
୨୫. ପୁତ୍ର ନିବେଶି ପତ୍ନୀ ପାଶେ, ଅଥବା ଚଳିବ ସନ୍ନ୍ୟାସେ ।
୨୬. ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଟାଣଇ ତେଣିକି ଯାଇ ।
୨୭. ଉଷୁନା ଧାନ ଗଜା ହେଲା ।
୨୮. ଦୁହିତା ଦୁଇ କୁଳକୁ ହିତା ଅବା ପିତା ।
୨୮. ଯଦ୍ୟପି ଶୁଦ୍ଧଂ ଲୋକବିରୁଦ୍ଧଂ ନାଦରଣୀୟଂ ନାଚରଣୀୟଂ ।

ଏହିପରି ବହୁ ଲୋକୋକ୍ତି 'କନକଲତା' ଉପନ୍ୟାସରେ ଲକ୍ଷ୍ୟ କରାଯାଇଥାଏ ।

ଉତ୍କଳୀୟ ଭାରତୀୟ ପରମ୍ପରାରେ ଜ୍ୟେଷ୍ଠମାନଙ୍କୁ ପ୍ରଣାମ କରିବା ଏବଂ ଜ୍ୟେଷ୍ଠମାନେ କନିଷ୍ଠମାନଙ୍କୁ ଆଶୀର୍ବାଦ ଦେବା ଏହାର ମହତ୍ତ୍ୱ ପ୍ରଦାନ କରିଥାଏ । ଆଖଣ୍ଡଳମଣି ପୀଠରେ ଧନଞ୍ଜୟ ପଦ୍ମାବତୀଙ୍କୁ ପ୍ରଣାମ କଲେ, ସେତେବେଳେ ପଦ୍ମାବତୀ ବାତ୍ସଲ୍ୟ ଭାବରେ ତନ୍ମୟ ହୋଇ ପଣତ କାନିରେ ମୁହଁ ପୋଛି ଦେଇ ଆଶୀର୍ବାଦ ଦେଇ କହିଲେ–''ବାପା ! ବୁଢ଼ାଟିଏ ହୋଇଥା, ପାଲିଙ୍କି ପାଟଛତା ହେଉ; ପୁଅଝିଅ, ନାତିନାତୁଣୀ ଧନଜନ ଗୋପଲକ୍ଷ୍ମୀ ମାଡ଼ିଯାଆନ୍ତୁ ।'' ସେହିପରି ଗ୍ରାମମାନଙ୍କରେ ଯୋଗୀମାନେ ବୁଲି ବୁଲି କେନ୍ଦରାରେ ଗୀତ ଗାଇ ନିଜର ଗୁଜୁରାଣ ମେଣ୍ଟାଇଥାନ୍ତି । ଲୋକମାନେ ତାଙ୍କ ଗୀତ ଶୁଣି ନିଜର ସଙ୍ଗୀତ ପିପାସା ମେଣ୍ଟାଇଥାନ୍ତି । ପ୍ରଥମ ପରିଚ୍ଛେଦରେ ଜଣେ ଯୋଗୀ ଦାଣ୍ଡରେ କେନ୍ଦରା ବଜାଇ ଗୋବିନ୍ଦ ଚନ୍ଦ୍ର ଗୀତ ଗାଇଛି । ଏହି ଗୀତଟି ଓଡ଼ିଶାରେ ଏକ ସୁପରିଚିତ ଲୋକପ୍ରିୟ ଗୀତ । ଏହି ଗୀତର ସ୍ୱର କରୁଣ, ମଧୁର । ରାଜପୁତ୍ରକୁ ନିଜ ମାତା ଯୋଗୀ ହୋଇଯିବାକୁ ପରାମର୍ଶ ଦେଇଛନ୍ତି । ଯେଉଁ ରାଜେନ୍ଦ୍ର ସଦାବେଳେ ସମାଜ ସଂସ୍କାର କଥା କହିଥାନ୍ତି, ଅନ୍ଧବିଶ୍ୱାସକୁ ବିଶ୍ୱାସ କରନ୍ତି ନାହିଁ, ଯୋଗୀମାନଙ୍କୁ ଅଳସୁଆ ଓ ଲାଗି ନ ଖାଇ ମାଗି ଖାଇବାର ପ୍ରୟାସୀ ବୋଲି କୁହନ୍ତି, ଭାରତର ଦାରିଦ୍ର୍ୟର କାରଣ ରୂପେ ସେମାନଙ୍କୁ ନିର୍ଦ୍ଦେଶିତ କରିଥାନ୍ତି; ଅଥଚ ସେ ଉତ୍କର୍ଣ୍ଣ ହୋଇ ଯୋଗୀର ଗୀତ ଶୁଣି ମୁଷ୍ଟି ଭିକ୍ଷା ସହିତ କିଛି ତାମ୍ରମୁଦ୍ରା ପ୍ରଦାନ କରିଛନ୍ତି । ଗ୍ରାମର ଏହି ଚିତ୍ରଟି ଉପନ୍ୟାସରେ ସୁନ୍ଦର ଭାବରେ ବର୍ଣ୍ଣନା କରାଯାଇଛି ।

ଫକୀରମୋହନ ଛ'ମାଣ ଆଠଗୁଣ୍ଠ ଉପନ୍ୟାସରେ ଗ୍ରାମ୍ୟ ମହିଳାମାନଙ୍କର ପୋଖରୀ କୂଳରେ ସମବେତ ହୋଇ ପରଘର ବିଷୟରେ ଚର୍ଚ୍ଚା କରିଛନ୍ତି, ନନ୍ଦକିଶୋର ମଧ୍ଯ ପ୍ରଥମ ପରିଚ୍ଛେଦରେ ଗୋଟିଏ ଶୀତକାଳର ପ୍ରଭାତରେ ବାଡ଼ିଆଡ଼େ ସ୍ତ୍ରୀମାନଙ୍କ ସଭା କଥା ଉଲ୍ଲେଖ କରିଛନ୍ତି । ସେଠି ଉପସ୍ଥିତ ଅଛନ୍ତି ଚାକରାଣୀ ପାଟ, ହରିଚନ୍ଦନଙ୍କ ଦିନିବୋହୂ, ଧାନକୁଟୁଣୀ ଚମ୍ପି ଇତ୍ୟାଦି । ସେମାନେ ପରଘର କଥା ଓ ବିଭିନ୍ନ କାଳ୍ପନିକ କାହାଣୀ ସମ୍ପର୍କରେ ଆଲୋଚନା କରିଛନ୍ତି, ଚମ୍ପି ଓ ପାଟ କଳି କରିଛନ୍ତି. ହରିଚନ୍ଦନଙ୍କ ବୋହୂମାନେ ତାହାକୁ ଆନନ୍ଦ ମନରେ ଉପଭୋଗ କରିଛନ୍ତି । ଗୋଟିଏ ଗ୍ରାମୀଣ ଜୀବନର ଚିତ୍ର ମାଧ୍ୟମରେ ସେହି ଲୌକିକ ଉପାଦାନଗୁଡ଼ିକୁ ଔପନ୍ୟାସିକ ତାଙ୍କ ଉପନ୍ୟାସରେ ରୂପପ୍ରଦାନ କରିଛନ୍ତି ।

## କନକଲତା ଉପନ୍ୟାସରେ ତତ୍‌କାଳୀନ ସମାଜ

କନକଲତା ଉପନ୍ୟାସରେ ଔପନ୍ୟାସିକ ନନ୍ଦକିଶୋର ବଳ ସମକାଳୀନ ସମାଜର କେତୋଟି ଚିତ୍ର ପ୍ରଦାନ କରାଯାଇଛି । ପ୍ରଥମତଃ, ବିଧବା ବିବାହ, ସମ୍ପର୍କରେ ଏଥିରେ କେତୋଟି ସମସ୍ୟାର ଉଲ୍ଲେଖ ରହିଛି । ଉପନ୍ୟାସର କଥାବସ୍ତୁ ମଧ୍ୟରେ ଆସିଛନ୍ତି ଚମ୍ପା, ତୁଳସୀଦେଈ, ଉମା ଆଦି କେତେଜଣ ବିଧବା; ଯେଉଁମାନେ ହୁଏତ ବିବାହ ବୟସ ପୂର୍ବରୁ ବିଧବା ହୋଇ ସାମାଜିକ ବିଧି-ନିର୍ଦ୍ଦେଶକୁ ମାନି ନେଇଛନ୍ତି । ଉମା ପରି ତରୁଣୀ ସ୍ୱପ୍ନ ଦେଖିବାକୁ ଯିବାବେଳେ ତା'ସ୍ୱପ୍ନକୁ ଭାଙ୍ଗି ଦିଆଯାଇଛି । ଭାରତବର୍ଷରେ ବିଧବା ବିବାହ ପାଇଁ ରାଜା ରାମମୋହନ ରାୟ ଓ ପରବର୍ତ୍ତୀ ସମୟରେ କେଶବ ଚନ୍ଦ୍ର ସେନ୍‌ଙ୍କ ପର୍ଯ୍ୟନ୍ତ ବ୍ରାହ୍ମସମାଜ ମାଧ୍ୟମରେ ଏହି ସାମାଜିକ କୁସଂସ୍କାର ଦୂର ପାଇଁ ପ୍ରୟାସ କରିଛନ୍ତି ଏବଂ ଏଥିପାଇଁ ଆଇନ ପ୍ରଣୟନ କରାଯାଇଛି । ଏହା ସତ୍ତ୍ୱେ ଦୀର୍ଘକାଳ ପର୍ଯ୍ୟନ୍ତ ଏହା ସାକାର ହୋଇପାରି ନାହିଁ । ଯେଉଁଥିପାଇଁ ଓଡ଼ିଶାରେ ତୁଳସୀଦେଈ ବିଧବାର ଯନ୍ତ୍ରଣା ନିଜେ ଅନୁଭବ କରିଥିଲେ ହେଁ ଉମାର ପୁନର୍ବିବାହକୁ ଗ୍ରହଣ କରିପାରି ନାହାନ୍ତି । ତେଣୁ ରାଜେନ୍ଦ୍ର ସହିତ ଉମାର ସମ୍ପର୍କର ନିବିଡ଼ତା ଲକ୍ଷ୍ୟକରି ସେ ବିବ୍ରତ ହୋଇଛନ୍ତି ଏବଂ ସମ୍ପର୍କ ଅଧିକ ସୁଦୃଢ଼ ହେବା ପୂର୍ବରୁ ତା'ର ମୃତ୍ୟୁ ସଂଘଟନ କରାଯାଇଛି । ଆମ ସାମାଜିକ ପରମ୍ପରାରେ ଏହି ବିଧବା କୌଣସି ଶୁଭ ସାମାଜିକ କାର୍ଯ୍ୟରେ ଯୋଗ ଦେଇପାରନ୍ତି ନାହିଁ । ତେଣୁ କନକଲତା ଚମ୍ପାକୁ ଠାକୁରଙ୍କ ନିକଟକୁ ଯିବାକୁ ଡାକିଥିଲେ ହେଁ ଚମ୍ପା କହିଛି, ''ମୋର ଆଉ ପୋଡ଼ିଗଲା ତିଅଣରେ ସୁଆଦ ଅଛି ? ମୁଁ ଆଉ ଶାଢ଼ି ପିନ୍ଧିବି ? ତମର ଆଜି ଶୁଭଦିନଟିଏ, ତମେ ସବୁ ଯାଅ ।'' ସମାଜରେ ବିଧବା ନାରୀମାନେ କେବଳ ଅବହେଳିତ ନୁହନ୍ତି; ଅନ୍ୟମାନେ ତାଙ୍କୁ ଦେଖେଇ ଶିଖେଇ ବିଭିନ୍ନ କଥା

କହିଥାନ୍ତି । ପାଟ କଥାରେ ଦୁଃଖିତା ଚମ୍ପା ତେଣୁ କହିଛି, ''ବିଧାତା ମତେ ନିରିମାଖି କଲା ବୋଲି ପୋଇଲୀ ପରିବାରୀ ବି ଖୁଣ୍ଟିବେ ?'' ବିଧବା ଉମାର କାଳେ ଗୋଡ଼ ଖସିଯିବ, ସେଇଥିପାଇଁ ତୁଳସୀଦେଈ ତାକୁ ବାରମ୍ବାର ଆକଟ କରିଛନ୍ତି । ବାସ୍ତବରେ ଏହା ଥିଲା ତତ୍‌କାଳୀନ ସମାଜର ମାନସିକତା । ଉମା ଏବଂ ରାଜେନ୍ଦ୍ର ପରସ୍ପର ପ୍ରତି ଖୁବ୍ ଆକୃଷ୍ଟ ହେବା ସତ୍ତ୍ୱେ ସେମାନଙ୍କର ବିବାହ ସମ୍ଭବ ହୋଇପାରି ନାହିଁ । ଉମାର ହୋଇଛି ଅଚାନକ ମୃତ୍ୟୁ । ସେହି ଆଘାତ ରାଜେନ୍ଦ୍ରକୁ କରିଛି ଗୃହତ୍ୟାଗୀ ଓ ପରବର୍ତ୍ତୀକାଳରେ ଧର୍ମପ୍ରଚାର ଏବଂ ସାମାଜିକ କର୍ମରେ ସେ ନିଜକୁ ସମ୍ପୂର୍ଣ୍ଣ ଭାବରେ ନିୟୋଜିତ କରିଛନ୍ତି । ଏକଦା ଉମାର ଭାଇ ଧନଞ୍ଜୟଙ୍କୁ ବିବାହ ପ୍ରସ୍ତାବ ଦେବା ସମୟରେ ସେ କହିଥିଲେ– ''ଚିରଜୀବନ ମୁଁ ମୋର ହୃଦୟରେ ଏହି ଆଶା ପୋଷିଛି ଯେ, ଦେଶର ଅନ୍ଧ ଆଚାରରେ ପ୍ରପୀଡ଼ିତା ନରନାରୀମାନଙ୍କର କିଛି ହେଲେ ଉପକାର କରିଛି × × × ନିଜେ ସ୍ୱାର୍ଥ ତ୍ୟାଗକରି ଦୃଷ୍ଟାନ୍ତ ଦେଖାଇବାହିଁ ସୁପନ୍ଥା × × ମୁଁ ଆଜିଯାଏ ନାନା ପୁସ୍ତକ ପାଠକରି, ସଭାସମିତିରେ ଯୋଗଦେଇ, ସାଧୁସଜ୍ଜନ ସଙ୍ଗ କରି ନିଜ ଅନ୍ତରରେ ସ୍ପଷ୍ଟ ଅନୁଭବ କରୁଅଛି ଯେ, ଏ କନ୍ୟାଟି ବାଳବିଧବା ହୋଇଥିବା ଯୋଗୁଁ ଅପବିତ୍ରା ବା ଅସ୍ପୃଶ୍ୟା ହୋଇ ନାହିଁ ।'' ଅବଶ୍ୟ ରାଜେନ୍ଦ୍ର ନିଜେ ବାଲ୍ୟବିଧବା ଉମାକୁ ବିବାହ କରିପାରି ନ ଥିଲେ ହେଁ, ବାଲ୍ୟବିଧବା ପ୍ରତି ତାଙ୍କର ରହିଥିବା ସକାରାତ୍ମକ ମନୋବୃତ୍ତି ବେଶ୍ ସ୍ପଷ୍ଟ । ତେବେ ଉପନ୍ୟାସର ଶେଷବେଳକୁ ଧନଞ୍ଜୟ ଓ କନ୍ୟା ରତ୍ନମଞ୍ଜରୀଙ୍କ ପରିବାରର ଉଦ୍‌ଯୋଗରେ ଗୋଟିଏ ବାଲ୍ୟବିଧବା ବ୍ରାହ୍ମଣ ବାଳିକାର ବିବାହ ସମ୍ଭବ ହୋଇପାରିଛି ।

ଉତ୍କଳୀୟ ସାମାଜିକ ଜୀବନରେ ବିବାହର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି । ବିବାହ ପୂର୍ବରୁ ଜାତକ ମିଳନ, ନିର୍ବନ୍ଧ, ଯୌତୁକ ଆଦି ସମ୍ପର୍କରେ ଉଭୟ ପକ୍ଷ ଆଲୋଚନା କରିଥାନ୍ତି । ଧନଞ୍ଜୟ ଓ ଉମାକୁ ଦେଖି ଉଭୟଙ୍କ ମାତା ପରସ୍ପରକୁ ପସନ୍ଦ କରିଛନ୍ତି । ଜଣେ ମଧ୍ୟସ୍ଥଙ୍କ ମାଧ୍ୟମରେ ବିବାହ ପ୍ରସଙ୍ଗ ଆଲୋଚିତ ହୋଇ ସ୍ଥିର ହୋଇଥାଏ । ଉପନ୍ୟାସରେ ତ୍ରିପାଠୀଏ ହରିଚନ୍ଦନଙ୍କୁ କହିଛନ୍ତି–''ନିଅନ୍ତୁ ଝିଅର ଜାତକ । ମୋତିଝରି ପାଇକରାଙ୍କ ପୁଅ ବିଷୟରେ ଯାଇଥିଲି । ଜାତକ ପଡ଼ିଛି । ସାବିତ୍ରୀ ସତ୍ୟବାନଙ୍କ ପରି ଯୋଗ ।'' ଜାତକ ମେଳ ପରେ ପାଇକରାଙ୍କ ଗାଁରୁ ଭଲଲୋକ ଆସିଛନ୍ତି କଥାବାର୍ତ୍ତା କରିବାକୁ । କଥାବାର୍ତ୍ତା ସମୟରେ ଯୌତୁକ ସମ୍ପର୍କରେ ଆଲୋଚନା ହୋଇଛି । ଅଳଙ୍କାର, ବାସନ, ଧେନୁ, ଭୂମି ଇତ୍ୟାଦି ବିଷୟରେ ଜବାବ ହୋଇଗଲା । ତେବେ ପାଇକରାଙ୍କ ଭାଇ ପୁରଞ୍ଜୟ ଆଖଣ୍ଡଳମଣିଙ୍କ ବିଜେଆସ୍ଥାନରୁ ଚାରିପଣ ଯୌତୁକ ଦାବି କରିବାରୁ ପ୍ରସ୍ତାବ ଭାଙ୍ଗିଯାଇଥିଲା । ପରେ ରାଜେନ୍ଦ୍ର ନିଜ ଭାଗ ଦେବାକୁ ସମ୍ମତ ହେବାରୁ ବିବାହକାର୍ଯ୍ୟ ସମାପନ ହୋଇଥିଲା ।

ଆମ ସମାଜରେ ମୃତକ୍ରିୟା ହେଲେ ଶୁଭକାର୍ଯ୍ୟ ବନ୍ଦ ରହେ । ପାଇକରାଙ୍କ ମାତାଙ୍କର ପରଲୋକପ୍ରାପ୍ତି ହେବାରୁ ବିବାହ ଶୁଭକର୍ମାନୁଷ୍ଠାନକୁ ଏକ ବର୍ଷ ପର୍ଯ୍ୟନ୍ତ ସ୍ଥଗିତ ରଖାଯାଇଛି । ଗ୍ରାମରେ କୌଣସି ବିଷୟରେ ମତାନ୍ତର ବା ମନାନ୍ତର ହେଲେ ସମାଧାନ ନିମିତ୍ତ ଲୋକମାନେ ମାଲି-ମକଦ୍ଦମା କରୁଥିଲେ । ଆଖଣ୍ଡଳମଣିଙ୍କ ବିଜେଆସ୍ଥାନକୁ ନେଇ ପାଇକରା ଓ ହରିଚନ୍ଦନ ପରିବାର ମଧ୍ୟରେ ମାଲିମକଦ୍ଦମା ହୋଇ ପ୍ରିଭିକାଉନ୍‌ସିଲ ପର୍ଯ୍ୟନ୍ତ ଯାଇ ମୀମାଂସା ହେବା ଘଟଣାରୁ ବିଚାରାଳୟ ବ୍ୟବସ୍ଥାର ଗୁରୁତ୍ୱ ସମ୍ପର୍କରେ ଜଣାଯାଇଥାଏ । ପୁଣି ଓକିଲ ଓ ପିଆଦାମାନେ ସତମିଛ କହି କିପରି ମହକିଲମାନଙ୍କୁ ଠକାନ୍ତି, କଳାକୁ ଧଳା କରି ଟଙ୍କା ଆଦାୟ କରନ୍ତି, ତାହା ସମ୍ପର୍କରେ ଏଥିରେ ଘନଶ୍ୟାମଙ୍କ ଚରିତ୍ରରୁ ଜଣାଯାଇଥାଏ ।

କେତେକ ଇଂରାଜୀ ଶିକ୍ଷିତ ପାଶ୍ଚାତ୍ୟ ଶିକ୍ଷାକୁ ଯେପରି ଗୁରୁତ୍ୱ ଦେଉଥିଲେ, ସେହିପରି ନିଜ ଭାଷା ଓ ସଂସ୍କୃତି ପ୍ରତି ସମ୍ମାନ ପ୍ରଦର୍ଶନ କରୁଥିଲେ । ଧନଞ୍ଜୟ ଥିଲେ ସେହିପରି ଜଣେ ଉଚ୍ଚଶିକ୍ଷିତ, ଯିଏ ନିଜ ଭାଷା ଓ ସଂସ୍କୃତିକୁ ଭଲ ପାଉଥିଲେ । ସେହିପରି କିଛି ଶିକ୍ଷିତ ଯେଉଁମାନେ ଓଡ଼ିଆଭାବେ ପରିଚୟ ଦେବାକୁ କୁଣ୍ଠାପ୍ରକାଶ କରୁଥିଲେ । ଏହି ଦୁଇଶ୍ରେଣୀୟ ବ୍ୟକ୍ତିଙ୍କ ସୂଚନା ଦେବାକୁ ଯାଇ ଔପନ୍ୟାସିକ ଲେଖିଛନ୍ତି – ‘‘ଏପରି ଅନେକ ବ୍ୟକ୍ତି ଅଛନ୍ତି, ସେମାନେ ଉତ୍କଳୀୟ ନାମରେ ପରିଚୟ ଦେବାକୁ କୁଣ୍ଠିତ । ଅନ୍ୟ ଭାଷା କହି, ଅନ୍ୟ ଜାତିର ବାହୁଚ୍ଛାୟା ତଳେ ଆଶ୍ରୟ ନେଇଅଛନ୍ତି । ସେମାନଙ୍କର ଦୋଷ ଅଛି – ଅବସ୍ଥା ମଧ୍ୟ ସେହିପରି । ବର୍ତ୍ତମାନ ଏ ବିଷୟରେ କିଛି ପରିବର୍ତ୍ତନ ଦେଖାଗଲାଣି । ଓଡ଼ିଆ ନାମରେ ଗୌରବ ଅନୁଭବ କରିବା ଶିକ୍ଷିତ ବ୍ୟକ୍ତିଙ୍କ ସଂଖ୍ୟା ବୃଦ୍ଧି ପାଉଅଛି । କିନ୍ତୁ ଅକାଳକୁଷ୍ମାଣ୍ଡର ମଧ୍ୟ ଏକାନ୍ତ ଅଭାବ ନାହିଁ । ଯାହାହେଉ, ଆମ୍ଭମାନଙ୍କର ଏହି ଧନଞ୍ଜୟ ପାଇକରାୟ ସେପରି ନୁହନ୍ତି ।’’

ଆମ ସମାଜରେ ଦିଅର ଭାଉଜଙ୍କର ସମ୍ପର୍କ, ନଣନ୍ଦ ଭାଉଜଙ୍କ ସମ୍ବନ୍ଧ ଅତ୍ୟନ୍ତ ମଧୁର । ଏହାହିଁ ଉତ୍କଳୀୟ ସଂସ୍କୃତିର ଏକ ମହନୀୟ ଦିଗ । ରାଜେନ୍ଦ୍ରଙ୍କ ସହିତ ଭାଉଜ ସାବିତ୍ରୀଙ୍କ ଥଟ୍ଟାମଜା, କନକଲତା ସହିତ ଉମାର ମନଖୋଲା କଥା ଓ ପରିହାସ ଏବଂ ଦମୟନ୍ତୀ ତଥା ସାବିତ୍ରୀଙ୍କ ଧନଞ୍ଜୟଙ୍କୁ ନେଇ ଲଘୁ-ପରିହାସ ଆମ ପାରିବାରିକ ଜୀବନର ମଧୁରତା ଏବଂ ସମ୍ପର୍କର ନିବିଡ଼ତାକୁ ପ୍ରମାଣିତ କରିଥାଏ । ସେହିପରି ସାଆନ୍ତମା’ମଧ୍ୟ ନୀତି-ନାତୁଣୀଙ୍କୁ ପରିହାସ କରିଥାନ୍ତି । ପାଇକରା ଗାଁରୁ ଲୋକ ଆସିଥିବା କଥା କହି ସାଆନ୍ତମା’ ମଧ୍ୟ ନାତୁଣୀ କନକଲତାକୁ ଥଟ୍ଟା କରିଛନ୍ତି । ଏହା ଆମ ସାମାଜିକ ଓ ସାଂସ୍କୃତିକ ଜୀବନର ଏକ ମହନୀୟ ଦିଗ ବୋଲି ଗ୍ରହଣ କରିବାକୁ ହେବ ।

'କନକଲତା' ଉପନ୍ୟାସରେ ଲୋକବିଶ୍ୱାସର ବିଭିନ୍ନ ଦିଗ ପ୍ରତିଫଳିତ ହୋଇଥିବାର ଲକ୍ଷ୍ୟ କରାଯାଇପାରେ । ଉଦାହରଣସ୍ୱରୂପ, ଆମର ଲୋକବିଶ୍ୱାସ ରହିଛି ଯେ କୌଣସି ଦେବତା ବା ଦେବୀଙ୍କ ଦର୍ଶନ ଉଦ୍ଦେଶ୍ୟରେ ଯିବାବେଳେ ପାଦରେ ଚାଲି ଚାଲି ଯିବା ଉଚିତ । ହରିଚନ୍ଦନଙ୍କ ପରିବାର କନକର ଜନ୍ମଦିନରେ ଆଖିଣ୍ଡଳମଣି ଦର୍ଶନ କରିବାକୁ ଯିବା ସମୟରେ କେଉଁ ଯାନବାହନରେ ଯିବେ, ସେ ସମ୍ପର୍କରେ ବିଭିନ୍ନ ପ୍ରସ୍ତାବର ଆଲୋଚନା ସମୟରେ ମିଶ୍ରେ କହିଛନ୍ତି– "ମହାଦେବଙ୍କ ଦର୍ଶନକୁ ଯାନବାହନ ଚଢ଼ି ଗଲେ ସେ ନିଜେ ଅସନ୍ତୁଷ୍ଟ ହୋଇ ଅନିଷ୍ଟ କରିପାରନ୍ତି । ଏହି ହେତୁରୁ ପୂର୍ବେ ସଙ୍ଗତିସମ୍ପନ୍ନ ଲୋକେ ମଧ୍ୟ ଜଗନ୍ନାଥ ଦର୍ଶନକୁ ଚାଲି ଚାଲି ଯାଉଥିଲେ । ଅତି ଭକ୍ତମାନେ 'ଦଣ୍ଡବତୀ' ଉର୍ଦ୍ଧ୍ୱବାହୁ ହୋଇ ଯାଉଥିଲେ । ଏବେ ରେଳ ହୋଇ ସବୁ ମାରାଗଲା । ସାଧନା ଯେପରି ସିଦ୍ଧି ବି ସେହିପରି ।" ଲୋକବିଶ୍ୱାସ ଅନୁଯାୟୀ କୌଣସି ଗୃହରେ କେହି ମୃତ୍ୟୁବରଣ କଲେ ଗୋଟିଏ ବର୍ଷ ପାଇଁ ସେହି ଗୃହରେ କୌଣସି ଶୁଭ କାର୍ଯ୍ୟ ହେବା ଅନୁଚିତ । ସେଥିପାଇଁ ପାଇକରାଙ୍କ ମାତାଙ୍କ ମୃତ୍ୟୁଯୋଗୁଁ ଧନଞ୍ଜୟ ଓ କନକଲତାର ବିବାହ ଗୋଟିଏ ବର୍ଷ ସ୍ଥଗିତ ରଖାଯାଇଛି । ସେହିପରି ବିଧବାମାନେ କୌଣସି ଶୁଭକାର୍ଯ୍ୟରେ ଯୋଗଦେଲେ ସେହି କାର୍ଯ୍ୟରେ ବିଘ୍ନ ଆସିଥାଏ ବୋଲି ଲୋକବିଶ୍ୱାସ ଥିବାରୁ ଚମ୍ପାକୁ କନକଲତା କହିବା ସତ୍ତ୍ୱେ, ସେ ଠାକୁର ପାଖକୁ ଯିବାକୁ ମନା କରିଛି । ଲୋକବିଶ୍ୱାସ ଅନୁଯାୟୀ କୌଣସି ଶୁଭକାର୍ଯ୍ୟରେ ଯିବାବେଳେ ନେଉଳ ଦେଖିଲେ, କାର୍ଯ୍ୟଟି ସଫଳ ହୋଇଥାଏ । ଉପନ୍ୟାସରେ ପାଟ କହିଛି– "ନେଉଳ ମୁହଁ ଚାହିଁଲେ ଯଶ ହୁଏ । ଯେଉଁ କାମକୁ ଯାଉଥିବ ସେ କାମ ହାସଲ ହେବ ।"

ଆମର ସାମାଜିକ ଜୀବନରେ ଲୋକକଳାର ଯଥେଷ୍ଟ ଲୋକପ୍ରିୟତା ରହିଛି । ସେଥିପାଇଁ ଅଭିଜାତ ବା ଉଚ୍ଚମଧ୍ୟବିତ୍ତ ବର୍ଗର ଲୋକମାନେ ତାଙ୍କ ଗୃହ କାନ୍ଥରେ ରାମାୟଣ ଏବଂ ମହାଭାରତର ବିଭିନ୍ନ ଉପାଖ୍ୟାନକୁ ଅଙ୍କନ କରିଥାନ୍ତି । କନକଲତା ଉପନ୍ୟାସରେ ଏହାର ସୂଚନା ଦେଖିବାକୁ ମିଳିଥାଏ । ଏହି ଲୋକ ଚିତ୍ରକଳା ହରିଚନ୍ଦନଙ୍କ ମେଲାଘର (ଯାହାକୁ ବର୍ତ୍ତମାନ ଡ୍ରଇଁରୁମ୍ କୁହାଯାଉଛି)ର ଶୋଭାବର୍ଦ୍ଧନ କରୁଥିଲା । ଔପନ୍ୟାସିକ ଏ ସମ୍ପର୍କରେ ବର୍ଣ୍ଣନା ଦେଇ ଲେଖିଛନ୍ତି– "ଯେଉଁ ଦାଣ୍ଡ ମେଲାଘର କଥା ଲେଖାହେଲା, ସେହି ଘର କାନ୍ଥରେ ଶିବଧନୁ ଭଙ୍ଗ, ପର୍ଶୁରାମ ବିଜୟ, ରାମାଭିଷେକ, ଅଶ୍ୱମେଧ ଯଜ୍ଞ, ରାମବନବାସ ଦୃଶ୍ୟ, କବନ୍ଧ ଦୈତ୍ୟ, ବିରାଧ ବଧ, ରାମରାବଣ ଯୁଦ୍ଧ, ହରପାର୍ବତୀ, ସୁଭଦ୍ରାର୍ଜ୍ଜୁନ, ରୁକ୍ମିଣୀହରଣ, ଅଭିମନ୍ୟୁ ବଧ, ଭୀଷ୍ମଙ୍କ ଶରଶଯ୍ୟା, ଦୁର୍ଯ୍ୟୋଧନର ଘୋଷଯାତ୍ରା, ରାଜସୂୟ ଯଜ୍ଞ, ବ୍ୟାସଙ୍କ ବଦରିକାଶ୍ରମ, ପ୍ରଭାସମିଳନ, ଲକ୍ଷ୍ମଣଙ୍କ ଶକ୍ତିଶେଳ,

ଅଶୋକବନେ ସୀତା, ସମୁଦ୍ରମନ୍ଥନ, ଅନନ୍ତଶୟନ, ଲକ୍ଷ୍ମୀ, ସରସ୍ୱତୀ, ଗଣେଶ, କାର୍ତ୍ତିକେୟ ଦଶାବତାର ପ୍ରଭୃତି ନାନାପ୍ରକାର ପୌରାଣିକ ମୂର୍ତ୍ତି ଚିତ୍ରିତ ହୋଇଅଛି । ଏହାଛଡ଼ା ଅନ୍ତର୍ଲିପି, ବହିର୍ଲିପି, ଗୋମୂତ୍ରଛନ୍ଦ, ରଥବନ୍ଧ, ନାଗବନ୍ଧ, ପଦ୍ମବନ୍ଧ ପ୍ରଭୃତି ବିବିଧ ଚିତ୍ରବନ୍ଧ ଦର୍ଶକର ନୟନ ମନ ହରଣ କରୁଅଛି ଏବଂ ଏହି ଉତ୍କଳୀୟ ଖାନ୍‌ଦାନ୍ ଘରର ଶିଳ୍ପକଳାଭିରୁଚି ଓ ପ୍ରାଚୀନ ସାହିତ୍ୟ ଚର୍ଚ୍ଚାର ପରିଚୟ ପ୍ରଦାନ କରୁଅଛି । ଦୁଃଖର କଥା, ଏହି ପ୍ରାଚୀନ ରୁଚି ଅଧୁନା କ୍ରମଶଃ ବିଲୟପ୍ରାପ୍ତ ହେଉଅଛି ।'' ଏହି ପ୍ରାଚୀନ ଚିତ୍ରକଳା ପରିବର୍ତ୍ତେ ଆଧୁନିକ ଶିକ୍ଷିତ ବ୍ୟକ୍ତିମାନେ ନିଜ ବୈଠକଖାନାରେ ଆଧୁନିକ ନାନା ଚିତ୍ରକୁ ସ୍ଥାନ ଦେଉଛନ୍ତି ବୋଲି ଔପନ୍ୟାସିକ ସୂଚନା ଦେଇଛନ୍ତି ।

ଉତ୍କଳୀୟ ଆଭୂଷଣ କଳା (ବିଭିନ୍ନ ଅଳଙ୍କାର ଓ ପୋଷାକ-ପରିଚ୍ଛଦ) ଦ୍ୱାରା ଉତ୍କଳୀୟ ରମଣୀମାନେ କିପରି ପରିଶୋଭିତ ହୋଇ ନିଜର ସୌନ୍ଦର୍ଯ୍ୟ ବୃଦ୍ଧି କରୁଥିଲେ, ସେ ସମ୍ବନ୍ଧରେ ମଧ୍ୟ ଉପନ୍ୟାସରେ ବର୍ଣ୍ଣନା ରହିଛି । କୌଣସି ଶୁଭକାର୍ଯ୍ୟ, ଦେବଦର୍ଶନ ବା ପୂଜାପାର୍ବଣ ଅଥବା ବନ୍ଧୁବାନ୍ଧବଙ୍କ ଘରକୁ ଯିବା ସମୟରେ ରମଣୀମାନେ ବିଭିନ୍ନ ପ୍ରକାର ଅଳଙ୍କାର ଓ ଶାଢ଼ି ପରିଧାନ କରୁଥିଲେ । ଆଖଣ୍ଡଳମଣି ଦର୍ଶନ ଉପଲକ୍ଷେ ହରିଚନ୍ଦନଙ୍କ ପରିବାର ବାହାରିବା ସମୟର ବର୍ଣ୍ଣନା ନେଇ ଔପନ୍ୟାସିକ ଲେଖିଛନ୍ତି– ''କନକଲତାର ଜନ୍ମଦିନ ଉପଲକ୍ଷ୍ୟରେ ସ୍ତ୍ରୀମାନେ ଗ୍ରାମର କିୟଦ୍‌ଦୂରସ୍ଥ ଆଖଣ୍ଡଳମଣି ମହାଦେବଙ୍କ ଦର୍ଶନକୁ ସଜ ହେଉଛନ୍ତି । ସମସ୍ତେ କୃତସ୍ନାନ ହୋଇ ପେଡ଼ିଲୁଗା ପିନ୍ଧି ବୃଷ୍ଟିଜଳଧୌତ ଗୋଲାପ, ମଲ୍ଲିକା, ପଦ୍ମ, ମନ୍ଦାର ପରି ଶୋଭାପାଉଛନ୍ତି । ବ୍ରହ୍ମପୁରୀ, ବିଷ୍ଣୁପୁରୀ ପାଟ, କ୍ଷୀରୋଦ୍ରୀ ଶାଢ଼ି, ବଡ଼ମ୍ବା, ଖଣ୍ଡପଡ଼ା, ସମ୍ବଲପୁରର ମଠାଶାଢ଼ି, ମାଣିଆବନ୍ଦୀ, ଗୁଲନଗର ବା ପେଣ୍ଟଶାଢ଼ି ଏହିପରି ପାଟ-ପୀତାମ୍ବରୀ ମଠାଶାଢ଼ି, ଆଣ୍ଠୁଆ, ଉଢ଼ୁଣୀ ପରିଚ୍ଛଦରେ ଦାଣ୍ଡ ଝଲମଲ ଦିଶିଲା । ମୁଦି, ଝୁଣ୍ଟିଆ, ପାହୁଡ଼, ବଳା, ଘୁଙ୍ଗୁର, ପାଇଯୁଡ଼ୀ, ପା-ପଦ୍ମ, ପଞ୍ଝମ, ଚନ୍ଦ୍ରହାର, ସାପୁଆ, ଜଞ୍ଜିରିଆ, ଅଣ୍ଟାସୂତା, ପଇଞ୍ଚ, ଅଟ୍ଟଲ, ତାଡ଼, ବାଜୁ, ଦେଉଁରିଆ, ଚଉକି, ମଲ୍ଲିକଢ଼ୀ, ବାଉଳୀ, ବୀରବଲୀ, କାପ, ନଥ, ଦଣ୍ଡୀ, ବସଣୀ, ଫୁଲି, ସୁନାମାଛି, ବେଶର, ଅଳକା, ମଥାମଣି, ଟିକା, ଚଉଁରୀମୁଣ୍ଡୀ, ସୁନାଚାନ୍ଦ ପ୍ରଭୃତି ମଧ୍ୟବିତ୍ତ ଗୃହ ସ୍ତ୍ରୀମାନଙ୍କ ବ୍ୟବହୃତ ଅଳଙ୍କାରର ରୁଣଝୁଣୁ ଶବ୍ଦରେ ଦାଣ୍ଡ କମ୍ପିଲା ।'' ସେତେବେଳେ ଅଭିଜାତ ଏବଂ ଜମିଦାର ବଂଶର ରମଣୀଗଣ ଏହିପରି ଅଳଙ୍କାରମାନ ପରିଧାନ କରୁଥିବାର ଜଣାଯାଇଥାଏ ।

ଓଡ଼ିଶାର ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ପୂଜାପାର୍ବଣ ପାଳିତ ହୋଇଥାଏ । ବିଶେଷକରି ଦୁର୍ଗାପୂଜା ବେଶ୍ ଆଡ଼ମ୍ବର ସହିତ ପାଳିତ ହୋଇଥାଏ । କନକଲତା ଉପନ୍ୟାସରେ ଦୁର୍ଗାପୂଜା ସମ୍ପର୍କରେ ବର୍ଣ୍ଣନା ଦିଆଯାଇ କୁହାଯାଇଛି–

"ଇତି ମଧ୍ୟରେ ସ୍ୱଚ୍ଛ ଅବଦାତ କୌମୁଦୀସ୍ନାତ ନଭୋମଣ୍ଡଳ ତଳେ କାଶ-କୁସୁମ-ଶୋଭିତା ଶରତସୁନ୍ଦରୀ ଗହଣରେ ମହିଷାସୁର-ଧୂମ୍ରଲୋଚନ-ଚଣ୍ଡ-ମୁଣ୍ଡ-ରକ୍ତବୀର୍ଯ୍ୟ-ଶୁମ୍ଭନିଶୁମ୍ଭବିନାଶିନୀ, ସୁରଥ-ସମାଧି-ରାମଚନ୍ଦ୍ରାଦି ଭକ୍ତମନମୋହିନୀ, ସ୍ୱୀୟ ଭକ୍ତମାନଙ୍କୁ ଧର୍ମ-ଅର୍ଥ-କାମ-ମୋକ୍ଷ ଚତୁଃବର୍ଗଫଳଦାୟିନୀ, ସିଂହବାହିନୀ ଦୁର୍ଗା ପୁଣି ବର୍ଷକ ପରେ ଆନନ୍ଦକୋଳାହଳ ମଧ୍ୟରେ ଭକ୍ତ-ମାନସ-ହାରିଣୀ ରୂପରେ ଧରଣୀପୃଷ୍ଠରେ ଅବତରଣ କଲେ ।" ସେତେବେଳେ ବିବାହିତ ପୁରୁଷ-ନାରୀ ଗୁରୁଜନମାନଙ୍କ ସମ୍ମୁଖରେ ହସି ହସି କଥାବାର୍ତ୍ତା କରିବାରେ କଟକଣା ରହିଥିଲା । ଧୀରେ ଧୀରେ ସମୟର ପରିବର୍ତ୍ତନ ସହିତ ସେହି ପରମ୍ପରାର ପରିବର୍ତ୍ତନ ହୋଇଛି ଏବଂ ସ୍ୱାମୀ-ସ୍ତ୍ରୀ ଘରର ଅନ୍ୟ ସଦସ୍ୟଙ୍କ ସମ୍ମୁଖରେ କଥାବାର୍ତ୍ତା କରିବାର କୁଣ୍ଠିତ ହୋଇ ନାହାନ୍ତି । ପରମ୍ପରାରେ ବଢ଼ିଆସିଥିବା ସାଆନ୍ତମା' ଏହାକୁ ସହଜରେ ଗ୍ରହଣ କରିପାରି ନାହାନ୍ତି ବୋଲି କନକଲତାକୁ କହିଛନ୍ତି– "କାଳ ତ ସେହିପରି ହେଲାଣି । ଏବେ ତ କଟକରେ ସବୁ ଗେରସ୍ତ ଭାରିଯା ଯୋଡ଼ି ଯୋଡ଼ି ହୋଇ ହାଉଆ ଖାଉଛନ୍ତି । ତୋ ବର ତ ଇଂରେଜ ପଢୁଆ । ତୋର ଏତେ ଲାଜ କୁଆଡ଼େ ଭାସିଯିବ ଯେ ! ତତେ ତ ସେ ମେମ୍ ସଜେଇ ବଗିରେ ବସେଇ ବଜାରରେ ବୁଲିବ ।" ପୁଣି ନବଯୁବକ-ଯୁବତୀଙ୍କ ଆଚରଣଗତ ପରିବର୍ତ୍ତନକୁ ଲକ୍ଷ୍ୟ କରି କ୍ଷୋଭ ପ୍ରକାଶ କରି କହିଛନ୍ତି– "ଆଜିକାଲି ଆଉ ପୁରୁଣା କଥା ରହୁଛି ? ଶାଶୂଶଶୁର, ଜାଆ, ନଣନ୍ଦ ସମସ୍ତେ ପର । ଆପେ, ଆପଣା ଭାରିଯାଟି, ଆପଣା ପୁଅଝିଅଙ୍କୁ ଘେନି ଘରକରଣା । କେଉଁଠୁ ଆସିଲ, କେମିତି ହେଲ, ଖୋଇପେଇ ବଢ଼େଇଲା କିଏ ! ପୁରପୁଅ ପରଝିଅ, ଏକାଦିନକେ କ୍ଷୀର ନୀର ବାନ୍ଧବ ହେଲ ! ଆପଣା ରକ୍ତ, ଚାତକ ପରି ସେ ଏତେଦିନ ଅନେଇଛନ୍ତି, ସେ କୁଆଡ଼େ ଉଡ଼ିଗଲେ !"

'କନକଲତା' ଉପନ୍ୟାସରେ ଓଡ଼ିଶାର ପାରିବାରିକ ବାସ୍ତବ ଜୀବନଚିତ୍ରକୁ ସୁନ୍ଦର ଭାବରେ ପ୍ରଦର୍ଶନ କରାଯାଇଛି । ହରିଚନ୍ଦନଙ୍କ ପରିବାରରେ ହରିଚନ୍ଦନ ଓ ତାଙ୍କ ପତ୍ନୀ ପଦ୍ମାବତୀ, ଚାରିପୁଅ, ତିନିଜଣ ପୁତ୍ରବଧୂ, ଗୋଟିଏ କନ୍ୟା କନକଲତା ଓ ସାତଜଣ ନାତି-ନାତୁଣୀ । କନିଷ୍ଠ ପୁତ୍ର ରାଜେନ୍ଦ୍ର ଏବଂ ସର୍ବକନିଷ୍ଠ କନକଲତା ଅବିବାହିତ ଓ ଅବିବାହିତା । ହରିଚନ୍ଦନ ଏବଂ ତାଙ୍କ ପତ୍ନୀଙ୍କ ମଧ୍ୟରେ ସୁନ୍ଦର ବୁଝାମଣା ଯୋଗୁଁ ପରସ୍ପର ମଧ୍ୟରେ ସମ୍ପର୍କ ଅତି ନିବିଡ଼ । ଉଭୟ ଉଭୟଙ୍କ କଥା ପ୍ରତି ଗୁରୁତ୍ୱ ଦେଇଥାନ୍ତି । ପରିବାରକୁ କିପରି ଶୃଙ୍ଖଳିତ ଭାବରେ ଚଳାଇବାକୁ ପଡ଼େ, ତାହା ତାଙ୍କୁ ଜଣାଅଛି । କନିଷ୍ଠପୁତ୍ର ଓ ପୁତ୍ରବଧୂ ଟିକେ ବିଶୃଙ୍ଖଳିତ ହେବା

ସତ୍ତ୍ୱେ ପରିବାରରେ କୌଣସି ଅଘଟଣ ଘଟେ ନାହିଁ । ଚାରିଭାଇ ଏକମାତ୍ର ଭଉଣୀ କନକଲତାକୁ ଶ୍ରଦ୍ଧା ଏବଂ ସ୍ନେହ କରନ୍ତି । କନକଲତା ମଧ୍ୟ ଭାଇ-ଭାଉଜ, ମାତା-ପିତାଙ୍କୁ ସମ୍ମାନ ପ୍ରଦର୍ଶନ କରେ । ଭାଉଜମାନଙ୍କ ସହିତ ନଣନ୍ଦ ଓ ଦିଅର ରାଜେନ୍ଦ୍ରଙ୍କ ସମ୍ପର୍କ ପ୍ରାୟତଃ ମଧୁର । ସାଆନ୍ତମା' ଥଟ୍ଟାମଜା କରିବାସତ୍ତ୍ୱେ ସମ୍ପର୍କରେ ମଧୁରତା ରହିଥାଏ । ମୋଟାମୋଟି କହିଲେ ହରିଚନ୍ଦନଙ୍କ ପରିବାର ଏକ ଆଦର୍ଶ ପରିବାର; ଯେଉଁଠି ସ୍ନେହ-ଶ୍ରଦ୍ଧାର ମନ୍ଦାକିନୀ ପ୍ରବାହିତ । ଅନ୍ୟପକ୍ଷରେ ପାଇକରାଙ୍କ ପରିବାର କେତେକ ଦୃଷ୍ଟିରୁ ହରିଚନ୍ଦନଙ୍କ ପରିବାରଠାରୁ ଭିନ୍ନ । ପତି-ପତ୍ନୀଙ୍କ ମଧ୍ୟରେ ସମ୍ପର୍କ ସେପରି ନିବିଡ଼ ନୁହେଁ । ଏକମାତ୍ର କନ୍ୟା ଉମା ବିଧବା ଅଥଚ ତା'ର ବୈଧବ୍ୟ ଏବଂ ଦୁଃଖ ପିତା ପାଇକରା ଓ ପିଉସୀ ତୁଳସୀଦେଈଙ୍କ ଉପରେ କୌଣସି ପ୍ରଭାବ ପକାଏ ନାହିଁ । ଏକମାତ୍ର ପୁତ୍ର ଧନଞ୍ଜୟ ଶିକ୍ଷିତ, ମଧୁରଭାଷୀ; ଗୁରୁଜନମାନଙ୍କୁ ଯଥା ସମ୍ମାନ ଦେବା ସହିତ ବିଧବା ଭଉଣୀ ଉମା ପ୍ରତି ସମ୍ବେଦନଶୀଳ । କନକଲତା ପ୍ରତି ଗଭୀର ପ୍ରେମଭାବ ଥିବା ସତ୍ତ୍ୱେ ସେ ପିତାଙ୍କର ବିରୁଦ୍ଧାଚରଣ କରିପାରି ନାହିଁ; ବରଂ ଦୁଃଖରେ ପୁରୀ ଚାଲିଯାଇଛି । ଯୌତୁକ ସମସ୍ୟା ଦୂରୀଭୂତ ହେବାପରେ କନକଲତା ସହିତ ବିବାହ ହୋଇଛି ଏବଂ ଉଭୟ ଆଦର୍ଶ ପତି-ପତ୍ନୀଭାବେ ନିଜକୁ ସାବ୍ୟସ୍ତ କରିଛନ୍ତି । ଉଭୟଙ୍କ ମଧ୍ୟରେ ପବିତ୍ର ପ୍ରେମଭାବ ଯୋଗୁଁ ପରିବାର ସୁଖ-ଶାନ୍ତିରେ ଜୀବନ ନିର୍ବାହ କରିଛନ୍ତି ଓ ତାଙ୍କର ପିଲାମାନେ ଉଚିତ ସଂସ୍କାର ପାଇଥିବାରୁ ସମାଜରେ ନିଜକୁ ପ୍ରତିଷ୍ଠିତ କରିପାରିଛନ୍ତି । ଉଭୟ ପରିବାରର ଭାଇ-ଭଉଣୀଙ୍କ ମଧ୍ୟରେ ରହିଛି ସହୃଦୟତା ଓ ଉତ୍ତମ ସମ୍ପର୍କ । ଭାଉଜ କନକଲତା ଓ ନଣନ୍ଦ ଉମାଙ୍କ ମଧ୍ୟରେ ସମ୍ପର୍କ ଅତ୍ୟନ୍ତ ନିବିଡ଼ । ବିଧବା ଉମା ଅଳଙ୍କାର ଓ ଭଲ ଶାଢ଼ି ପିନ୍ଧୁ ନ ଥିବାରୁ କନକଲତା ମଧ୍ୟ ସେଗୁଡ଼ିକୁ ବର୍ଜନ କରିଛି । ଉମାର ଅକାଳମୃତ୍ୟୁ ଭାଉଜ କନକଲତାକୁ ଗଭୀର ଆଘାତ ଦେଇଥିବାରୁ ସେ ଶାଶୂଘର ତ୍ୟାଗ କରି ସ୍ୱାମୀ ଧନଞ୍ଜୟଙ୍କ ସହିତ ପୁରୀରେ ଅବସ୍ଥାନ କରିଛି ଏବଂ ଜଣେ ଆଦର୍ଶ କୁଳବଧୂ ରୂପେ ନିଜକୁ ପ୍ରତିପାଦନ କରିପାରିଛି । ସଂସ୍କାର ହେତୁ ଟୁଆଁବାବୁ ଓରଫ୍ ଅଭିରାମ ଡେପୁଟୀରୂପେ ଅବସ୍ଥାପିତ ହୋଇଥିବା ଯୋଗୁଁ ଧନଞ୍ଜୟ ତାଙ୍କ ମିଶଲରେ 'ହଜୁର' ସମ୍ବୋଧନ କରୁଥିବା ଯୋଗୁଁ ଘରେ ଆସି ପିତୃସ୍ୱସାଙ୍କ ପାଦଧୂଳି ନେଇଥାନ୍ତି । ସଂକ୍ଷେପରେ କହିଲେ ନନ୍ଦକିଶୋର ଉତ୍କଳୀୟ ପରିବାରର ଏକ ମଧୁର ଚିତ୍ର ଦେବାକୁ ଚେଷ୍ଟା କରିବା ସହିତ ଆମ ପରିବାରରେ ସଂଘଟିତ ବିଭିନ୍ନ ଘଟଣା, ଅଘଟଣା ତଥା ବୈଚିତ୍ର୍ୟକୁ ଦେଖାଇଦେବାକୁ ଚେଷ୍ଟା କରିଛନ୍ତି ।

## ପ୍ରେମ ଚିତ୍ର

ନନ୍ଦକିଶୋର ଜଣେ ଆଦର୍ଶବାଦୀ ଶିକ୍ଷକ ହୋଇଥିବାରୁ ସେ କୌଣସି କ୍ଷେତ୍ରରେ ଅନାଦର୍ଶକୁ ପ୍ରଶ୍ରୟ ଦେଇ ନାହାନ୍ତି । ସେଥିପାଇଁ ତାଙ୍କ କାବ୍ୟ-କବିତା ଓ ଏକମାତ୍ର ଉପନ୍ୟାସ 'କନକଲତା'ରେ ପ୍ରେମର ଆଦର୍ଶ ଚିତ୍ର ଦେଖିବାକୁ ମିଳିଥାଏ । ପ୍ରଥମତଃ, ହରିଚନ୍ଦନ ଓ ପଦ୍ମାବତୀ ଜଣେ ଜଣେ ଆଦର୍ଶ ପତି-ପତ୍ନୀ ହୋଇଥିବାରୁ ସେମାନଙ୍କୁ ସେ ପ୍ରଶଂସା କରିଛନ୍ତି । ସେମାନଙ୍କ ସମ୍ପର୍କ ବିଷୟରେ ଉଲ୍ଲେଖ କରି ଔପନ୍ୟାସିକ ଲେଖିଛନ୍ତି– ''ହରିଚନ୍ଦନ-ପଦ୍ମାବତୀଙ୍କର ଏକ ଆତ୍ମା । ସେମାନଙ୍କର ଏକ କଥା, ଏକ ମନ, ଏକ କାର୍ଯ୍ୟ । ହରିଚନ୍ଦନଙ୍କ ହୃଦୟରେ ଆଘାତର ତରଙ୍ଗ ଉଠିଲେ, ପଦ୍ମାବତୀଙ୍କର ହୃଦୟରେ ଆଘାତ ହୁଏ । ଉଭୟଙ୍କ ମଧ୍ୟରେ ବୈଦ୍ୟୁତିକ ସମ୍ବାଦ ପ୍ରେରିତ ହୁଏ । ପ୍ରେମରୂପ ତଡ଼ିତ୍‌ର ଦୀର୍ଘକାଳବ୍ୟାପୀ ଘାତ-ପ୍ରତିଘାତରେ ଉଭୟ ମନ, ଆତ୍ମା, ହୃଦୟ ଏକୀଭୂତ ହୋଇଯାଇଅଛି । × × ସ୍ୱାମୀ ସ୍ତ୍ରୀଙ୍କର ବିରୋଧ, ବିଚ୍ଛେଦ, ବିବାଦ କେହି କେବେ ଶୁଣି ନାହାନ୍ତି । କିନ୍ତୁ ଏହି ଯୋଗ ଦୀର୍ଘ-କାଳବ୍ୟାପୀ ସଂଯତ ତପସ୍ୟାର ଫଳ ।'' ସଂଯମତା ଏବଂ ପରସ୍ପରର ଉତ୍ତମ ବୁଝାମଣା ପ୍ରେମଭାବକୁ କରିଥାଏ ଅଧିକ ସୁଦୃଢ଼ । ଅପରପକ୍ଷରେ ଏହାର ଅଭାବ ଘଟିଲେ ଦାମ୍ପତ୍ୟ ପ୍ରେମରେ ଭଙ୍ଗା ସୃଷ୍ଟି ହୋଇଥାଏ, ଯେପରି ପାଇକରା ଓ ତାଙ୍କ ପତ୍ନୀ ଅନ୍ନପୂର୍ଣ୍ଣାଙ୍କ କ୍ଷେତ୍ରରେ ଘଟିଛି ।

କେବଳ ବୟସ୍କଙ୍କ କ୍ଷେତ୍ରରେ ନୁହେଁ; ଯୁବକ-ଯୁବତୀଙ୍କ କ୍ଷେତ୍ରରେ ମଧ୍ୟ ଔପନ୍ୟାସିକ ଆଦର୍ଶ ଓ ସଂଯତ ପ୍ରେମର ନିଷ୍ଠା ଦେଖାଇବାକୁ ଚେଷ୍ଟା କରିଛନ୍ତି । ଧନଞ୍ଜୟ ଓ କନକଲତାଙ୍କ ପ୍ରେମ ସେହିପରି ନିଷ୍ଠା, ସଂଯମତା, ନିବିଡ଼ ଆନ୍ତରିକତା ଓ ଆଦର୍ଶ ଭାବନାର ଭିତ୍ତି ଉପରେ ଦଣ୍ଡାୟମାନ ହୋଇଛି । ଆଖଣ୍ଡଳମଣିଙ୍କ ନିକଟରେ ସେମାନଙ୍କ ମଧ୍ୟରେ ଯେଉଁ ଚକ୍ଷୁ ବିନିମୟ ହୋଇଛି, ସେଥିରେ କାମନା ବା ଦେହର ଆକର୍ଷଣ ନାହିଁ; ବରଂ ଦୁଇଟି ହୃଦୟର ଆପଣାପଣ ଭାବ ଉଭୟଙ୍କୁ ଆକୃଷ୍ଟ କରିଛି । ତେବେ ଏହି ପ୍ରେମଭାବନା ମଧ୍ୟରେ ନନ୍ଦକିଶୋର ଯୁବକ-ଯୁବତୀ ମନସ୍ତତ୍ତ୍ୱର ଚମତ୍କାର ଚିତ୍ର ଅଙ୍କନ କରିଛନ୍ତି । ଧନଞ୍ଜୟ ଓ କନକଲତା ପରସ୍ପରକୁ ଦେଖିବାମାତ୍ରେ ସେମାନଙ୍କର ଅନ୍ତର୍ଭାବନାକୁ ପ୍ରକାଶ କରି ସେ ଲେଖିଛନ୍ତି– ''ସେହି ନିମେଷମାତ୍ର ଅପାଙ୍ଗ ମିଳନ ସଙ୍ଗେ ସଙ୍ଗେ ବିଦ୍ୟୁତ୍-ପ୍ରବାହ ଉଭୟଙ୍କ ସମଗ୍ର ଶରୀର ଆଲୋଡ଼ନ କଲା । ସେ ବିଦ୍ୟୁତ୍-ବେଗ ପଲକପାତ ସମୟରୁ ଅଧିକ ସହିବା ଶକ୍ତି କାହାର ? ତେଣୁ ସବଳେ ସ୍ୱତଃ ଦୁଇ ଚକ୍ଷୁଯୁଗ୍ମ ପରସ୍ପରଠାରୁ ସଂହୃତ ହେଲା । କିନ୍ତୁ ଏ ବିଦ୍ୟୁତ୍‌ର ନୈସର୍ଗିକ ଶକ୍ତି ଏହି ଯେ ଏହା ଦୃଷ୍ଟିକୁ ଅଲଗା କରାଇଦେଇ ପୁଣି ଓଟାରେ × × ସେହି ଅପାଙ୍ଗ ସଙ୍ଗେ ସଙ୍ଗେ ଦୁହେଁ ଦୁହିଁଙ୍କୁ ପ୍ରାଣ ବିକିଲେ ।''

ସେଦିନ କନକଲତାର ବିବାହ ପ୍ରସ୍ତାବ ଆସିଥିବାର ସମ୍ବାଦ ଶୁଣି ଅଥୟ ହୋଇଛି । କାହା ସହିତ ତା'ର ବିବାହ ପ୍ରସ୍ତାବ ପଡ଼ିଛି ତାହା ସେ ସଠିକ୍ ଜାଣି ନ ଥିବାରୁ ଆନ୍ଦୋଳିତ ହୃଦୟରେ ବିବ୍ରତ ହୋଇଛି । ତା'ଭାଷାରେ ଆଖଣ୍ଡଳମଣିଙ୍କ ପାଖରେ ଧନଞ୍ଜୟଙ୍କୁ ଦେଖିବାପରେ ତା'ମନ ଘୁଣ ଖାଇଲା ପରି ଖାଉଛି । ତାଙ୍କୁ ଦେଖି ମନ ବିକିଛି । ମନଚୋର ମନ ଚୋରି କରିନେଇଛନ୍ତି । ମାତ୍ର ଯେତେବେଳେ ଶୁଣିଲା ପାଇକରା ଗ୍ରାମରୁ ଭଲଲୋକ ଆସୁଛନ୍ତି ଜାଣିବାପରେ "କନକ ବିଚାରୀ  ଲାଜରେ ସାଙ୍କୁଡ଼ିଯାଇ କାନ୍ଥ ଆଡ଼କୁ ମୁହଁ କରି ଠିଆ ହେଲା । କି ଆଶ୍ଚର୍ଯ୍ୟ ! ମନ ଯାହା ଏତେଦିନ ଲୋଡୁଥିଲା, ଯାହା ଯୋଗୁଁ ଅନ୍ନଜଳ ରୁଚୁ ନ ଥିଲା, ସେହି ଅଭିପ୍ରେତ ମୁହୂର୍ତ୍ତ ନିକଟତର ହେଲାରୁ ହୃଦୟ ଏପରି ଅସ୍ଥିର ହେଉଛି କାହିଁକି ?  ଏ ଆନନ୍ଦ ଅତି ତୀବ୍ର । କନକଲତାର ମନସ୍ତତ୍ତ୍ୱ ଓ ମନକଥାକୁ ସୁନ୍ଦର ଭାବରେ ଅଙ୍କନ କରିଛନ୍ତି ଔପନ୍ୟାସିକ । କନକଲତା ଲାଜରେ ସାଙ୍କୁଡ଼ିଯାଇ କାନ୍ଥ ଆଡ଼କୁ ମୁହଁକରି ଠିଆ ହେଲା । କି ଆଶ୍ଚର୍ଯ୍ୟ ! ମନ ଯାହା ଏତେଦିନ ଲୋଡୁଥିଲା, ଯାହା ଯୋଗୁଁ ଅନ୍ନଜଳ ରୁଚୁ ନ ଥିଲା, ସେହି ଅଭିପ୍ରେତ ମୁହୂର୍ତ୍ତ ନିକଟତର ହେଲାରୁ ହୃଦୟ ଏପରି ଅସ୍ଥିର ହେଉଛି କାହିଁକି ? ଏ ଆନନ୍ଦ ଅତି ତ୍ରୀବ ।" କନକଲତାର ମନସ୍ତତ୍ତ୍ୱ ଓ ମନକଥାକୁ ସୁନ୍ଦର ଭାବରେ ଅଙ୍କନ କରିଛନ୍ତି ଔପନ୍ୟାସିକ । "କନକଲତା ମନେ ମନେ କହିଲା, "ହେ ଆଖଣ୍ଡଳମଣି ! ତୁମ୍ଭେ କି ଏ ଦାସୀର ମନ ଜାଣି ଏହା କଲ ? ଯେଉଁଦିନ ତୁମରି ଆସ୍ଥାନରେ ତାଙ୍କୁ ଦେଖିଲି, ମନେ ମନେ ତାଙ୍କୁ ବରିଲି । ସେ ଯେତେବେଳେ ମା'ଙ୍କୁ ଦଣ୍ଡବତ କରି ଉଠିଲେ ଓ ତାଙ୍କ ଆଖି ମୋ ଆଖି ସଙ୍ଗରେ ମିଳିଲା, ମନପ୍ରାଣ ସବୁ ତାଙ୍କୁ ବିକିଦେଲି । ପୁଣି ଆଉ ଅନାଇ ପାରିଲି ନାହିଁ, ଲାଜରେ ମରିଗଲି । ତେବେ ବି ଏ ପୋଡ଼ାମନ ତାଙ୍କୁ ଦେଖିବାକୁ ଦଉଡୁଥାଏ । ଆହା ! ସେ କି ଅମୂଲ୍ୟ ନିଧି ! ସେହିଦିନୁଁ ତାଙ୍କୁ ହୃଦୟରେ ପୂଜା କରୁଛି । ମୋ ଆଶା କି ସତେ ପୂରିବ ? ମୋ ତୃଷା ମେଣ୍ଟିବ ? ମୁଁ ତାଙ୍କ ପାଦତଳେ ବସିବି ?" ବିଂଶ ଶତକର ତୃତୀୟ ଦଶକର ଉତ୍କଳୀୟ ତରୁଣୀ ମନର ଭାବାବେଗ ଥିଲା ଏହିପରି, ଯାହାକୁ ଔପନ୍ୟାସିକ କଳାତ୍ମକ ରୂପ ପ୍ରଦାନ କରିଛନ୍ତି । ଶହେ ବର୍ଷ ପୂର୍ବରୁ ହୁଏତ ଓଡ଼ିଆ ଝିଅଟି ଆଉ ଅଧିକ କିଛି ଚିନ୍ତା କରିପାରି ନ ଥାନ୍ତା । ଏକ ସଂଯମ ଓ ପବିତ୍ର ପ୍ରେମର ବାସ୍ନା ବେଶ୍ ବାରିହୋଇପଡ଼େ କନକଲତାର ଭାବାବେଗରୁ । ଧନଞ୍ଜୟ ଓ କନକଲତାଙ୍କ ବାହାଘର ସାମାନ୍ୟ ଯୌତୁକ ପାଇଁ ଭାଙ୍ଗିଯିବାରୁ ସ୍ୱପ୍ନଭଙ୍ଗ ଦୁଃଖରେ କନକଲତା କୃଷ୍ଣପକ୍ଷର ଶଶିକଳା ପରି ଅନୁଦିନ ମଳିନା ହୋଇଗଲା । ଶିଶିରପାତରେ ମୃଣାଳଲତାପ୍ରାୟ ଦିନକୁ ଦିନ ଝାଉଁଳିଗଲା । ଶେଷରେ ଉତ୍କଟ ଜ୍ୱର ଓ ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ଶଯ୍ୟାଶାୟିନୀ ହେଲା ।" ଡାକ୍ତରଙ୍କ ପରାମର୍ଶକ୍ରମେ ହରିଚନ୍ଦନ କନକଲତାକୁ ପୁରୀ ନେଇଗଲେ ।

ବିବାହ ପ୍ରସ୍ତାବ ଭାଙ୍ଗିଯିବାରୁ ଧନଞ୍ଜୟ ମଧ ଗୃହତ୍ୟାଗ କରି ପୁରୀ ଚାଲିଯାଇଛନ୍ତି । ତାଙ୍କର ମଧ ସ୍ୱାସ୍ଥ୍ୟରେ ଅବନତି ଆସିଛି । ପିତାଙ୍କ ଯୌତୁକ ଦାବି ପାଇଁ ସେ ଗଭୀର ପଶ୍ଚାତ୍ତାପ କରିଛନ୍ତି । ପୁରୀ ସମୁଦ୍ରକୂଳରେ ହରିଚନ୍ଦନଙ୍କ ପରିବାର ସହିତ ଧନଞ୍ଜୟଙ୍କ ସାକ୍ଷାତ୍ ହେବାପରେ ଉଭୟ କନକଲତା ଓ ଧନଞ୍ଜୟ ପରସ୍ପରର ସ୍ୱାସ୍ଥ୍ୟାବସ୍ଥା ଦେଖି ଦୁଃଖ ଓ ଅନୁତାପ କରିଛନ୍ତି । ପ୍ରେମର ଏପରି ବିମଳ ରୂପ ବାସ୍ତବରେ ପ୍ରଶଂସନୀୟ । ପରସ୍ପରକୁ ସମୁଦ୍ରକୂଳରେ ଦେଖିବାପରେ ଔପନ୍ୟାସିକ ତା'ର ବର୍ଣ୍ଣନା ଦେଇ ଲେଖିଛନ୍ତି – "ଚାରିଚକ୍ଷୁ ମିଳିତ ହେଲା । ହଠାତ୍ ପ୍ରଣୟର ଗୋଟିଏ ବୈଦ୍ୟୁତିକ ଧାରା ତାହା ଧମନୀ ମଧରେ ସଞ୍ଚାରିତ ହେଲା । ଏ ସେହି ମିଳନ ଯାହା ଥରେ ଆଖଣ୍ଡଳମଣି ବେଢ଼ାରେ ହୋଇଥିଲା । ରୂପର କି ପରିବର୍ତ୍ତନ ! ଏହାଙ୍କ ମନରେ କି ଏହିପରି ଦୁଃଖକୀଟ ପ୍ରବେଶ କରିଅଛି । ମୋ ଛାର ପାଇଁ ଏତେ କଷଣ ସହିଲେ ! ଧନଞ୍ଜୟ ରାଜେନ୍ଦ୍ର ପରସ୍ପରକୁ ଆଲିଙ୍ଗନ କଲେ । କନକଲତା ସେ ଆଲିଙ୍ଗନ ଅନୁଭବ କଲା । ତାହାର ଧମନୀ ଭିତରେ ତ ସେହି ହରିଚନ୍ଦନ ରକ୍ତଧାରା ପ୍ରବାହିତ ହେଉଅଛି । ଧନଞ୍ଜୟ ମଧରେ ମଧ ସେହି ବୈଦ୍ୟୁତିକ ଧାରା ପ୍ରବାହିତ ହୋଇ ତାଙ୍କର ରୋମାଞ୍ଚ ସମ୍ପାଦନ କଲା ।"

କେବଳ ଧନଞ୍ଜୟ ଓ କନକଲତା ନୁହନ୍ତି; ରାଜେନ୍ଦ୍ର ଓ ଉମାଙ୍କ ମଧରେ ସୃଷ୍ଟି ହୋଇଥିବା ପ୍ରେମଚେତନା ବା ପ୍ରେମାବେଗ ଆଦର୍ଶ ଏବଂ ନୈତିକତାକୁ ଆଧାର କରିଛି । ଉମାର ରୂପ ପ୍ରତି ରାଜେନ୍ଦ୍ରଙ୍କର ଏବଂ ରାଜେନ୍ଦ୍ରଙ୍କ ବ୍ୟକ୍ତିତ୍ୱ ପ୍ରତି ଉମା ଆକର୍ଷଣ ସୃଷ୍ଟି ହୋଇଥିଲେ ହେଁ ଅନ୍ଧକାମନା ବା ଦେହଜ ଭାବନା ତାହାକୁ କବଳିତ କରି ନାହିଁ । ରାଜେନ୍ଦ୍ର ଉମା ପରି ଏକ ବାଲ୍ୟବିଧବାକୁ ବିବାହ କରି ସାମାଜିକ ଅନ୍ଧବିଶ୍ୱାସକୁ ଦୂର କରିବାକୁ ଚାହେ । ଏହା ସତ୍ତ୍ୱେ ପରସ୍ପରର ଆକର୍ଷଣ ମଧରେ ପ୍ରେମର ଏକ ଶୁଚିମୟ ରୂପକୁ ପରିଲକ୍ଷିତ କରାଯାଇପାରେ । ରାଜେନ୍ଦ୍ର ପ୍ରଥମଥର କନକଲତା ଶାଶୂଘରକୁ ଯାଇଥିବା ସମୟରେ "ଉମାର ଅନିନ୍ଦ୍ୟ ସୁନ୍ଦର ସୁଗୋଲ ସୌଷ୍ଠବାନ୍ୱିତ ବପୁ ଦେଖି ଆତ୍ମବିକ୍ରୟ କରିସାରିଥିଲେ । × × ଉମାର ନୟନର ବୈଦ୍ୟୁତିକ ଶକ୍ତି ରାଜେନ୍ଦ୍ରଙ୍କର ଶକ୍ତିଠାରୁ ବହୁ ଗୁଣରେ ଅଧିକ । କାରଣ, ମାର୍ଜାର ନିକଟରେ ମୂଷିକବତ୍ ଉମା ନିକଟରେ ଦୁର୍ଦ୍ଧର୍ଷ ରାଜେନ୍ଦ୍ର ।" ରାଜେନ୍ଦ୍ର ଉମାକୁ ଦେଖିବାପରେ ଅନୁଦିନ ଅନ୍ୟମନସ୍କ, ଶୁଷ୍କକାୟ, କ୍ଷୀଣ ବିଷଣ୍ଣ ହେବାକୁ ଲାଗିଲେ । କେବଳ ରାଜେନ୍ଦ୍ର କ୍ଷେତ୍ରରେ ନୁହେଁ, ଉମା କ୍ଷେତ୍ରରେ ମଧ ସେହି ଆଚରଣ ପରିଲକ୍ଷିତ ହେଲା । "ରାଜେନ୍ଦ୍ରର ବିଦାୟ ସଙ୍ଗେ ସଙ୍ଗେ ଉମାର ଚାଞ୍ଚଲ୍ୟ, ଚାପଲ୍ୟ, ପରିହାସ, ରସିକତା ସମସ୍ତ ଅନ୍ତର୍ହିତ ହେଲା ।" ଔପନ୍ୟାସିକ ଉମାର

ମାନସିକତା ଓ ମନସ୍ତତ୍ତ୍ୱର ବର୍ଣ୍ଣନା କରି ଲେଖିଛନ୍ତି– ''କି ମନ୍ତ୍ର-ରାଜେନ୍ଦ୍ର ପଢ଼ିଲେ, ଆଉ ସେ ପୁରୁଷ ଛାଇ ମାଡ଼ିଲା ନାହିଁ । ହସ ଆଉ ତା' ମୁହଁରେ କେହି ଦେଖି ନାହିଁ । ଗୋଟିଏ ଗୋଟିଏ ଚରିତ୍ର ଅଛି, ସେ ପ୍ରହେଳିକାମୟ । ସେ ପାଣି ନୁହେଁ, ଯେ କ୍ଷଣେ ଭିନ୍ନ ହୋଇ କ୍ଷଣେ ମିଶିଯିବ । ସେ ପଥରପରି ଟାଣ, ସହଜରେ ଭାଙ୍ଗେ ନାହିଁ – ଥରେ ଭାଙ୍ଗିଲେ ଆଉ ଯୋଡ଼ିହେବା କଠିନ । ଉମାର ଚରିତ୍ର ସେହିପରି । ପରିହାସମୟୀ ବାଳିକା କେତୋଟି ଦିନରେ ନାରୀତ୍ୱର ଗୌରବ, ଗୁରୁତ୍ୱ, ଗାମ୍ଭୀର୍ଯ୍ୟ ଅନୁଭବ କରି ତହିଁରେ ନତ ହୋଇଗଲା । ତାହାର ଜୀବନର ଗୋଟିଏ ମହତ୍‌ଲକ୍ଷ୍ୟ ତା' ସମ୍ମୁଖରେ ପ୍ରତିଭାତ ହୋଇଅଛି ।'' ଅଚାନକ ଉମାର ମୃତ୍ୟୁ ଏହି ପ୍ରେମୀଯୁଗଳଙ୍କ ପ୍ରେମକୁ ସାକାର ହେବାକୁ ଦେଇ ନାହିଁ । ପ୍ରେମମଧୁ ଚାଖିବା ପୂର୍ବରୁ ଚିରଦିନ ପାଇଁ ଉମା ସଂସାର ଛାଡ଼ି ଚାଲିଯାଇଛି । ତା'ର ଅବର୍ତ୍ତମାନ ରାଜେନ୍ଦ୍ରଙ୍କ ପାଇଁ ହୋଇଛି ଅସହ୍ୟ ଏବଂ ସେ ଗୃହତ୍ୟାଗ କରି ସନ୍ନ୍ୟାସ ବ୍ରତ ପାଳନ କରିଛନ୍ତି । ଧର୍ମଚର୍ଚ୍ଚା ଓ ସାମାଜିକ ସେବା ମାଧ୍ୟମରେ ଉମା ପ୍ରତି ରହିଥିବା କର୍ତ୍ତବ୍ୟ ସମ୍ପାଦନ କରିଛନ୍ତି । 'କନକଲତା' ଉପନ୍ୟାସରେ ପ୍ରେମର ଏକ ଶୁଚିମୟ ରୂପ ପାଠକଙ୍କୁ ଆନ୍ଦୋଳିତ ଓ ତଲ୍ଲୀନ କରିଥାଏ ।

## ବର୍ଣ୍ଣନା ଚାତୁରୀ

ଉପନ୍ୟାସ ମୁଖ୍ୟତଃ ଏକ ବର୍ଣ୍ଣନାତ୍ମକ ଗଦ୍ୟ ରଚନା । ଏହାର ପରିସର ପରିବ୍ୟାପ୍ତ ହୋଇଥିବାରୁ ଔପନ୍ୟାସିକଙ୍କ ଯେକୌଣସି ବସ୍ତୁର ପ୍ରଚୁର ବର୍ଣ୍ଣନା ପାଇଁ ସ୍ୱାଧୀନତା ରହିଛି । ପ୍ରକୃତିବର୍ଣ୍ଣନା, ରୂପବର୍ଣ୍ଣନାଠାରୁ ଆରମ୍ଭ କରି ପରିବେଶ ବର୍ଣ୍ଣନା ପର୍ଯ୍ୟନ୍ତ– ପ୍ରତ୍ୟେକ କ୍ଷେତ୍ରରେ ଔପନ୍ୟାସିକ ନନ୍ଦକିଶୋର ନିଜ ବର୍ଣ୍ଣନାଚାତୁରୀର ଅପୂର୍ବ ପରିଚୟ ପ୍ରଦାନ କରିଛନ୍ତି । ପୁଣି ନନ୍ଦକିଶୋର ଜଣେ ଶକ୍ତିଶାଳୀ କବି ହୋଇଥିବାରୁ ତାଙ୍କ ବର୍ଣ୍ଣନାରେ କାବ୍ୟିକତା ସ୍ୱତଃ ପରିଲକ୍ଷିତ ହୋଇଥାଏ । 'କନକଲତା' ଉପନ୍ୟାସରୁ କେତୋଟି ବର୍ଣ୍ଣନାର ଉଦାହରଣ ଦେଇ ଔପନ୍ୟାସିକଙ୍କ ବର୍ଣ୍ଣନା ଚାତୁରୀର ବିଶେଷତ୍ୱକୁ ଦେଖାଇଦିଆଯାଇଛି ।

### ରୂପ ବର୍ଣ୍ଣନା

ଔପନ୍ୟାସିକଙ୍କ ବର୍ଣ୍ଣନାନୁଯାୟୀ ପୁରାକାଳରେ ଜଣେ ଭୁବନବିଖ୍ୟାତ ବୀର ତେମୁହାଣୀ ଛକରେ ଦୁଇଟି ରମଣୀଙ୍କୁ ଦେଖିଥିଲେ । ସେହି ରମଣୀଙ୍କ ରୂପବର୍ଣ୍ଣନା କରି ନନ୍ଦକିଶୋର ଲେଖିଛନ୍ତି– ''ଜଣେ ମନୋମୋହିନୀ, କୁଞ୍ଚିତ କୁନ୍ତଳା, ଚାରୁଭ୍ରୂଲତାଶୋଭିନୀ, ମଦାଳସା । ଅଧରପଲ୍ଲବ ଯତିଜନ ମନୋହର

ଦରହାସର କନକକିରଣ ମୟୂଖରେ ଉଦ୍ଭାସିତ । ଆକର୍ଣ୍ଣବିସ୍ତୃତ ପଦ୍ମପଳାସ-ଲୋଚନରେ ଅପୂର୍ବ ଅପାଙ୍ଗ ଲୀଳାଖେଳା କରୁଅଛି । ସେ ଦେବବାଞ୍ଛିତ ରମ୍ଭୋରୁ କାମିନୀ ଶୁଭ୍ରଶଙ୍ଖସଙ୍କାଶ ଗ୍ରୀବା, କନକବକ୍ଷ, କଟିତଟ ଓ ସୁଗଠିତ ସର୍ବାଙ୍ଗରେ ଯଥୋପଯୁକ୍ତ ରୂପେ ନାନା ରତ୍ନାଳଙ୍କାର ସମନ୍ୱିତା ।'' ବର୍ଣ୍ଣନାଟି ମଧ୍ୟଯୁଗୀୟ କାବ୍ୟନାୟିକା ପରି ହେଲେହେଁ ପାଠକକୁ ଆକର୍ଷଣ କରିବାର ସମସ୍ତ ଗୁଣରେ ପରିପୂର୍ଣ୍ଣ । ଧନଞ୍ଜୟ ରାଜେନ୍ଦ୍ର ଓ କନକଲତାଙ୍କ ମଧ୍ୟରେ ତୁଳନାତ୍ମକ ବିଚାରକରି କହିଛନ୍ତି – ''ରାଜେନ୍ଦ୍ର ଯେପରି ମନୋବୃତ୍ତି ମଧ୍ୟରେ ବୁଦ୍ଧି ଏବଂ କନକଲତା ଯେପରି କୋମଳ ଭାବବୃତ୍ତି; ରାଜେନ୍ଦ୍ର ବ୍ରହ୍ମପୁତ୍ର; କନକଲତା ପତିତପାବନୀ ଗଙ୍ଗା; ରାଜେନ୍ଦ୍ର ମରୀଚିମାଳା ସୂର୍ଯ୍ୟରଶ୍ମି, କନକଲତା ଶରଦିନ୍ଦୁର କୌମୁଦୀ ବିଭା ।''

ଧନଞ୍ଜୟ ରାଜେନ୍ଦ୍ରଙ୍କ ଗ୍ରାମକୁ ଯାଇଥିବା ସମୟରେ ଗ୍ରାମର ଶୋଭା ଦେଖି ମୁଗ୍ଧ ହୋଇଛନ୍ତି । ପଲ୍ଲୀଗ୍ରାମର ଏକ ଚଟୁଳ ବର୍ଣ୍ଣନା ଦିଆଯାଇ ଲେଖାଯାଇଛି – ''ଗ୍ରାମଟିର ସଂସ୍ଥାନ ଅତି ସୁନ୍ଦର । ଦୂର ଦିଗ୍‌ବଳୟ ସୀମାରୁ ନୀଳାୟମାନ ପର୍ବତଶ୍ରେଣୀର ରୁଚିର ଶୋଭା, କଳକଳନାଦିନୀ ଗିରିନଦୀର ମନୋହର ନାଦ, ଦିଗନ୍ତବ୍ୟାପୀ ଈଷତ୍ ପକ୍ୱଶସ୍ୟ କେଦାରପନ୍ତି, ପଲ୍ଲୀପଣନ୍ତବତ୍ ଶୋଭମାନ ଗ୍ରାମ ତରୁଲତାକୁଞ୍ଜର ଛାୟା, ଦିଗ୍‌ବଧୂର ମୃଦୁ ନିଃଶ୍ୱାସବାତସଦୃଶ ମୃଦୁଳ ପବନ, ଶାରଦୀୟ ଗଗନର ମନୋମୁଗ୍‌ଧକର ଶୋଭା, ସ୍ୱଚ୍ଛୋଦ ସରସୀରେ ପ୍ରସ୍ଫୁଟିତ ସୁରଭି ଶତଦଳ, କୋକନଦର ଉଦ୍‌ଭ୍ରାନ୍ତକାରୀ ବର୍ଣ୍ଣଲାବଣ୍ୟ, ତାହାଠାରୁ ବଳି ସ୍ନାନାକାଙ୍‌କ୍ଷୀ ସ୍ଫୁଟନୋନ୍ମୁଖ ପଦ୍ମସଙ୍କାଶ ଲାବଣ୍ୟମୟୀ ପଲ୍ଲୀସୀମନ୍ତିନୀକୁଳ, ପୁଷ୍କରିଣୀରେ ସନ୍ତରଣକାରୀ ହଂସମରାଳକାଦମ୍ବକୁଳକୁଳିତ ପଲ୍ଲୀ ପ୍ରକୃତି ଧନଞ୍ଜୟଙ୍କର କଳ୍ପନା-ପ୍ରଧାନ ମନକୁ କି ଏକ ଅଲୌକିକ ଲୋକ-ଲୋକାନ୍ତର, ଦେଶ-ଦେଶାନ୍ତର, ଯୁଗ-ଯୁଗାନ୍ତରର ସ୍ୱପ୍ନରାଜ୍ୟକୁ ଘେନିଗଲା ।''

ଶାରଦୀୟ ଦୁର୍ଗାପୂଜାର ବର୍ଣ୍ଣନା ଦେଇ ଲେଖିଛନ୍ତି – ''ଇତି ମଧ୍ୟରେ ସ୍ୱଚ୍ଛ ଅବଦାତ କୌମୁଦୀସ୍ନାତ ନଭୋମଣ୍ଡଳ ତଳେ କାଶ-କୁସୁମ-ଶୋଭିତା ଶରତ ସୁନ୍ଦରୀ ଗହଣରେ ମହିଷାସୁର-ଧୂମ୍ରଲୋଚନ-ଚଣ୍ଡ-ମୁଣ୍ଡ-ରକ୍ତବୀର୍ଯ୍ୟ-ଶୁମ୍ଭ-ନିଶୁମ୍ଭବିନାଶିନୀ, ସୁରଥ-ସମାଧି-ରାମଚନ୍ଦ୍ରାଦି ଭକ୍ତମନମୋହିନୀ, ସ୍ୱୀୟ ଭକ୍ତମାନଙ୍କୁ ଧର୍ମ-ଅର୍ଥ-କାମ-ମୋକ୍ଷ ଚତୁର୍ବର୍ଗ-ଫଳଦାୟିନୀ, ସିଂହବାହିନୀ ଦୁର୍ଗା ପୁଣି ବର୍ଷକ ପରେ ଆନନ୍ଦ କୋଳାହଳ ମଧ୍ୟରେ ଭକ୍ତ-ମାନସ-ହାରିଣୀ ରୂପରେ ଧରଣୀ-ପୃଷ୍ଠରେ ଅବତରଣ କଲେ ।''

ଉପନ୍ୟାସରେ ଦୁଇଟି ପରିବାରର କାହାଣୀ ବର୍ଣ୍ଣିତ । ପୁଣି ଏହି ପରିବାରଦ୍ୱୟ ଆଦର୍ଶ, ନୈତିକତା, ମାନବିକ ବିଚାରଧାରା, ପାରିବାରିକ ଶୃଙ୍ଖଳା ଓ ସହୃଦୟତା ଦୃଷ୍ଟିରୁ ଦୁଇ ବିପରୀତଧର୍ମୀ । ଏହି ପରିବାରଦ୍ୱୟର ତୁଳନାତ୍ମକ ବିଚାର କରି ଔପନ୍ୟାସିକ ଲେଖିଛନ୍ତି– ''ହରିଚନ୍ଦନ ପରିବାର ଓ ପାଇକରା ପରିବାର ଏହିପରି ବିଭିନ୍ନ ସରଞ୍ଜାମ ବିଭିନ୍ନ ପ୍ରଣାଳୀରେ ସଂଗଠିତ ହୋଇଅଛି । ତାହାର ଫଳସ୍ୱରୂପ ଦୁଇ ପରିବାରର ବୈଲକ୍ଷଣ ସ୍ପଷ୍ଟ । ହରିଚନ୍ଦନ ପରିବାର ହର୍ଷାଲୋକିତ, ପାଇକରା ପରିବାର ବିଷାଦମଳିନ । ଏକ ଉଦାରତାର ଆଶ୍ରୟଭୂମି ଓ ଅନ୍ୟଟି ରକ୍ଷଣଶୀଳତାର ଦୁର୍ଭେଦ୍ୟ ଦୁର୍ଗ । ଏକ ଜୀବନର ନିର୍ଦ୍ଦୋଷ ଆମୋଦ-ପ୍ରମୋଦକୁ ପ୍ରଶ୍ରୟ ଦେଇ ଜୀବନକୁ ସଂପ୍ରସାରିତ, ସରସ, ଉନ୍ମୁକ୍ତ କରିବାର ଉପଯୋଗୀ, ଅନ୍ୟଟି ଅତି ସଂଯମ ଓ ଅଯଥା ବୈରାଗ୍ୟ ଓ ନିବୃତ୍ତିର କଠୋରତା ରୂପ ଶୃଙ୍ଖଳରେ ଆବଦ୍ଧ କରି ଜୀବନକୁ ସଂକୀର୍ଣ୍ଣ, ସ୍ୱପ୍ରଧାନ, ସ୍ୱାର୍ଥପର କରିଦେବାର ଉପଯୋଗୀ । ଏକ ରସମୟ ବେଦମନ୍ତ୍ର ଅନ୍ୟଟି ରହସ୍ୟପୂର୍ଣ୍ଣ ଗୂଢ଼ ଗାରୁଡ଼ିମନ୍ତ୍ର । ଏକ ଜାହ୍ନବୀର ପୁଣ୍ୟ ପୀୟୂଷ, ଅନ୍ୟଟି ଗମ୍ଭୀର ଗଭୀର କୃଷ୍ଣନୀରା ଯମୁନା । ଏକ ସରସ ଫଳପୁଷ୍ପଶୋଭୀ ସୁରମ୍ୟ ଉଦ୍ୟାନ, ଅନ୍ୟଟି ଶୁଷ୍କ ମରୁମୟ ପ୍ରଦେଶ ।''

ପଲ୍ଲୀର ବିଭିନ୍ନ ବିଭାବର ଚିତ୍ରାଙ୍କନରେ ନନ୍ଦକିଶୋର ସିଦ୍ଧହସ୍ତ । ଫକୀରମୋହନ ଯେପରି ପଲ୍ଲୀ ଓ ଗ୍ରାମୀଣ ଓଡ଼ିଶାକୁ ଚିହ୍ନିଥିଲେ; ନନ୍ଦକିଶୋର ମଧ୍ୟ ସେହିପରି ଗ୍ରାମୀଣ ଓଡ଼ିଶାର ଜନ୍ମଜାତକ ଓ ଅନ୍ତରାତ୍ମା ସହିତ ପରିଚିତ ଥିଲେ । ସୁଯୋଗ ପାଇବାମାତ୍ରେ ସେ ସେହି ବର୍ଣ୍ଣନାକୁ ଚମତ୍କାର ରୂପ ପ୍ରଦାନ କରିପାରୁଥିଲେ । ଉପନ୍ୟାସର ପ୍ରାରମ୍ଭରୁ ଗ୍ରାମର ଶୀତସକାଳ ଏବଂ ସେହି ସକାଳରେ ବିଭିନ୍ନ ଗୋଷ୍ଠୀଙ୍କ ପ୍ରତିକ୍ରିୟାକୁ ରୂପଦେଇ ଲେଖିଛନ୍ତି– ''ଶୀତ କାଳ । ପ୍ରଭାତ ହୋଇଅଛି । ଶିଶୁମାନେ ପ୍ରଭାତରୁ ଉଠି ଫୁଲ ତୋଳୁଛନ୍ତି । କେହି କେହି ଦୌଡ଼ୁଛନ୍ତି । ଦୌଡ଼ିଲେ ଶୀତ ଊଣା ହୁଏ– ଏ ବୈଜ୍ଞାନିକ ତତ୍ତ୍ୱ ଶିଶୁମାନଙ୍କୁ ଜଣା ନାହିଁ । ସେମାନେ ପ୍ରବୃତ୍ତି ପରିଚାଳିତ ହୋଇ ଦୌଡ଼ୁଛନ୍ତି । ଦେଖୁଁ ଦେଖୁଁ ଖରା ବରଗଛ, ତାଳଗଛ ଅଗରୁ ଖସି ପିଢ଼ା, ବାଡ଼ ଶେଷକୁ ହୀରାପୁରର ବଜ୍ରଧର ହରିଚନ୍ଦନଙ୍କ ଦାଣ୍ଡ ପା'ଭାଗ ଓ ବାଡ଼ିଆଡ଼ ଓଳି ତଳେ ପଡ଼ିଲା । ଦୁଇଆଡ଼େ ଦୁଇ ଲୀଳା ଲାଗିଗଲା । ଦାଣ୍ଡରେ ପୁରୁଷମେଳା ଓ ବିଲବାଡ଼ି କଥା; ବାଡ଼ିଆଡ଼େ ସ୍ତ୍ରୀ ସଭା ଓ ଘରକଥା । ଏକ ଗଦ୍ୟ, ଅନ୍ୟଟି ରସମୟୀ କବିତା । ଏକ କର୍ମ, ଅନ୍ୟଟି ପ୍ରୀତି । ଏକ ଉତ୍ତୁଙ୍ଗ ପର୍ବତ, ଅନ୍ୟଟି କଳନାଦିନୀ ତରଙ୍ଗିଣୀ ।''

## ଅନ୍ୟାନ୍ୟ

ଔପନ୍ୟାସିକ ନିଜ ଜୀବନର କିଛି ଚିତ୍ରକୁ ଉପନ୍ୟାସରେ ସାଙ୍କେତିକ ଭାବରେ ପ୍ରଦାନ କରିଛନ୍ତି । କଟକରେ ପଢ଼ିବାବେଳେ ବିଶ୍ୱନାଥ କର ଓ ମଧୁସୂଦନ ରାଓଙ୍କ ସମ୍ପର୍କରେ ଆସିବାଦ୍ୱାରା ତାଙ୍କ ଘର ଲୋକେ ସେ ବ୍ରାହ୍ମ ହୋଇଯିବାର ସନ୍ଦେହ କରି ସେଠାରୁ ନାମ କାଟି କେନ୍ଦ୍ରାପଡ଼ାରେ ପଢ଼ାଇଥିଲେ । ଉପନ୍ୟାସରେ ରାଜେନ୍ଦ୍ର ବିବାହ ହେବାକୁ ରାଜି ହେଉ ନ ଥିବାରୁ ଲୋକେ ସନ୍ଦେହ କରୁଥିଲେ ସେ ବ୍ରାହ୍ମ କିମ୍ବା ଖ୍ରୀଷ୍ଟିଆନ୍ ହୋଇଯିବେ ବୋଲି । ଔପନ୍ୟାସିକ ଲେଖିଛନ୍ତି– "ରାଜେନ୍ଦ୍ର କିନ୍ତୁ ବଡ଼ ଏକଜିଦିଆ । ଏମ୍.ଏ. ପାସ୍ ନ ହେଲେ ସେ ବିବାହ କରିବେ ନାହିଁ । ଲୋକେ ସନ୍ଦେହ କରନ୍ତି, ସେ ବ୍ରାହ୍ମଧର୍ମ ବା ଖ୍ରୀଷ୍ଟଧର୍ମ ଗ୍ରହଣକରି ସେହି ସମାଜରେ ବିବାହ କରିବେ ।" ଏତଦ୍‌ବ୍ୟତୀତ ବିଶ୍ୱରେ ସଂଘଟିତ ବିଭିନ୍ନ ଘଟଣା, ବିବର୍ତ୍ତନବାଦ ତଥା ଅନ୍ୟାନ୍ୟ ବିଶିଷ୍ଟ ବ୍ୟକ୍ତିଙ୍କ ମତବାଦ, ସାମାଜିକ କୁସଂସ୍କାର ବିରୋଧରେ ଚାଲିଥିବା ସଂସ୍କାର ପାଇଁ ଉଦ୍ୟମ; ପାରମ୍ପରିକ ସମାଜ ବ୍ୟବସ୍ଥାରେ ସାଧାରଣ ମଣିଷ ଓ ବିଧବା ନାରୀଙ୍କ ଦୁର୍ଭାଗ୍ୟପୂର୍ଣ୍ଣ ଘଟଣା ଆଦିକୁ ଔପନ୍ୟାସିକ ବର୍ଣ୍ଣନାକରି ନିଜର ସାମାଜିକ ପ୍ରତିବଦ୍ଧତା ଓ ସମୟ ସଚେତନତାର ପ୍ରମାଣ ଦେଇଛନ୍ତି । ଫକୀରମୋହନଙ୍କ ଦ୍ୱାରା ପ୍ରଥମରୁ ପ୍ରଭାବିତ ହୋଇଥିଲେ ହେଁ, ପରବର୍ତ୍ତୀକାଳରେ ନନ୍ଦକିଶୋର ନିଜର ସ୍ୱକୀୟତା ପ୍ରଦର୍ଶନ କରିବାରେ ସମର୍ଥ ହୋଇଛନ୍ତି । ଉତ୍କଳସାହିତ୍ୟରେ ପ୍ରଥମରୁ ଏହି ଉପନ୍ୟାସ ପ୍ରକାଶିତ ହୋଇଥିଲା । କିନ୍ତୁ ସମ୍ପୂର୍ଣ୍ଣ ପ୍ରକାଶିତ ହୋଇପାରି ନ ଥିଲା । ୧୯୨୫ରେ ଏହା କିଛି ଅଂଶରେ ପରିବର୍ତ୍ତନ ହୋଇ ପ୍ରକାଶ ପାଇଥିଲା । ଏଥିରେ ପୂର୍ବ ସପ୍ତମ ପରିଚ୍ଛେଦ ନାହିଁ ଏବଂ ଅଷ୍ଟମ ପରିଚ୍ଛେଦ ଅନେକାଂଶରେ ବଦଳି ମଧ୍ୟ ଯାଇଛି । କାଳଧର୍ମ ଦୃଷ୍ଟିରେ ଏହାକୁ ଏକ ଉଚ୍ଚକୋଟୀର ଉପନ୍ୟାସ କୁହାଯାଇ ନ ପାରିଲେ ମଧ୍ୟ ନନ୍ଦକିଶୋରଙ୍କ ପ୍ରତିଭାର ବହୁ ନିଦର୍ଶନ ଏଥିରେ ପରିଲକ୍ଷିତ ହୋଇଥାଏ । ସମକାଳରେ ଏହି ଉପନ୍ୟାସଟିର ଯେ ଯଥେଷ୍ଟ ଗୁରୁତ୍ୱ ରହିଥିଲା, ଅସ୍ୱୀକାର କରାଯାଇ ନ ପାରେ ।

---